# ଶିଶୁମନର ବିଜ୍ଞାନ

ଲେଖକ :

ଡକ୍ଟର ଫକୀର ମୋହନ ସାହୁ

ପି.ଏଚ୍.ଡି. (କୁଇନ୍ସ, କାନାଡ଼ା)

ପ୍ରଫେସର ଓ ପୂର୍ବତନ ବିଭାଗୀୟ ମୁଖ୍ୟ

ମନୋବିଜ୍ଞାନ ବିଭାଗ (ଅଗ୍ରଶିକ୍ଷା କେନ୍ଦ୍ର)

ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର

ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ

ବିନୋଦବିହାରୀ, କଟକ-୨

# ଶିଶୁମନର ବିଜ୍ଞାନ

■
ଲେଖକ :
ଫକୀର ମୋହନ ସାହୁ
■
ପ୍ରକାଶକ :
ଶ୍ରୀ ଗଙ୍ଗାଧର ତ୍ରିପାଠୀ
ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ
ବିନୋଦବିହାରୀ
କଟକ - ୭୫୩ ୦୦୨
■
ପ୍ରଥମ ସଂସ୍କରଣ : ଭୁବନେଶ୍ୱର ପୁସ୍ତକମେଳା-୨୦୦୬
■
ପ୍ରଚ୍ଛଦ : ବିଜୟ ପ୍ରଧାନ
■
ମୁଦ୍ରଣ :
ସାହୁ କମ୍ପ୍ୟୁଟର ୟୁନିଟ୍ ଏବଂ
ସଂଗୀତା ପ୍ରିଣ୍ଟର୍ସ, କଟକ
■
ମୂଲ୍ୟ : ଟ. ୭୫-୦୦

## SISUMANARA BINGYANA

■
**Written by :**
Dr. Fakhir Mohan Sahoo
■
**Publisher :**
Sri Gangadhar Tripathy
**Prachi Sahitya Pratisthan**
Binodbihari
Cuttack - 753 002
■
First Edition : 2006
■
**Cover Design :**
Bijay Pradhan
■
**Printers :**
Sahoo Computer Unit &
Sangita Printers, Cuttack
■
**Price :** Rs.75-00

ସମାଜ-ପରିତ୍ୟକ୍ତ ଜୀବନ-ଦଗ୍ଧ ମଣିଷର ଝାଉଁଳା ମନକୁ ସତେଜ କରିବାକୁ ଅହରହ ଉଦ୍ୟମ କରି ଚାଲିଥିବା ମନୋଚିକିତ୍ସକ ଡାକ୍ତର ନୀଳମାଧବ ରଥଙ୍କ ହାତରେ ।

# ପ୍ରଥମରୁ...

ମଣିଷ ତିଆରି କାରଖାନାରେ ଅଗଣିତ ପିତା-ମାତା, ଶିକ୍ଷକ-ଶିକ୍ଷୟିତ୍ରୀ ଏବଂ ନାରୀ-ପୁରୁଷ ଅହରହ କାମ କରିଚାଲିଛନ୍ତି । ମାତ୍ର କୁଶଳୀ ଶ୍ରମିକଙ୍କ ସଂଖ୍ୟା ବେଶୀ ହେଲାପରି ମନେ ହୁଏନାହିଁ । ପୁଣି ଅନ୍ୟସବୁ କାରଖାନାରେ କାର୍ଯ୍ୟ କରୁଥିବା ଶ୍ରମିକମାନଙ୍କର କାର୍ଯ୍ୟକୁଶଳତାର ଅଭାବ ହେଲେ ଯେଉଁସବୁ ସମସ୍ୟା ସୃଷ୍ଟି ହୁଏ, ମଣିଷ ତିଆରି କାରଖାନାରେ କାର୍ଯ୍ୟକୁଷଳତାର ଅଭାବ ଘଟିଲେ ବହୁଗୁଣ ଅଧିକ କ୍ଷତି ଘଟିଥାଏ ।

ମୃଣ୍ମୟୀଶିଳ୍ପୀ ମାଟିର, ସ୍ଥାପତ୍ୟଶିଳ୍ପୀ ପଥରର ଏବଂ ସ୍ୱର୍ଣ୍ଣକାର ସୁବର୍ଣ୍ଣର ପ୍ରକୃତି ଜାଣିବା ନିତାନ୍ତ ଆବଶ୍ୟକ । ତା' ନହେଲେ ଶିଳ୍ପୀ ସଫଳ ସୃଷ୍ଟି ନିର୍ମାଣ କରିପାରିବ ନାହିଁ । ଠିକ୍ ସେହିପରି ଶିଶୁମନର ପ୍ରକୃତି ନ ଜାଣି ଶିଶୁର ମାର୍ଗଦର୍ଶକ ହେବାର ସମ୍ଭାବନା ନାହିଁ । ଏ ଦୃଷ୍ଟିରୁ ଶିଶୁମନର ପ୍ରକୃତି ବୁଝିବା ଏବଂ ତା'ର ପରିଚାଳନା ଦିଗରେ କାର୍ଯ୍ୟକୌଶଳ ହାସଲ କରିବା ଏକ ବିରାଟ ଧରଣର ଆବଶ୍ୟକତା । ସୌଭାଗ୍ୟର କଥା ଯେ, ଆଧୁନିକ ମନୋବିଜ୍ଞାନୀମାନେ ଆମ ଆଗରେ ଶିଶୁମନର ଏକ ପ୍ରାଞ୍ଜଳ ନକ୍ସା ପ୍ରସ୍ତୁତ କରିଛନ୍ତି । ସମସ୍ତ ପ୍ରକାରର ମନୋବୈଜ୍ଞାନିକ ତଥ୍ୟକୁ ନିଖୁଣ ଭାବରେ ଏବଂ ବୋଧଗମ୍ୟ ଭାଷାରେ ଉପସ୍ଥାପନ କରିବାର ଉଦ୍ୟମ ଏ ପୁସ୍ତକ ମାଧ୍ୟମରେ କରାଯାଇଛି । ବୈଜ୍ଞାନିକ ଭାବଧାରାର ଅନୁଗାମୀ ହୋଇ ଶିଶୁପାଳନକୁ ବିକାଶର ମୋଡ଼ ଦେଇପାରିଲେ ଲେଖକଙ୍କର ଶ୍ରମ ସାର୍ଥକ ହେବ ।

ବାଣୀବିହାର
ଶ୍ରୀପଞ୍ଚମୀ, ୨୦୦୫

ଫକୀର ମୋହନ ସାହୁ

# ସୂଚୀ

# ଅନୁରାଗ ଓ ଶିଶୁର ମାନସିକ ବିକାଶ

ଲୋକ ମୁଖରେ ପ୍ରଚଳିତ ଅତି ସାଧାରଣ କଥା ବେଳେବେଳେ ଅସାଧାରଣ ରୂପ ନିଏ ବୈଜ୍ଞାନିକର କାର୍ଯ୍ୟ ମାଧ୍ୟମରେ । ପିତାମାତାଙ୍କ ସ୍ନେହପୂର୍ଣ୍ଣ କଥା, ଅନୁରାଗ ଭରା ସ୍ପର୍ଶ ଓ ମମତାମୟ ଯତ୍ନ ଶିଶୁର ଶାରୀରିକ ଓ ମାନସିକ ବିକାଶକୁ କ୍ଷିପ୍ରତର କରେ, ଏହା ସର୍ବସମ୍ମତ । ବିଶେଷତଃ ଶିଶୁର ଦୈହିକ ଓ ମାନସିକ ଅଭିବୃଦ୍ଧିରେ ମା'ର ଭୂମିକା ଯୁକ୍ତିର ଊର୍ଦ୍ଧ୍ୱରେ । କିନ୍ତୁ କେଉଁ ମାଧ୍ୟମରେ ମା'ର ସଂସର୍ଗ ଶିଶୁର ବିକାଶକୁ ତ୍ୱରାନ୍ୱିତ କରେ, ତା' ସମ୍ପର୍କରେ ଆଲୋଚନା ତଥା ଗବେଷଣାର ଯଥେଷ୍ଟ ଅଭାବ ରହିଛି । ଶିଶୁର ମନସ୍ତାତ୍ତ୍ୱିକ ବିକାଶରେ ମା'ର ଭୂମିକାକୁ ଏପରି ଏକ ସତ୍ୟରୂପେ ଗ୍ରହଣ କରି ନିଆଯାଇଛି ଯେ, ଏ ସମ୍ପର୍କରେ କୌଣସି ଗବେଷଣାର ଆବଶ୍ୟକତା ଥିଲା ବୋଲି ଚିନ୍ତା କରାଯାଇନି । ଏବେ ବହୁ ପ୍ରଶ୍ନ ବହୁ ଜିଜ୍ଞାସା ଏହି ନିତ୍ୟପରିଚିତ ସତ୍ୟକୁ ଏକ ପ୍ରସାରିତ ରୂପରେଖ ଦେଇଛି ।

ଚଳିତ ଶତକରେ ମନୋବିଜ୍ଞାନୀମାନଙ୍କର ବହୁ ଗବେଷଣା ଏ ଦିଗରେ ଆଲୋକପାତ କରିଛି । ବହୁ କାର୍ଯ୍ୟ ମଧ୍ୟରେ ଦୁଇଟି ଶ୍ରେଣୀର କାର୍ଯ୍ୟ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରଥମଟି ହେଉଛି ମା' ଓ ସନ୍ତାନ ମଧ୍ୟରେ ଥିବା ଯୋଗାଯୋଗ (Communication) ବା ଅନୁକରଣ (Imitation) ର ଗବେଷଣା । ଦ୍ୱିତୀୟଟି ହେଉଛି ଅନୁରାଗ (Attachment) ସମ୍ପର୍କୀୟ ଗବେଷଣା । ପ୍ରଥମଟି ଏଠାରେ ଆଲୋଚନା ପରିସରଭୁକ୍ତ ନୁହେଁ । ଅନୁକରଣ ସମ୍ପର୍କୀୟ ଗବେଷଣାରେ ଶିଶୁ କିପରି ଭାବରେ କି କି ପରିସ୍ଥିତିରେ ମା'କୁ ଏକ ଆଦର୍ଶ (Model) ରୂପେ ଗ୍ରହଣ କରି ନିଜର ଭାଷାଗତ, ଭାଗବତ, ନୈତିକ ଓ ଜ୍ଞାନଗତ ବିକାଶ ଘଟାଏ ସେ ବିଷୟରେ ବହୁ ତଥ୍ୟ ମିଳିଛି । ମନୋବିଜ୍ଞାନୀ ବାଂଦୁରା, ଓ୍ୱାଲ୍‌ଟର୍ ପ୍ରଭୃତି ଏ ଦିଗରେ ଅଗ୍ରଣୀ । ଅନ୍ୟପକ୍ଷରେ ମା' ବା ଅନ୍ୟ ଯତ୍ନକାରୀର ଅନୁରାଗ ପ୍ରାପ୍ତିରେ ସଂଘଟିତ ମାନସିକ ବିକାଶର ପ୍ରାମାଣିକତା ଫଳରେ ବ୍ୟବହାର ବିଜ୍ଞାନର ଏକ ନୂତନ ପର୍ଯ୍ୟାୟ ଆରମ୍ଭ ହୋଇଛି ।

ଗବେଷଣାଲବ୍ଧ ତଥ୍ୟ ମଧ୍ୟରୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ହେଉଛି ଯେ, ଜନ୍ମର ପରେ ପରେ ଏବଂ ଶିଶୁ ଅବସ୍ଥାରେ ମା'ଠାରୁ ସ୍ପର୍ଶ, ସଂସର୍ଗ ଓ ଉଷ୍ମତା ଲାଭ କରିବା ନବଜାତ ଶିଶୁର କେବଳ ଏକ ଦୈହିକ ଆବଶ୍ୟକତା ନୁହେଁ, ଏହା ଏକ ମାନସିକ ପ୍ରୟୋଜନ । ପୂର୍ବରୁ ଧାରଣା ଥିଲା ଯେ ଶିଶୁ ତା'ର ଜନନୀ ପ୍ରତି ଯେଉଁ ଆନୁଗତ୍ୟ ପ୍ରକାଶ କରେ ତା' କେବଳ ମା'ର ଖାଦ୍ୟ-ଦାତ୍ରୀର ଭୂମିକା

ପାଇଁ । ପ୍ରଖ୍ୟାତ ମନୋବିଜ୍ଞାନୀ ହାର୍ଲୋ ଏକ ସୁନ୍ଦର ପରୀକ୍ଷା କରି ପ୍ରମାଣିତ କଲେ ଯେ ଶିଶୁ ଜନନୀଠାରୁ ଲାଭ କରୁଥିବା ସ୍ପର୍ଶଜନିତ ଆନନ୍ଦ ପାଇଁ ବହୁ ପରିମାଣରେ ଆନୁଗତ୍ୟ ଦେଖାଇଥାଏ । ଏହାକୁ ଦର୍ଶାଇବାକୁ ସେ ଏକ ସୁଚିନ୍ତିତ ପରୀକ୍ଷାମୂଳକ ଯୋଜନା କଲେ । ତାଙ୍କର ଗବେଷଣାଗାରରେ ଅନେକ ଗୁଡ଼ିଏ ମାଙ୍କଡ଼ ଓ ମାଙ୍କଡ଼ଛୁଆ ଥିଲେ । କେତେ ଗୁଡ଼ିଏ ମାଙ୍କଡ଼ଛୁଆ ଜନ୍ମ ହେବା ପରେ ପରେ ସେମାନଙ୍କୁ ଦୁଇ ଦଳରେ ବିଭକ୍ତ କରିଦେଲେ । ମୋଟା ଲୁହା ତାର ସାହାଯ୍ୟରେ କେତେଗୁଡ଼ିଏ ମା-ମାଙ୍କଡ଼ର ନମୁନା ତିଆରି କରାଗଲା । ଏହି ନମୁନାରେ ମାଙ୍କଡ଼ମାନଙ୍କର ମୁହଁ-ମୁଖା ସବୁ ଥିଲା ଏବଂ ଯଥା ସ୍ଥାନରେ ଗୋଟିଏ ଗୋଟିଏ କ୍ଷୀରବୋତଲ ଖଞ୍ଜି ଦିଆଗଲା । ଏଭଳି ନମୁନା ମାଙ୍କଡ଼ଗୁଡ଼ିକୁ ଲୁହାତାର ମା' ବୋଲି କୁହାଗଲା । ସେହିପରି ହାର୍ଲୋ ଆଉ କେତେଗୁଡ଼ିଏ ନମୁନା ତିଆରି କରି ସେଥିରେ କିଛି କନା ଓ ଲୁଗା-ମା' ତିଆରି କଲେ । ଏହି ଲୁଗା-ମା'ଗୁଡ଼ିକରେ ମଧ କ୍ଷୀରବୋତଲ ଖଞ୍ଜା ଯାଇଥିଲା ।

ହାର୍ଲୋ ପ୍ରଥମ ଦଳର ମାଙ୍କଡ଼ଛୁଆମାନଙ୍କୁ ତାର-ମା' ପାଖରେ ଓ ଦ୍ୱିତୀୟ ଦଳର ମାଙ୍କଡ଼ ଛୁଆମାନଙ୍କୁ ଲୁଗା-ମା' ପାଖରେ ଛାଡ଼ି ଦେଲେ । ପ୍ରଥମ ଦଳର ପ୍ରତ୍ୟେକ ମାଙ୍କଡ଼ଛୁଆ ପାଇଁ ଗୋଟିଏ ଲେଖାଏ ତାର-ମା' ଓ ଦ୍ୱିତୀୟ ଦଳର ପ୍ରତ୍ୟେକ ମାଙ୍କଡ଼ଛୁଆ ପାଇଁ ଗୋଟିଏ ଲେଖାଏ ଲୁଗା-ମା' ଯୋଗାଇ ଦିଆଗଲା । ଏପରି ଆୟୋଜନ ସତ୍ତ୍ୱେ ଗୋଟିଏ ମାଙ୍କଡ଼ଛୁଆର ଅନ୍ୟଠାକୁ ଯିବାପାଇଁ କୌଣସି ବାଧା ନଥିଲା । ଆଶା କରାଯାଉଥିଲା ଯେଉଁ ମାଙ୍କଡ଼ଛୁଆ ଯେଉଁ ନମୁନା ମା'ଠାରୁ କ୍ଷୀର ପାଉଛି ତା'ରି ପାଖରେ ବେଶୀ ସମୟ କଟାଇବ ! ମାତ୍ର ଦେଖାଗଲା ଯେ, ତାର-ମା' ଠାରୁ କ୍ଷୀର ଖାଉଥିବା ଓ ଲୁଗା-ମା' ଠାରୁ କ୍ଷୀର ଖାଉଥିବା ଉଭୟ ଶ୍ରେଣୀର ମାଙ୍କଡ଼ ଛୁଆମାନେ ଲୁଗା-ମା' ପାଖରେ ଅଧିକ ସମୟ କାଟୁଛନ୍ତି । ଯେଉଁ ମାଙ୍କଡ଼ ଛୁଆମାନେ ତାର-ମା' ପାଖରୁ କ୍ଷୀର ଖାଉଛନ୍ତି ସେମାନେ କ୍ଷୁଧାର୍ତ୍ତ ହେଲେ ତାର-ମା' ପାଖକୁ ଯାଉଛନ୍ତି ଏବଂ କ୍ଷୀର ଖାଇ ଅଳ୍ପ କିଛି ସମୟ କଟାଇ ପୁଣି ଲୁଗା-ମା' ପାଖକୁ ଚାଲି ଆସୁଛନ୍ତି । ଲୁଗା-ମା' ପାଖରେ କ୍ଷୀର ଖାଉଥିବା ମାଙ୍କଡ଼ଛୁଆ ଗୁଡ଼ିକ ପ୍ରାୟ ଲୁଗା-ମା' ପାଖରେ ରହୁଛନ୍ତି । ହାର୍ଲୋଙ୍କର ସହକାରୀ ଗବେଷକମାନେ କେଉଁ ମାଙ୍କଡ଼ଛୁଆ କେଉଁଠାରେ କେତେ ସମୟ କଟାଉଛି ତା'ର ଲେଖାଙ୍କ ବା ରେକର୍ଡ଼ ରଖୁଥିଲେ । ଏହି ଲେଖାଙ୍କର ବିଶ୍ଳେଷଣରୁ ସ୍ପଷ୍ଟ ପ୍ରମାଣ ମିଳିଲା ଯେ, ଶିଶୁ ମା' ଠାରୁ କେବଳ ଖାଦ୍ୟ ଚାହେଁ ନାହିଁ, ଚାହେଁ କିଛି ପରିମାଣରେ ସଂସର୍ଗ ଓ ଶାରୀରିକ ଉଷ୍ମତା । ଜାବୋଡ଼ି ଧରିବାର ସୁଖ ଓ ଶାରୀରିକ ଆବଶ୍ୟକତା କନା-ମା' ଗୁଡ଼ିକ ଦ୍ୱାରା ବେଶ୍ ପରିପୂରଣ ହେଉଥିବାରୁ ମାଙ୍କଡ଼ଛୁଆମାନେ ବେଶୀ ସମୟ କନା-ମା' ପାଖରେ କଟାଉଥିଲେ ।

କେବଳ ସେତିକି ନୁହେଁ, ମାଙ୍କଡ଼ଛୁଆ ଗୁଡ଼ିକ ପାଖରେ ଗୋଟିଏ ଭୟପ୍ରଦ ମାଙ୍କଡ଼ସା'ର କାଠ-ନମୁନା ରଖିଦେବାରୁ ଦେଖାଗଲା ଯେ, ମାଙ୍କଡ଼ଛୁଆ ଗୁଡ଼ିକ ତାର-ମା' ପାଖକୁ ନ ଦୌଡ଼ି କନା-ମା' ପାଖକୁ ଦଉଡୁଛନ୍ତି । ମାଙ୍କଡ଼ଛୁଆର ଭୟ କମାଇବାରେ କନା-ମା'ର ପ୍ରଭାବ ଅଧିକ । ସେହିପରି କନା-ମା' ପାଖରେ ଥିଲାବେଳେ ଛୁଆଗୁଡ଼ିକ ନୂଆ ଓ ଭୟପ୍ରଦ ଜିନିଷଗୁଡ଼ିକୁ ଚାହିଁବା, ଛୁଇଁବା ଓ ତା' ସହିତ ଖେଳିବା ପାଇଁ ଆଗଭର ହେଉଛନ୍ତି । ତାର-ମା' ପାଖରେ ଥିଲାବେଳେ ସେମାନଙ୍କର ଭୟର ମାତ୍ରା ଏତେ ଅଧିକ ଯେ ସେମାନେ ଭୟପ୍ରଦ ଜିନିଷଟି ପ୍ରତି ଦୃଷ୍ଟି ନିକ୍ଷେପ ମଧ୍ୟ କରନ୍ତି ନାହିଁ ।

ଏଇଭଳି ଅନେକ ଗୁଡ଼ିଏ ପରୀକ୍ଷାରୁ ସିଦ୍ଧାନ୍ତ କରାଯାଇଛି ଯେ ଶିଶୁ ମାଙ୍କଡ଼ଟି ଜାବୋଡ଼ି ଧରି ପାରୁଥିବା କୌଣସି ବସ୍ତୁ ସହିତ ତାହାର ପାରସ୍ପରିକ କ୍ରିୟା ବୃଦ୍ଧି ପାଇବା ଆବଶ୍ୟକ, ଏ କ୍ଷେତ୍ରରେ ବସ୍ତୁଟି ଅନ୍ୟ ଗୋଟିଏ ମାଙ୍କଡ଼ ହେଲେ ସବୁଠାରୁ ଭଲ । ତେବେ ଗୋଟିଏ କନା-ମା' ତାକୁ ଜାବୋଡ଼ିବାର ସୁଯୋଗ ଦେଇ ପାରୁଥିବାରୁ ତାର-ମା' ତୁଳନାରେ କନା-ମା'ର କାର୍ଯ୍ୟକାରିତା ନିଶ୍ଚୟ ବେଶୀ ।

ମାନବ ଶିଶୁ ଓ ତାର ମା'କୁ ପରୀକ୍ଷାମୂଳକ ଅବସ୍ଥା ମଧ୍ୟରେ ଗତି କରାଇବା କଷ୍ଟସାଧ୍ୟ । ମନୋବିଜ୍ଞାନୀମାନଙ୍କ ମତରେ ଶିଶୁକାଳରେ ବିଶେଷତଃ ଦୁଇମାସରୁ ଦୁଇବର୍ଷ ମଧ୍ୟରେ ସ୍ପର୍ଶଜନିତ ସମ୍ବେଦନ ଏକ ମୌଳିକ ଆବଶ୍ୟକତା । ଶିଶୁ ମା'ର କୋଳରେ ମା'ର ଆଦର ଯତ୍ନ ଲାଭ କରିବା ମାଧ୍ୟମରେ ଓ ସଂସର୍ଗ ଲାଭ କରିବା ଫଳରେ ଏ ଆବଶ୍ୟକତାର ପୂରଣ ହୁଏ । ଯଦି କୌଣସି କାରଣବଶତଃ ଏଥିରେ ବାଧା ସୃଷ୍ଟି ହୁଏ, ତେବେ ଶିଶୁର ମାନସିକ ବିକାଶ ବ୍ୟାହତ ହୁଏ ।

ଅନ୍ୟ ଏକ ଦୃଷ୍ଟିକୋଣରୁ ମା' ଓ ସନ୍ତାନ ମଧ୍ୟରେ ଥିବା ଅନୁରାଗକୁ ବିଚାର କରାଯାଇପାରେ । ଆଚାର-ବିଜ୍ଞାନୀ (Ethologists)ମାନେ ପର୍ଯ୍ୟବେକ୍ଷଣ କରି ଦେଖିଛନ୍ତି ଯେ, ଜନ୍ମଲାଭ ପରେ ପରେ ବତକ-ଛୁଆମାନଙ୍କ ଆଗରେ ଯଦି କୌଣସି ଅପରିଚିତ ବସ୍ତୁକୁ ଗତିଶୀଳ ଅବସ୍ଥାରେ ଛାଡ଼ିଦିଆଯାଏ ତେବେ ବତକଛୁଆମାନେ ଏହି ବସ୍ତୁପଛରେ ଘୂରି ବୁଲନ୍ତି । ଏ ଅପରିଚିତ ବସ୍ତୁ ଗୋଟିଏ ବୃତ୍ତାକାର କାର୍ଡ଼-ବୋର୍ଡ଼ ହୋଇପାରେ, ମଣିଷ ହୋଇପାରେ ବା ଅନ୍ୟକିଛି ହୋଇପାରେ । ଏପରି ପ୍ରକ୍ରିୟାକୁ ଅନ୍ତର୍ମୁଦ୍ରଣ (Imprinting) କହନ୍ତି । ହାର୍ଲୋଙ୍କ ପରୀକ୍ଷାରେ ମାଙ୍କଡ଼ଛୁଆ ଗୁଡ଼ିକ କନା-ମା' ପ୍ରତି ଅନୁରାଗ ଦେଖାଇଲା ପରି ବତକଛୁଆ ଗୁଡ଼ିକ ଗତିଶୀଳ ବସ୍ତୁପ୍ରତି ଅନୁରକ୍ତି ଦେଖାନ୍ତି । ଉଭୟ କ୍ଷେତ୍ରରେ ଏଭଳି

ବସ୍ତୁ ଶିଶୁର କ୍ଷୁଧାତୃଷ୍ଣା ଦୂର କରେନି କି କଷ୍ଟରୁ ରକ୍ଷାକରେ ନାହିଁ । ଅନ୍ତର୍ମୁଦ୍ରଣକୁ ନିର୍ଭୁଲ ଭାବରେ ସଂକ୍ଷିପ୍ତ ପରିସର ମଧ୍ୟରେ ବୁଝାଇବା କଷ୍ଟହେଲେ ସୁଦ୍ଧା ଏତିକି କୁହାଯାଇପାରେ ଯେ, ଜନ୍ମସମୟରେ ବା ଜନ୍ମର ପରେ ପରେ ଦେଖାଇପାରୁଥିବା ଏକ ସ୍ୱତନ୍ତ୍ର ଧରଣର ପ୍ରତିକ୍ରିୟା ପ୍ରତ୍ୟେକ ପ୍ରାଣୀର ଥାଏ । ଶିଶୁ ପରିବେଷ୍ଟନୀରୁ ମିଳୁଥିବା ସର୍ବାଧିକ ଉପଯୋଗୀ ଉଦ୍ଦୀପକ ପ୍ରତି ଏହି ପ୍ରତିକ୍ରିୟା ଦର୍ଶାଏ । ଯେଉଁ ବସ୍ତୁପ୍ରତି ପ୍ରତିକ୍ରୟା ସୃଷ୍ଟି ହୁଏ ସେ ବସ୍ତୁଗୁଡ଼ିକ ଶିଶୁ ପାଇଁ ଅନୁରାଗର ବସ୍ତୁ ହୁଅନ୍ତି ।

ମାନବ ଶିଶୁର ସ୍ୱଭାବିକ ପ୍ରତିକ୍ରିୟା ହେଉଛି ଶିଶୁର ହସିବା, ସ୍ତନ୍ୟପାନ କରିବା, ଦରୋଟି ଭାଷାରେ କଥାକହିବା, କାନ୍ଦିବା, ଏଣେତେଣେ ଚାହିଁବା, ଅନ୍ୟ ଜିନିଷ ଧରିବା ଓ ତା' ସହିତ ଖେଳିବା । ସାଧାରଣ ଅବସ୍ଥାରେ ମା' ହେଉଛି ଏ ସମସ୍ତ ପ୍ରତିକ୍ରିୟାର ଲକ୍ଷ୍ୟସ୍ଥଳ । ପାରସ୍ପରିକ କ୍ରିୟାରେ ଶିଶୁକୁ ଧରିବା, କଥା କହିବା, ଦୋହଲାଇବା ଓ ଖେଳାଇବା ମାଧ୍ୟମରେ ପ୍ରତିକ୍ରିୟାଗୁଡ଼ିକ ପ୍ରକାଶ ପାଇବାରେ ମା'ର ଭୂମିକା ପ୍ରଧାନ । ତା'ଛଡ଼ା ଶିଶୁର କ୍ଷୁଧାତୃଷା ଦୂର କରିବା ଓ କଷ୍ଟ ନିବାରଣରେ ତାଙ୍କର ଭୂମିକା ସର୍ବାଧିକ । ଏ ସମସ୍ତର ଦୈନନ୍ଦିନ ପୁନରାବୃତ୍ତି ଫଳରେ ଶିଶୁ ମା' ସମ୍ପର୍କରେ ଏକ ସୁସ୍ପଷ୍ଟ ଧାରଣା ଲାଭକରେ । ଫଳରେ ସେ ତା'ର ଚାରି ପାଞ୍ଚମାସ ବୟସ ବେଳକୁ ତାର ଯତ୍ନକାରୀକୁ ଅନ୍ୟାନ୍ୟ ଲୋକମାନଙ୍କଠାରୁ ପୃଥକ୍ ଭାବେ ଗ୍ରହଣ କରେ ।

ପୂର୍ବରୁ କୁହାଯାଇଛି ଯେ ଅନୁରାଗର ଗୁରୁତ୍ୱ ଦୁଇମାସରୁ ଦୁଇବର୍ଷ ମଧ୍ୟରେ ବେଶୀ ଅନୁଭୂତ ହୁଏ । ଶିଶୁର ତିନି ଚାରି ବର୍ଷ ବେଳକୁ ସେ ବିଭିନ୍ନ ବ୍ୟକ୍ତିପ୍ରତି ଯେଉଁ ଭଲ ପାଇବା ଦେଖାଏ ତାହା ଆଲୋଚିତ ଅନୁରାଗଠାରୁ ଭିନ୍ନ । ଏପରି ଭଲ ପାଇବାର ଉତ୍ସ ହେଉଛି ଶିଶୁର ଲବ୍‌ଧ ଅନୁଭୂତି ଯେ ଅନ୍ୟମାନେ ତାକୁ ମୂଲ୍ୟ ଦେଉଛନ୍ତି । ଏପରି ଉପଲବ୍‌ଧିରୁ ଶିଶୁ ମୂଲ୍ୟ ଦେଉଥିବା କେତେକ ବ୍ୟକ୍ତିଙ୍କ ସହିତ ଭାବଗତ ସୁସମ୍ପର୍କ ରକ୍ଷା କରିବାକୁ ଇଚ୍ଛାକରେ । ଜନ୍ମରୁ ତିନି ବର୍ଷ ମଧ୍ୟରେ ତା'ର ମା'କୁ ଦେଖିନଥିବା (ପ୍ରକାରନ୍ତରେ ଅନୁରାଗ ପାଇ ନଥିବା) ଗୋଟିଏ ଶିଶୁ ଚାରିବର୍ଷ ବେଳକୁ ତା'ର ମା' ପ୍ରତି ଭଲପାଇବା ଦେଖାଇପାରେ, ଯଦି ତାର ହୃଦ୍‌ବୋଧ ହୁଏ ଯେ ମା' ତାକୁ ମୂଲ୍ୟ ଦେଉଛି । ଅନ୍ୟପକ୍ଷରେ ଜନ୍ମଠାରୁ ତିନିବର୍ଷଧରି ଅନୁରାଗ ପାଇଥିବା ମା' ପ୍ରତି ଚାରି ପାଞ୍ଚବର୍ଷ ବେଳକୁ ଭଲପାଇବା ଯେ ଆସିବ ଏଥିରେ ନିଶ୍ଚିତତା ନାହିଁ । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ସନ୍ତାନର ସ୍ୱାଧୀନତା ଓ ଲକ୍ଷ୍ୟସାଧନ କାର୍ଯ୍ୟକୁ ଉତ୍ସାହିତ କଲେ ଶିଶୁ ଅପେକ୍ଷାକୃତ କମ୍ ନିର୍ଭରଶୀଳ ହେବ । ଅନ୍ୟପକ୍ଷରେ ନିର୍ଭରଶୀଳତାକୁ ଉତ୍ସାହିତ କଲେ ସେ ପ୍ରତି

କଥାରେ ମା' ପାଖକୁ ଦୌଡ଼ିବାର ଇଚ୍ଛା ପୋଷଣ କରିବ । ଏପରି ପରିପ୍ରେକ୍ଷୀରେ ଶିଶୁର ଦୁଇବର୍ଷ ମଧ୍ୟରେ ପ୍ରଦର୍ଶିତ ପ୍ରତୀକଶୂନ୍ୟ ଅନୁରାଗ ଓ ପରବର୍ତ୍ତୀ ସମୟରେ ଶିକ୍ଷାକୃତ ପ୍ରତୀକପୂର୍ଣ୍ଣ ସୁସମ୍ପର୍କ ପୃଥକ୍ ବୋଲି ବୁଝିବାକୁ ହେବ ।

ମନୋବିଜ୍ଞାନୀ ବୋଲ୍‌ବୀଙ୍କ ମତରେ ମା'ର ଖୁବ୍ ନିକଟରେ ରହିବା ହେଉଛି ଶିଶୁର ଅନୁରାଗଗତ ବ୍ୟବହାରର ମୂଳ ଲକ୍ଷ୍ୟ । ଯଦି କୌଣସି କାରଣରୁ ଏ ସାମୀପ୍ୟ ବ୍ୟାହତ ହୁଏ ତେବେ ଶିଶୁଟି କୌଣସି କାର୍ଯ୍ୟକରି ଏ ଅବସ୍ଥା ଦୂରକରେ ଏବଂ ସାମୀପ୍ୟ ଫେରାଇ ଆଣେ । ଅନ୍ୟମାନଙ୍କ ମତରେ ଅନିଶ୍ଚିତତାର ଭୟ ଫଳରେ ଶିଶୁର ଅନୁରାଗ ଜନିତ ବ୍ୟବହାର ଦେଖାଯାଏ ।



(ଅନୁରାଗର ସ୍ପର୍ଶ)

କାରଣ ଯାହାହେଲେ ମଧ୍ୟ ଅନୁରାଗ ଜନିତ ବ୍ୟବହାରର ପୁନରାବୃତ୍ତି ଫଳରେ ଶିଶୁ ମନରେ ଏକ ଛବି ଅଙ୍କାହୁଏ ତା'ର ଯତ୍ନକାରୀ ସମ୍ପର୍କରେ । ଏହି ଯତ୍ନକାରୀକୁ ସେ ଭଲରୂପେ ଗ୍ରହଣ କରେ । ଖେଳିବା ପାଇଁ ତା' ଆଡ଼କୁ ଆଗେଇଯାଏ ଏବଂ ଭୟବେଳେ ତା' ପାଖକୁ ଦୌଡ଼େ । କିନ୍ତୁ ଏପରି ବ୍ୟବହାର ବିକାଶର ଏକ ଚରମକାଳ (Criticial Period) ରହିଛି । ପୂର୍ବ ବର୍ଣ୍ଣିତ ଅନ୍ତର୍ମୁଦ୍ରଣ ପରୀକ୍ଷାରେ ଦେଖାଯାଇଛି—ବତକଛୁଆର ଠିକ୍ ଜନ୍ମ ପରେ ପରେ ଅନ୍ୟ ପଛରେ ଦୌଡ଼ିବାର ପ୍ରବଣତା ସର୍ବାଧିକ । କିନ୍ତୁ ଜନ୍ମର ତେରଘଣ୍ଟା ପରେ ବତକଛୁଆଟି ଅନ୍ୟକୁ ବିରୁଚି ପ୍ରଦର୍ଶନ କରେ । ତେରଘଣ୍ଟା ପରେ ଯେକୌଣସି ଅପରିଚିତ ବସ୍ତୁ ବତକଛୁଆ ମନରେ ଭୀତି ସଞ୍ଚାର କରେ ଓ ବତକଛୁଆଟି ଦୌଡ଼ି ପଳାଏ । ଏ ଦୃଷ୍ଟାନ୍ତର ତାତ୍ପର୍ଯ୍ୟ ହେଉଛି ସେ ଅନୁରାଗ ପ୍ରାପ୍ତି ଓ ଅନୁରାଗ ଗତ

ବ୍ୟବହାର ପ୍ରଦର୍ଶନର ଏକ ଚରମକାଳ ଅଛି । ଏହି ସମୟ ମଧ୍ୟରେ ଯତ୍ନକାରୀ ବା ମା'ର ପ୍ରଭାବ ଖୁବ୍ ବେଶୀ ପଡ଼େ ଶିଶୁ ଉପରେ ।

ଅନୁରାଗଗତ ବ୍ୟବହାର ଫଳରେ ଶିଶୁମନରେ ନିଜର ଜନନୀ ବା ଯତ୍ନକାରୀ ସମ୍ପର୍କରେ ଯେଉଁ ପ୍ରତିଛବି ଅଙ୍କିତ ହୁଏ ସେ ପ୍ରତିଛବି କ୍ରମଶଃ ସ୍ପଷ୍ଟତର ହୁଏ । କୌଣସି କାରଣରୁ ଏହି ଛବିଠାରୁ ଭିନ୍ନ ଅନ୍ୟ କୌଣସି ଘଟଣାର ସମ୍ମୁଖୀନ ହେଲେ ଶିଶୁମନରେ ଭୟ ଜନ୍ମେ । ଶିଶୁଟି ବିଭିନ୍ନ ଧରଣର ଭୟର ଶରବ୍ୟ ହେଲେ ମଧ୍ୟ ଦୁଇ ପ୍ରକାର ଭୟ ଅନୁରାଗଗତ ବ୍ୟବହାର ସହିତ ଜଡ଼ିତ । ପ୍ରଥମଟି ହେଉଛି ଅପରିଚିତ ଉଦ୍‌ଗ୍ରୀବତା ଓ ଦ୍ୱିତୀୟଟି ହେଉଛି ପୃଥକୀକରଣ ଉଦ୍‌ଗ୍ରୀବତା ।

ସାତ ଆଠ ମାସର ଶିଶୁଟି ପାଖରେ ହଠାତ୍ କୌଣସି ଅପରିଚିତ ବ୍ୟକ୍ତିର ମୁହଁ ଦେଖାଗଲେ ଶିଶୁଟି ଉଦ୍‌ଗ୍ରୀବତା ପ୍ରକାଶ କରେ । ତାହାର ମୁଁହ କଠିନ ହୋଇଉଠେ ଓ ସେ କାନ୍ଦିବାକୁ ଆରମ୍ଭ କରେ, ଅପରିଚିତ ବ୍ୟକ୍ତିଟି ଦୂରକୁ ଚାଲିଗଲେ କାନ୍ଦ ବନ୍ଦ ହୁଏ; ପୁଣି ଫେରିଆସି ଦେଖାଦେଲେ କାନ୍ଦ ଆରମ୍ଭ ହୁଏ । ସାଧାରଣତଃ ବାର ପନ୍ଦର ମାସ ବେଳକୁ ଏପରି ଅପରିଚିତ ଉଦ୍‌ଗ୍ରୀବତା ଚାଲିଯାଏ । ଯେଉଁ ଶିଶୁମାନେ ଅଧିକ ସଂଖ୍ୟକ ଅପରିଚିତ ବ୍ୟକ୍ତିଙ୍କୁ ଦେଖିବାର ସୁଯୋଗ ପାଇ ନଥାନ୍ତି ସେମାନଙ୍କର ଏପରି ଉଦ୍‌ଗ୍ରୀବତା ବେଶୀ । ଅପରିଚିତ ବ୍ୟକ୍ତି ଦେଖି ଶିଶୁ କାହିଁକି କାନ୍ଦେ ସେ ସମ୍ପର୍କରେ ମନୋବିଜ୍ଞାନୀମାନେ ମତ ଦିଅନ୍ତି ଯେ, ଶିଶୁମନରେ ମା' ବା ଯତ୍ନକାରୀର ପ୍ରତିଛବି ସୁସ୍ପଷ୍ଟ ଅଙ୍କିତ ହେବାପରେ ଶିଶୁ ଗୋଟିଏ ଭିନ୍ନ ଛବିକୁ ଦେଖି ଉଦ୍‌ଗ୍ରୀବତା ପ୍ରକାଶ କରେ । ବେଶୀବୟସର ପିଲାମାନେ ଏପରି ଘଟଣାର ସମ୍ମୁଖୀନ ହେଲେ ସେମାନେ ଘଟଣାଟିକୁ ବୁଝିବାକୁ ଚେଷ୍ଟା କରନ୍ତି ଓ ସେ ସ୍ଥଳରେ ଯାହା କରାଯିବା ଠିକ୍‌ବୋଲି ବିଚାର କରି ସେପରି କାର୍ଯ୍ୟ କରନ୍ତି । ପନ୍ଦରମାସ ବା ତା'ଠାରୁ କମ୍ ବୟସର ଶିଶୁର ଏ ଭିନ୍ନ ଘଟଣାକୁ ବୁଝିବା ପାଇଁ ପରିପକ୍ୱତା ଆସି ନଥାଏ । ସେ ପରିସ୍ଥିତିର କିପରି ମୁକାବିଲା କରିବ ତା' ନ ବୁଝି କାନ୍ଦିବାକୁ ଆରମ୍ଭ କରେ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ତା'ର ବୋଧଶକ୍ତି ବଢ଼େ । ଅଳ୍ପ କିଛି ମାସ ପରେ ସେ ହୁଏତ ମା' ପାଖକୁ ଦୌଡ଼ିଯାଇ ପଚାରିପାରେ ଯେ, ଅପରିଚିତ ବ୍ୟକ୍ତିଟି କିଏ ? ବିଭିନ୍ନ ବ୍ୟକ୍ତିଙ୍କ ମୁହଁ ଦେଖି ତା'ର ଉଦ୍‌ଗ୍ରୀବତା ହ୍ରାସ ହୁଏ ।

ଦ୍ୱିତୀୟ ଧରଣର ଉଦ୍‌ଗ୍ରୀବତାଟି ସାଧାରଣତଃ ପ୍ରଥମ ବର୍ଷର ଶେଷବେଳକୁ ଦେଖାଦିଏ ଏବଂ ଦ୍ୱିତୀୟ ବର୍ଷର ଶେଷ ବେଳକୁ ଚାଲିଯାଏ । ଅପରିଚିତ ବ୍ୟକ୍ତି ଦର୍ଶନରେ ସୃଷ୍ଟ ଉଦ୍‌ଗ୍ରୀବତାଠାରୁ ଏହା ଭିନ୍ନ । ଉଦାହରଣ ସ୍ୱରୂପ, ଏକ ବର୍ଷର ଗୋଟିଏ ଶିଶୁ ଖେଳୁଥିବା ସମୟରେ ଯଦି ଦେଖେ ଯେ,

ତା'ର ମା' ଗୃହଦ୍ୱାର ଦେଇ ଚାଲି ଯାଉଛି ଏବଂ ଦ୍ୱାରଟି ବନ୍ଦ ହୋଇ ଯାଉଛି ତେବେ ସେ କାନ୍ଦିବାକୁ ଆରମ୍ଭ କରେ । ଏହା ହେଉଛି ପୃଥକୀକରଣ ଉଦ୍‌ଗ୍ରୀବତା । ଖୁବ୍ କମ ବୟସର ଶିଶୁ ଏ କ୍ଷେତ୍ରରେ କାନ୍ଦିବ ନାହିଁ । ପ୍ରଶ୍ନ ହେଉଛି ଅପେକ୍ଷାକୃତ ବେଶୀ ବୟସର ଶିଶୁ ଏପରି ଉଦ୍‌ଗ୍ରୀବତା ଦେଖାନ୍ତି କାହିଁକି ? ଅପରିଚିତ ଉଦ୍‌ଗ୍ରୀବତା ସମ୍ପର୍କରେ କୁହାଯାଇଛି ସେ ଶିଶୁ ନିଜ ମା' ବା ଯତ୍ନକାରୀ ବିଷୟରେ ଲାଭ କରିଥିବା ପ୍ରତିଛବିଠାରୁ ପୃଥକ ଘଟଣା ଦେଖି ଉଦ୍‌ଗ୍ରୀବତା ପ୍ରକାଶ କରେ । ଶିଶୁଟିକୁ ପ୍ରାୟ ଏକବର୍ଷ ହେଲା ବେଳକୁ ଏ ପ୍ରତିଛବି ଏକ ପ୍ରସାରିତ ରୂପ ଲାଭ କରେ । ନିଜ ମା' ବା ଯତ୍ନକାରୀର ପ୍ରତିଛବିରେ ମା' ବା ଯତ୍ନକାରୀ କେବଳ ଏକ ବ୍ୟକ୍ତି ହିସାବରେ ଶିଶୁକୁ ଦେଖାଯାଆନ୍ତି ନାହିଁ । ତା' ସହିତ ସଂଶ୍ଳିଷ୍ଟ ହୋଇପଡ଼େ ବିଭିନ୍ନ ସ୍ଥାନ ଓ ଆନୁସଙ୍ଗିକ ଘଟଣା । ରୋଷେଇଘରେ ମା', ଶୋଇବାଘରେ ବିଛଣାରେ ମା' ଇତ୍ୟାଦିର ପ୍ରତିଛବି ଅଙ୍କିତ ହୁଏ । ଫଳରେ ଏ ସମସ୍ତ ପ୍ରତିଛବିଠାରୁ ପୃଥକ୍ ଏକ ଘଟଣାର ସମ୍ମୁଖୀନ ହେଲେ ଶିଶୁର ଉଦ୍‌ଗ୍ରୀବତା ପ୍ରକାଶ ପାଏ । ଦେଖାଦେଇଛି ଯେ, ମା' ଯଦି ତାର ନିତ୍ୟବ୍ୟବହୃତ ଦ୍ୱାର ଦେଇ ନଯାଇ ଅନ୍ୟ ଗୋଟିଏ କମ୍ ବ୍ୟବହୃତ ଦ୍ୱାରଦେଇ ପିଲା ପାଖରୁ ଚାଲିଯାଏ, ତେବେ ପିଲାଟି ବେଶୀ କାନ୍ଦେ ।

ଅନୁରାଗଗତ ବ୍ୟବହାର ଓ ପୃଥକୀକରଣ ଉଦ୍‌ଗ୍ରୀବତା ପ୍ରକାଶର ସଂପର୍କ ଯୋଗୁ କେତେକ ମନୋବିଜ୍ଞାନୀ ପୃଥକୀକରଣ ଉଦ୍‌ଗ୍ରୀବତାର ପରିପ୍ରକାଶକୁ ଅନୁରାଗର ପରିମାପକ ସ୍ୱରୂପ ଗ୍ରହଣ କରନ୍ତି । ଅଧିକାଂଶ ମନୋବିଜ୍ଞାନୀ ଏ ମତର ବିରୋଧୀ, କାରଣ ଉଦ୍‌ଗ୍ରୀବତାର ପରିପ୍ରକାଶ ବହୁ ପରିମାଣରେ ଶିଶୁର ଜ୍ଞାନଗତ ବିକାଶ ଉପରେ ନିର୍ଭର କରେ ବୋଲି ପ୍ରମାଣ ରହିଛି । ବାପ ବା ମା' ଛାଡ଼ିଦେଇ ଚାଲିଯିବାର ଘଟଣାଟି ଅସ୍ୱାଭାବିକ—ଏହା ବୁଝିବାର କ୍ଷମତା ଉପରେ ଶିଶୁର ଉଦ୍‌ଗ୍ରୀବତା ପ୍ରକାଶ ନିର୍ଭର କରେ । ଉତ୍ତର ଆମେରିକାର ଦେଖାଯାଏ ଯେ ମା' ପ୍ରତି ଅଧିକ ଅନୁରକ୍ତ ଶିଶୁଟିକୁ ଯଦି ଗୋଟିଏ ଅପରିଚିତ ଘରେ ଛାଡ଼ି ଦିଆଯାଏ ତେବେ ସେ ଘରେ ବାପ ଥିଲେ ପିଲାଟି ଉଦ୍‌ଗ୍ରୀବତା ଦେଖାଏ ନାହିଁ । ଅଧିକନ୍ତୁ, ବାପ ବା ମା' କେହି ତାକୁ ଗୋଟିଏ ଅପରିଚିତ ସ୍ତ୍ରୀଲୋକ ପାଖରେ ଛାଡ଼ିଦେଲେ ଶିଶୁଟି କାନ୍ଦେ । ପୃଥକୀକରଣ ଉଦ୍‌ଗ୍ରୀବତା ଅନୁରାଗର ପରିମାପକ ହୋଇଥିଲେ ଶିଶୁମାନେ ବାପ ଛାଡ଼ିଗଲେ ଯେତିକି ଯେତିକି କାନ୍ଦୁଛନ୍ତି ମା' ଛାଡ଼ିଦେଲେ ତା'ଠାରୁ ଅଧିକ କାନ୍ଦନ୍ତେ । ଜ୍ଞାନଗତ ବିକାଶ ବ୍ୟତୀତ ଶିଶୁର ଭୟପ୍ରଦ ବସ୍ତୁ ପ୍ରତି ମନୋବୃତ୍ତି ଓ ଉପଯୋଗୀ ପ୍ରତିକ୍ରିୟା ଦର୍ଶାଇବାର ଅକ୍ଷମତା ତାର ଉଦ୍‌ଗ୍ରୀବତାକୁ ପ୍ରଭାବିତ କରେ । ସୁତରାଂ ପୃଥକୀକରଣ ଉଦ୍‌ଗ୍ରୀବତା ପରିପ୍ରକାଶ ଏକ ଜଟିଳ ପ୍ରକ୍ରିୟା ।

ଶେଷରେ କୁହାଯାଇପାରେ ଯେ, ଶିଶୁ କେତେକ ପ୍ରକ୍ରିୟାର କ୍ଷମତା ନେଇ ଜନ୍ମ ହୋଇଥାଏ । ଶିଶୁର ହସିବା, କଥା କହିବା, ଚାରିଆଡ଼କୁ ଚାହିଁବା, କୌଣସି କୌଣସି ଜିନିଷକୁ ତନଖି ଦେଖିବାର ପ୍ରତିକ୍ରିୟା ଶିଶୁ ନିଜର ମା' ବା ଯତ୍ନକାରୀ ପ୍ରତି ଦର୍ଶାଇ ସେଗୁଡ଼ିକୁ ଅଧିକ ସଙ୍ଗଠିତ କରେ । ପରେ ପରେ ମା' ବା ଯତ୍ନକାରୀର ପ୍ରତିଛବିକୁ ଏକ ଭିତ୍ତିରୂପେ ଗ୍ରହଣ କରେ । ଏହି ପ୍ରତିଛବି ଠାରୁ ଭିନ୍ନ ଘଟଣାବଳୀ ପ୍ରତି ପ୍ରାଥମିକ ଅବସ୍ଥାରେ ଉଦ୍‌ଗ୍ରୀବତା ପ୍ରକାଶ କଲେ ମଧ୍ୟ ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଏପରି ଘଟଣାକୁ ବୁଝିବାକୁ ଚେଷ୍ଟାକରେ ଓ ତା' ପ୍ରତି ଉପଯୋଗୀ ପ୍ରତିକ୍ରିୟା ଦର୍ଶାଏ । ଏହା ହେଉଛି ମନସ୍ତାତ୍ତ୍ୱିକ ବିକାଶର ଗୋଟିଏ ଧାରା । ବହୁବିଧ ଘଟଣାର ସମ୍ମୁଖୀନ ହୋଇ କ୍ରମଶଃ ମାନସିକ ପ୍ରସ୍ତୁତି ବୃଦ୍ଧିପାଏ । ବିଭିନ୍ନ ବ୍ୟକ୍ତି, ବସ୍ତୁ ଓ ଘଟଣାଜନିତ ଅଭିଜ୍ଞତାର ପରିସର ତା'ର ମାନସିକ ବିକାଶକୁ କ୍ଷିପ୍ରତର କରେ । ଅନୁଷ୍ଠାନ ତଥା ଏକସ୍ୱରୀ (Monotonous) ପରିବେଶରେ ପ୍ରତିପାଳିତ ଶିଶୁର ଜ୍ଞାନଗତ ଓ ଭାବଗତ ବିକାଶ ବ୍ୟାହତ ହେବାରୁ ସେ ସାମାଜିକ ଭାବେ ଅନ୍ୟାନ୍ୟ ବ୍ୟକ୍ତିଙ୍କ ସହିତ ପାରସ୍ପରିକ କ୍ରିୟାରେ ସଫଳ ଅଂଶଗ୍ରହଣ କରିପାରେ ନାହିଁ । ଅନ୍ୟ ପକ୍ଷରେ ପରିବାରରେ ବା କ୍ରିୟାଶୀଳ ଅନୁଷ୍ଠାନରେ ପାଳିତ ଶିଶୁର ଏ ଅଭାବ ଦେଖାଯାଏ ନାହିଁ । ଅବଶ୍ୟ ଏକବର୍ଷ ମଧ୍ୟରେ ଘଟି ଯାଇଥିବା କେତେକ ମାନସିକ କ୍ଷତି ପରବର୍ତ୍ତୀ ସ୍ତରରେ ଉନ୍ନତ ପରିବେଷ୍ଟନୀ ଦ୍ୱାରା ପରିପୂରିତ ହୋଇପାରେ । ତଥାପି ଅଳ୍ପ ବୟସରୁ ଶିଶୁକୁ ଏକ ଅନୁରାଗପୂର୍ଣ୍ଣ ବାତାବରଣ ଦେଇ ତାର ମାନସିକ ବିକାଶକୁ କ୍ରିୟାଶୀଳ ଓ ତ୍ୱରାନ୍ୱିତ କରିବା ଦାୟିତ୍ୱସମ୍ପନ୍ନ ଯୁବଗୋଷ୍ଠୀର କର୍ତ୍ତବ୍ୟ, ଏଥିରେ ସନ୍ଦେହ ନାହିଁ ।

**କେଉଁ ବାଟରେ ଯିବେ ?**

ଶିଶୁ ପାଇଁ ସ୍ପର୍ଶ ଅତ୍ୟାବଶ୍ୟକ

ଶିଶୁକୁ ଏହାର ନିବିଡ଼ ଅନୁଭବ ଦିଅନ୍ତୁ ।



# ଶିଶୁମାନଙ୍କର ଭାବଗତ ବିକାଶର କେତୋଟି ମନସ୍ତାତ୍ତ୍ୱିକ ଦିଗ

ଶିଶୁମାନଙ୍କର ବିକାଶ କେବଳ ବୌଦ୍ଧିକ ଉନ୍ନତି ଉପରେ କେନ୍ଦ୍ରୀଭୂତ ନୁହେଁ । ସେମାନଙ୍କର ବୌଦ୍ଧିକ ବିକାଶ ସହିତ ଭାବଗତ (Emotional) ତଥା ସାମାଜିକ ବିକାଶ ମଧ୍ୟ ଆବଶ୍ୟକ । ଶିଶୁମାନଙ୍କର ଏହି ଆବେଗିକ ବିକାଶର ଧାରାକୁ ବୁଝିପାରିଲେ ସେ ସବୁକୁ ଠିକ୍‌ଭାବେ ନିୟନ୍ତ୍ରଣ କରି ତାକୁ ପ୍ରୀତିପଦ ରୂପ ଦେବା ସମ୍ଭବ ହୁଏ ।

ପ୍ରଥମତଃ ବୁଝିବାକୁ ହେବ ଯେ, ଶିଶୁମାନଙ୍କର ଆବେଗ ସେମାନଙ୍କର କେତେକ କାର୍ଯ୍ୟ ସାଧନରେ ସହାୟକ ହୁଏ । କେତେକ ସ୍ଥଳରେ ଶିଶୁର ଆବେଗ ତାହାର ଦୈନନ୍ଦିନ କ୍ରିୟାକଳାପରେ ଆନନ୍ଦାନୁଭୂତି ଯୋଗ କରିଥାଏ । ବେଳେବେଳେ ଆବେଗ ଶିଶୁକୁ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟପାଇଁ ପ୍ରସ୍ତୁତ କରାଏ । ଆବେଗର ପ୍ରବାହରେ ଶିଶୁ ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟପାଇଁ ଅଧିକ ଅଭିପ୍ରେରଣା ଲାଭ କରିପାରେ । ଆବେଗ ପ୍ରବାହରେ ଶିଶୁ ବେଳେବେଳେ ଅନ୍ୟ ସହିତ କଥାବାର୍ତ୍ତା କରିବାପାଇଁ ଓ ଅନ୍ୟ ସହିତ ସଂଯୋଗ ପ୍ରତିଷ୍ଠା କରିବା ପାଇଁ ଆଗଭର ହୋଇଥାଏ । ଶିଶୁର ଆବେଗ ତା' ନିଜ ସମ୍ପର୍କରେ ଥିବା ଧାରଣାକୁ ପ୍ରଭାବିତ କରେ ଏବଂ ପରବର୍ତ୍ତୀ ସମୟରେ ଜୀବନ ପ୍ରତି ତା'ର ଦୃଷ୍ଟିଭଙ୍ଗୀ ନିର୍ମାଣରେ ପ୍ରଭାବ ପକାଏ ।

ଶିଶୁ ଆବେଗ କେତେକ କ୍ଷେତ୍ରରେ ବାଧା ମଧ୍ୟ ସୃଷ୍ଟିକରେ । ଆବେଗର ମାତ୍ରା ଉପରେ ନିର୍ଭର କରି କୁହାଯାଇପାରେ ଯେ, କେତେକ ସ୍ଥଳରେ ଶିଶୁର କୌଶଳ ଶିକ୍ଷା ବାଧାପ୍ରାପ୍ତ ହୁଏ । ଆବେଗ ପ୍ରଭାବରେ ସେ ବେଳେବେଳେ ଶିକ୍ଷା କରିପାରେ ନାହିଁ । ସ୍ଥଳବିଶେଷରେ ତା'ର ମାନସିକ କ୍ରିୟାକଳାପ (ଯଥା ଅଙ୍କ କଷିବା) ବାଧାପ୍ରାପ୍ତ ହୁଏ । ସ୍ଥଳ ବିଶେଷରେ ଶିଶୁ ଆବେଗର ପ୍ରଭାବରେ ଉପଯୋଗୀ ସାମାଜିକ ସମ୍ପର୍କ ସ୍ଥାପନରେ ଅସମର୍ଥ ହୁଏ । କେତେଗୁଡ଼ିଏ ଆବେଗର ପୁନରାବୃତ୍ତି ଘଟିବା ଫଳରେ ଶିଶୁର କେତେକ ବଦଅଭ୍ୟାସ ସୃଷ୍ଟି ହୋଇପାରେ । ମୋଟ ଉପରେ ଶିଶୁମାନଙ୍କ ଆବେଗର ଏକ କାର୍ଯ୍ୟଗତ (Functional Role) ଭୂମିକା ରହିଛି, ଏହା ସ୍ୱୀକାର କରିବାକୁ ହେବ ।

ଦ୍ୱିତୀୟତଃ ଶିଶୁମାନଙ୍କ ଆବେଗର କେତୋଟି ବୈଶିଷ୍ଟ୍ୟ ରହିଛି ମଝିରେ ମଝିରେ ଶିଶୁମାନଙ୍କର ଆବେଗର ପରିପ୍ରକାଶ ଘଟେ । ଏହି ଆବେଗର ମାତ୍ରା



(ବିସ୍ମୟ)



(ଦୁଃଖ)



(ଦୁଃଖ)



(ଆନନ୍ଦ)



(ବିରକ୍ତି)



(ଭୟ)



(କ୍ରୋଧ)

(ଭିନ୍ନ ଭିନ୍ନ ଆବେଗର ପରିପ୍ରକାଶ)

ସାଧାରଣତଃ ଅଧିକ ହୋଇଥାଏ । କିନ୍ତୁ ଅବସ୍ଥା ଭିନ୍ନରେ ଆବେଗର ମାତ୍ରା ଭିନ୍ନ ହୋଇ ନଥାଏ । ଅର୍ଥାତ୍ ଶିଶୁଟି ସାମାନ୍ୟ ଆଘାତ ପାଇଲେ ଯେପରି ଜୋର୍‌ରେ କାନ୍ଦେ ଅଧିକ ଆଘାତ ପାଇଲେ ମଧ ସେପରି କାନ୍ଦେ । ବୟସର ବୃଦ୍ଧି ଘଟିଲେ ଅବସ୍ଥାକୁ ଚାହିଁ ଆବେଗ ପ୍ରକାଶର ମାତ୍ରା କମ୍ ବା ବେଶୀ ହୁଏ । ଶିଶୁର ଆବେଗ ଦୀର୍ଘସ୍ଥାୟୀ ନ ହୋଇ କ୍ଷଣସ୍ଥାୟୀ ହୋଇଥାଏ । ବ୍ୟବହାର ଓ ମୁଖଭଙ୍ଗୀରେ ଆବେଗ ପ୍ରତିଫଳିତ ହୁଏ । ବୟସର ବୃଦ୍ଧି ଘଟିଲେ କେତେକ ଆବେଗର ପରିମାଣ କମି ଅନ୍ୟ କେତେକ ଆବେଗର ମାତ୍ରା ବୃଦ୍ଧିପାଏ । ଶିଶୁର ଆବେଗିକ ପରିପ୍ରକାଶ ତା'ର ନିଜସ୍ୱ ବ୍ୟକ୍ତିତ୍ୱକୁ ରୂପଦିଏ ।

ଶିଶୁର ଆବେଗିକ ଅନୁଭୂତି ଓ ପରିପ୍ରକାଶକୁ ତା'ର ବ୍ୟକ୍ତିଗତ ଜୀବନର ଉପଯୋଗୀ କରିବା ସଙ୍ଗେ ସଙ୍ଗେ ତାକୁ ସାମାଜିକ ରୂପ ଦେବାକୁ ହେଲେ ପିତାମାତା, ଶିକ୍ଷକ ଶିକ୍ଷୟତ୍ରୀ ଏବଂ ଦାୟିତ୍ୱ ସମ୍ପନ୍ନ ବୟସ୍କ ବ୍ୟକ୍ତିମାନଙ୍କୁ ଦୁଇଟି ଦିଗ ପ୍ରତି ସଚେତନ ହେବାକୁ ପଡ଼ିବ ।

**ଶିଶୁ ଆବେଗ ଶିକ୍ଷା କରେ କିପରି ?**

ଅନ୍ୟାନ୍ୟ ବ୍ୟବହାର ଶିକ୍ଷା କଲାପରି ଶିଶୁ ଆବେଗ ମଧ ଶିକ୍ଷା କରେ । ଏପରି ଶିକ୍ଷା କ୍ଷେତ୍ରରେ ମୁଖ୍ୟତଃ ଚାରୋଟି ପ୍ରଣାଳୀ କାର୍ଯ୍ୟ କରେ ।

ପ୍ରଥମତଃ, ଶିଶୁ କେତେକ ସ୍ଥଳରେ ଯତ୍ନ ପ୍ରମାଦ (Trial end error) ପ୍ରଣାଳୀରେ ଆବେଗ ଶିକ୍ଷାକରେ । ଆରମ୍ଭରେ ସେ ଇତସ୍ତତଃ ଭାବରେ କୌଣସି କାରଣ ଥାଉ ବା ନଥାଉ କେତେକ ଆବେଗ ଦେଖାଇଥାଏ । ସେ କେତେବେଳେ ହସେ ତ କେତେବେଳେ କାନ୍ଦେ । ପ୍ରଥମେ ପ୍ରଥମେ ଏହା ନିମୟବିହୀନ ହୋଇଥାଏ । ମାତ୍ର ଧୀରେ ଧୀରେ ଶିଶୁ ଅନୁଭବ କରେ ଯେ, ସେ କାନ୍ଦିବା ଫଳରେ କେତେକ ଅପ୍ରୀତିକର ଅବସ୍ଥା (ଯଥା—ଶୀତରେ ଓଦାଲୁଗା ଉପରେ ପଡ଼ି ରହିବା) ଏଡ଼ାଇ ଯାଉଛି ଏବଂ ବୟସ୍କମାନେ (ଯଥା—ପିତାମାତା) ତାକୁ ସହାୟତା ପ୍ରଦାନ କରୁଛନ୍ତି, ସେତେବେଳେ ତା'ର କାନ୍ଦିବା ଧୀରେ ଧୀରେ ଲକ୍ଷ୍ୟ ସଂଯୁକ୍ତ ହୋଇଉଠେ । ସେହିପରି ସେ ନିଜର ହସ ଓ ଆନନ୍ଦ ପ୍ରକାଶ କରି କେତେକ ଜିନିଷ ହାସଲ କରିବାକୁ ଶିଖେ । ଏପରି କ୍ଷେତ୍ରରେ ଶିଶୁର ଲକ୍ଷ୍ୟବିହୀନ ଆବେଗ ଧୀରେ ଧୀରେ ଲକ୍ଷ୍ୟ ସଂଯୁକ୍ତ ଆବେଗର ରୂପ ନିଏ ।

ଦ୍ୱିତୀୟତଃ, କେତେକ କ୍ଷେତ୍ରରେ ଅଭ୍ୟନୁକୂଳନ ନୀତିରେ (Conditioning) ଆବେଗ ରୂପ ନିଏ । ବଡ଼ ହୁଅନ୍ତୁ ବା ଛୋଟ ହୁଅନ୍ତୁ, ଅତର୍କିତ ଭାବରେ ବାଣ ଫୁଟିଲା ପରି ଶବ୍ଦ ହେଲେ ସମସ୍ତେ ଚମକି ଉଠନ୍ତି । ଧରାଯାଉ

ଗୋଟିଏ କଳା ବିରାଡ଼ି କୋଠରି ମଧ୍ୟକୁ ପ୍ରବେଶ କଲାମାତ୍ରେ ବାହାରେ ଏପରି ଗୋଟିଏ ଶବ୍ଦ ହେଲା । ବିରାଡ଼ିର ପ୍ରବେଶ ଓ ଭୟଙ୍କର ଶବ୍ଦ ଏକ ଆକସ୍ମିକ ସଂଯୋଗ । ମାତ୍ର ଏପରି ଘଟିଲେ ଶିଶୁଟିର କଳା ବିରାଡ଼ି ପ୍ରତି ଭୟ ଜନ୍ମିବ । କଳା ବିରାଡ଼ିଟି ପ୍ରତି ଭୟ ହୁଏତ ଅନ୍ୟାନ୍ୟ କଳା ବସ୍ତୁ ପ୍ରତି ଗତି କରିବ । କଳା କାନ୍ଥ, କଳା ଚାଦର ଇତ୍ୟାଦି ବସ୍ତୁ ପ୍ରତି ଶିଶୁ ଭୟ ପ୍ରଦର୍ଶନ କରିବ ।

ତୃତୀୟତଃ, ଶିଶୁ କେତେକ ଆବେଗ ଅନ୍ୟମାନଙ୍କୁ ଦେଖି ଅନୁକରଣ କରେ । ଶିଶୁର ଅନୁକରଣପ୍ରିୟତା ସମ୍ପର୍କରେ ସମସ୍ତେ ଅବିହିତ । ବିଶେଷତଃ ଶିଶୁ ଯେଉଁମାନଙ୍କୁ ଭଲପାଏ ସେମାନଙ୍କୁ ନିଜର ଆଦର୍ଶ ବା ନମୁନା (Models) ରୂପେ ଗ୍ରହଣ କରି ସେମାନଙ୍କଠାରୁ ଆବେଗ ଶିକ୍ଷାକରେ । ଏ କ୍ଷେତ୍ରରେ ଆମେ ଶିଶୁ ଆବେଗର ପରିବର୍ତ୍ତନ ଚାହୁଁଥିଲେ ଆମକୁ ତା'ର ପରିବେଶରେ ଅନୁରୂପ ନମୁନା ସୃଷ୍ଟି କରିବାକୁ ହେବ । ଶିଶୁର ପିତାମାତା ବଦ୍‌ରାଗୀ ହୋଇଥିଲେ ଶିଶୁ ରାଗୀ ହେବାର ଯଥେଷ୍ଟ ସମ୍ଭାବନା ଅଛି । ଶିଶୁର ପରିବର୍ତ୍ତନ କାମନା କଲେ ଶିଶୁର ପିତାମାତା ରାଗ ବର୍ଜନ କରିବା ସଙ୍ଗେ ସଙ୍ଗେ ତା'ର ପରିବେଶରେ ରହିଥିବା ଅନ୍ୟାନ୍ୟ ବ୍ୟକ୍ତି (ଯଥା—ଭାଇଭଉଣୀ ବା ଆତ୍ମୀୟସ୍ୱଜନ) ଶାନ୍ତ ଓ ସଂଯତ ହେବାର ଆବଶ୍ୟକତା ରହିଛି । ଶିଶୁ ଯାହା ସହିତ ଆତ୍ମୀୟତା ପ୍ରକଟ କରିବ, ତା'ର ଉପଯୋଗୀ ଆବେଗ ଗ୍ରହଣ କରି ନିଜକୁ ପରିବର୍ତ୍ତନ କରିବ ।

ଚତୁର୍ଥରେ ସିଧାସଳଖ ଭାବରେ ଶିଶୁକୁ କେତେକ ଆବେଗ ଶିକ୍ଷା ଦିଆଯାଇପାରେ । ଘରକୁ ଅତିଥି ଆସିଲେ ତାଙ୍କପ୍ରତି କିପରି ହସ ହସ ଭାବ ପ୍ରକାଶ କରାଯାଇପାରିବ, ସେ ଦିଗରେ ପିତାମାତା ଶିଶୁକୁ ତାଲିମ ଦେଇ ପାରନ୍ତି । ସେମାନେ ନିଜେ ଅଭିନୟ (Role Playing) କରି ଶିଶୁକୁ ଦେଖାଇ ଦେଇ ପାରନ୍ତି । ଶିକ୍ଷକ ଶିକ୍ଷୟିତ୍ରୀମାନେ ବହୁ ସମୟରେ ପ୍ରତ୍ୟକ୍ଷ ତାଲିମ ମାଧ୍ୟମରେ ଶିଶୁର ଆବେଗ ପ୍ରକାଶ ସମ୍ପର୍କରେ ଶିକ୍ଷା ଦିଅନ୍ତି ।

**ଶିଶୁର ଆବେଗର ପରିଚାଳନା :**

ଶିଶୁମାନଙ୍କର ଆବେଗିକ ପରିପ୍ରକାଶର ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ଦିଗଟି ହେଉଛି ଆବେଗର ଯଥୋଚିତ ପରିଚାଳନା । ଭୁଲ ଆବେଗର ପରିପ୍ରକାଶକୁ ଉତ୍ସାହିତ କରିବାକୁ ହୁଏ । ନିଜର ଆନନ୍ଦାନୁଭୂତି ପ୍ରକାଶ କରିବା ଏକ ଉପଯୋଗୀ ଅଭିବ୍ୟକ୍ତି । କେତେକ ଅନୁପଯୋଗୀ ଆବେଗର ମଧ୍ୟ କିଛି ଉପଯୋଗୀ ପରିପ୍ରକାଶ ରହିଛି । ଉଦାହରଣସ୍ୱରୂପ କୁହାଯାଇପାରେ ଯେ, ଭୟ କରିବା ସାଧାରଣ ଦୃଷ୍ଟିରେ ଏକ ଅବାଞ୍ଛିତ ଆବେଗ; କିନ୍ତୁ ଶିଶୁଟି ନିଜର ଶକ୍ତି

ସାମର୍ଥ୍ୟର କଳନା ନକରି ସମୁଦ୍ର ଆଡ଼କୁ ପଶି ଯାଉଥିବାବେଳେ ଶିଶୁକୁ ପିତାମାତା ବାଧା ଦେଇଥାନ୍ତି । ତା' ମନରେ ଭୟ ଜନ୍ମାଇ ଥାଆନ୍ତି । ଏପରି ସ୍ଥଳେ ଭୟର ଅଳ୍ପ ଆବଶ୍ୟକତା ରହିଛି । ସୁତରାଂ ସ୍ଥଳ ବିଶେଷରେ କେତୋଟି ଅନୁପଯୋଗୀ ଆବେଗର ଉପଯୋଗୀ ଦିଗପ୍ରତି ଦୃଷ୍ଟି ଦେବାକୁ ପଡ଼େ । ଅନ୍ୟତ୍ର ଖୁବ୍ ଅନୁପଯୋଗୀ ଆବେଗର ନିୟନ୍ତ୍ରଣ ପାଇଁ ଉଦ୍ୟମ କରାଯାଏ ।

ଶିଶୁ ଆବେଗର ଭାରସାମ୍ୟ ଓ ନିୟନ୍ତ୍ରଣ କଥା ଚିନ୍ତା କଲାବେଳେ ବୈଜ୍ଞାନିକ ପରିଭାଷା ଓ ଲୋକ ଧାରଣା ମଧ୍ୟରେ କିଛି ବ୍ୟବଧାନ ଅଛି । ସାଧାରଣ ଲୋକେ ଶିଶୁର ଆବେଗର ନିୟନ୍ତ୍ରଣ କହିଲେ ଆବେଗ ସବୁର ଅବଦମନ (Suppression) ବୁଝନ୍ତି । ମାତ୍ର ମନୋବୈଜ୍ଞାନିକ ଦୃଷ୍ଟିକୋଣରୁ ଶିଶୁ ଆବେଗର ନିୟନ୍ତ୍ରଣ କହିଲେ ବୁଝାଯାଏ ଶିଶୁ କିପରି ଭାବରେ ଅନୁପଯୋଗୀ ଆବେଗର ପରିପ୍ରକାଶ ଘଟାଉଛି । ଅନେକ ସମୟରେ ଆବେଗ ସବୁର ପରିପ୍ରକାଶ ନ ଘଟି ଚାପିହୋଇ ରହିଯାଇ ଶିଶୁର କ୍ଷତି ଘଟାଇପାରେ, ସୁତରାଂ ଆବେଗର ରୂପାନ୍ତରୀକରଣ ଏବଂ ଗ୍ରହଣୀୟ ପରିପ୍ରକାଶ ବାଞ୍ଛନୀୟ .. ବୋଲି ବିଚାର କରାଯାଏ ।

ଶିଶୁକୁ ଆବେଗର ନିୟନ୍ତ୍ରଣ ଶିକ୍ଷା ଦେଲାବେଳେ ଦେଖିବାକୁ ହେବ ଯେ, ଖରାପ ଓ ବର୍ଜନୀୟ ଆବେଗର ଦୁଇ ପ୍ରକାର ରୂପାନ୍ତର ହୋଇପାରେ । ଶାରୀରିକ ରୂପାନ୍ତର ଓ ମାନସିକ ରୂପାନ୍ତର ।

ଶାରୀରିକ ରୂପାନ୍ତର ମାଧ୍ୟମରେ ଶିଶୁ ନିଜେ କେତେକ ଅବାଞ୍ଛନୀୟ ଆବେଗକୁ ଗ୍ରହଣୀୟ ରୂପରେ ପ୍ରକାଶ କରିଥାଏ । ନିଜର ରାଗ ବା କ୍ରୋଧକୁ ଅସାମାଜିକ ରୂପରେ ପ୍ରକାଶ ନକରି ଦ୍ରୁତ ଗତିରେ କାର୍ଯ୍ୟ କରିବା ମାଧ୍ୟମରେ ପ୍ରକାଶ କରିପାରେ । ଶିକ୍ଷକ ଓ ପିତାମାତା ମଧ୍ୟ ଶିଶୁର ଈର୍ଷାଭାବକୁ ପ୍ରତିଯୋଗିତା ମାଧ୍ୟମରେ, ଭୟକୁ କର୍ମତତ୍ପରତା ମାଧ୍ୟମରେ ଓ ଦୁଶ୍ଚିନ୍ତାକୁ ପ୍ରସ୍ତୁତି ମାଧ୍ୟମରେ ପ୍ରକାଶ କରିବା ପରିବେଶ ସୃଷ୍ଟି କରି ପାରନ୍ତି । ବିଭିନ୍ନ ପ୍ରକାର ଖେଳ, ପରିଶ୍ରମ ଓ ଅଭିନୟ ମାଧ୍ୟମରେ ଶିଶୁର ବହୁ ଆବେଗ ପରିପ୍ରକାଶ ହୋଇ ଜୀବନକୁ ସ୍ୱଚ୍ଛନ୍ଦ କରେ ।

ଶାରୀରିକ ରୂପାନ୍ତରୀକରଣ ବ୍ୟତୀତ ମାନସିକ ପଦ୍ଧତି ମଧ୍ୟ ଆବେଗର ନିୟନ୍ତ୍ରଣରେ ସାହାଯ୍ୟ କରେ । ମନର ଦୁଃଖ ହାଲୁକା କରିବା ପାଇଁ ଅନ୍ୟ ପାଖରେ କିଛି ଗପ କହିବା କିମ୍ବା କିଛି ଲେଖିବା ଏ ପ୍ରକାର ଅନୁଭୂତି । ଶିକ୍ଷକ ଶିକ୍ଷୟିତ୍ରୀ ବା ଅଭିଭାବକ ଶିଶୁର ଆବେଗ ଉଚ୍ଛ୍ୱାସ ଅନୁମାନ କରି ଯାହାର ଅପ୍ରୀତିକର ପରିପ୍ରକାଶ ଘଟିବା ପୂର୍ବରୁ ଅନ୍ୟଦିଗରେ ତା'ର ମନକୁ ଟାଣିନେଇ

ପାରନ୍ତି । କେଉଁ ପ୍ରକାର ମାନସିକ କାର୍ଯ୍ୟ ସେ ସମୟର ଅବାଞ୍ଛିତ ଆବେଗକୁ ନିଷ୍କ୍ରିୟ କରି ଶିଶୁର ଆଚାର ବ୍ୟବହାରକୁ ସାମାଜିକ ରୂପ ଦେଇପାରିବ, ତାହା ତୁରନ୍ତ ନିଷ୍ପତ୍ତି କରି ସେଇ ଅନୁସାରେ ପଦକ୍ଷେପ ନେଇ ପାରନ୍ତି ।

ଶିଶୁ ନିଜର ଆବେଗକୁ ଅସାମାଜିକ ଭାବରେ ପ୍ରକାଶ ନକରି ସମାଜସମ୍ମତ ରୂପରେ ପ୍ରକାଶ କରୁ ବୋଲି ବୟସ୍କମାନେ ଯେପରି ଉଦ୍ୟମ କରିବାର କଥା, ସେହିପରି ସମ୍ପୃକ୍ତ ପରିବେଶକୁ ମଧ ପରିବର୍ତ୍ତନ କରିବା ପାଇଁ ଚେଷ୍ଟା କରିବା ଆବଶ୍ୟକ । ସେମାନେ ଏପରି ଏକ ପରିବେଶର ସୃଷ୍ଟି ପାଇଁ ଉଦ୍ୟମ କରିବା ପ୍ରୟୋଜନ ଯେଉଁଠାରେ ଶିଶୁ ଅଧିକରୁ ଅଧିକ ପ୍ରୀତିପ୍ରଦ ଅନୁଭୂତି ପାଇବା ସମ୍ଭାବନା ଅଧିକ ହେବ । ଏପରି ପରିବେଶ ସୃଷ୍ଟି ସହିତ ଶିଶୁକୁ ଅସ୍ୱସ୍ତିକର ଘଟଣାକୁ ସହ୍ୟ କରିବାର ତାଲିମ ଦେଲେ ଫଳାଫଳ ଅଧିକ ଉପଯୋଗୀ ଓ ହିତକର ହେବ ।

> ସବୁ ଦେଶର ଶିଶୁମାନେ ବିସ୍ମୟ, ଦୁଃଖ, ଆନନ୍ଦ, ବିରକ୍ତି, ଭୟ, କ୍ରୋଧ–ଏହି ଛ'ଟି ଭାବାବେଗ ଅତି ସହଜରେ ଚିହ୍ନିପାରନ୍ତି ।



# ଭାବବୁଦ୍ଧି
# ଶିଶୁ ବିକାଶର ଏକ ଅବହେଳିତ ଅଧ୍ୟାୟ

ଶିଶୁ ବିକାଶର ସମସ୍ୟା ସବୁକୁ ବୁଝିବା ଏବଂ ଶିଶୁ ବିକାଶକୁ ତ୍ୱରାନ୍ୱିତ କରିବାରେ ଦୀର୍ଘଦିନ ଧରି ବୁଦ୍ଧିମତ୍ତା (Intelligence)କୁ ଏକ ସର୍ବ ମହୌଷଧି ସ୍ୱୀକୃତି ଦିଆଯାଇଛି । ଅନେକ ହୁଏତ ଭୁଲି ଯାଇଛନ୍ତି ଯେ ଏକ ନିର୍ଦ୍ଦିଷ୍ଟ ପରିପ୍ରେକ୍ଷୀରେ ବୁଦ୍ଧିମତ୍ତା ଏବଂ ତାହାର ପରିମାଣାତ୍ମକ ପରିପ୍ରକାଶ ବୁଦ୍ଧିଅଙ୍କ (Intelligence Quotient)ର ପରିକଳ୍ପନା କରାଯାଇଥିଲା । ଉନବିଂଶ ଶତକର ମଧ୍ୟଭାଗରେ ପ୍ୟାରିସ୍‌ରେ ସ୍କୁଲ ଶିକ୍ଷକମାନେ ଅନୁଭବ କଲେ ଯେ, ଶ୍ରେଣୀଗୃହର ସମସ୍ତ ଛାତ୍ର ସମାନ ପରିମାଣରେ ଶିକ୍ଷାଦାନ ଦ୍ୱାରା ଉପକୃତ ହେଉ ନାହାଁନ୍ତି । ସୁତରାଂ ସେମାନେ ଛାତ୍ର ଛାତ୍ରୀମାନଙ୍କୁ ଦୁଇ ତିନୋଟି ଦଳରେ ବିଭକ୍ତ କରିବାର ଉପାୟ ଖୋଜିଲେ । ସେମାନଙ୍କର ଯୁକ୍ତି ଥିଲା ଯେ ଶିକ୍ଷକ ପଛୁଆ ଛାତ୍ର ଛାତ୍ରୀମାନଙ୍କୁ ଗୋଟିଏ ଶୈଳୀରେ ପଢ଼ାଇବା ସ୍ଥଳେ ସାଧାରଣ ଛାତ୍ର ଛାତ୍ରୀମାନଙ୍କୁ ଭିନ୍ନ ପ୍ରଣାଳୀରେ ପଢ଼ାଇବେ । ପୁଣି ମେଧାବୀ ଛାତ୍ର ଛାତ୍ରୀମାନଙ୍କ ପାଇଁ ଅନ୍ୟ ଏକ ଉପଯୋଗୀ ପନ୍ଥାର ପ୍ରୟୋଗ କରାଯିବ । ଏପରି ପ୍ରକ୍ରିୟାରେ ବିଭିନ୍ନ ଧରଣର ଛାତ୍ରଛାତ୍ରୀ ବିଶେଷ ଉପକାର ପାଇବେ ।

ଛାତ୍ର ଛାତ୍ରୀମାନଙ୍କୁ ଏପରି ଦଳ ସବୁରେ ବିଭକ୍ତ କରିବା ପାଇଁ ସେମାନେ ମନୋବିଜ୍ଞାନୀମାନଙ୍କର ସାହାଯ୍ୟ ନେଲେ । ମନୋବିଜ୍ଞାନୀମାନେ ମଧ୍ୟ ଏକ ଅଭିନବ ଉପାୟରେ ଏ ସମସ୍ୟାର ସମାଧାନ କଲେ । ଏହା ଏକ ସାଧାରଣ କଥା ଯେ ଜନ୍ମ ପରେ ପରେ ଶିଶୁ କେତେକ ସାମର୍ଥ୍ୟ ଶିକ୍ଷା କରେ ଏବଂ ଧୀରେ ଧୀରେ ସାମର୍ଥ୍ୟର ସଂଖ୍ୟା ଓ ପରିମାଣ ବୃଦ୍ଧି ପାଏ । ଶୈଶବକାଳ ଅତିକ୍ରମ କରି ବାଲ୍ୟକାଳରେ ପାଦ ଦେଲାବେଳେ ବେଶୀ ସାମର୍ଥ୍ୟ ସଂଯୋଜିତ ହୁଏ ଏବଂ କୈଶୋର କାଳରେ ପୂର୍ବର ସାମର୍ଥ୍ୟ ସବୁର ପରିବର୍ଦ୍ଧନ ଘଟେ । ପ୍ରଥମେ ମନୋବିଜ୍ଞାନୀମାନେ ସେମାନଙ୍କର ସମାଜରେ (ଏ କ୍ଷେତ୍ରରେ ଫ୍ରାନ୍ସ) ଅଧିକାଂଶ ଶିଶୁ, ବାଳକ, ବାଳିକା ଏବଂ ଯୁବକ, ଯୁବତୀ ଦର୍ଶାଉଥିବା ସାମର୍ଥ୍ୟର ଏକ ତାଲିକା କଲେ । ଏକ ବର୍ଷର ଶିଶୁ କେଉଁ କେଉଁ ସାମର୍ଥ୍ୟର ଅଧିକାରୀ, ଦୁଇବର୍ଷର ଶିଶୁ କେଉଁ ସାମର୍ଥ୍ୟ ଦର୍ଶାଏ—ଏହିପରି ପ୍ରାଥମିକ ତାଲିକା ପ୍ରସ୍ତୁତ କରାଗଲା ।

ଗୋଟିଏ ନିର୍ଦ୍ଦିଷ୍ଟ ଶିଶୁର ବୁଦ୍ଧିମତ୍ତା ଜାଣିବା ପାଇଁ ସେମାନେ ଏକ ମାନଦଣ୍ଡ ପ୍ରୟୋଗ କଲେ । ଗୋଟିଏ ଶିଶ ବା ବାଳକ ବାଳିକାର ମାନସିକ ବୟସ (Men-

tal Age) ନିର୍ଦ୍ଧାରଣ କଲେ । ମନେ କରାଯାଉ ଗୋଟିଏ ପିଲାର ଜନ୍ମଗତ ବୟସ ୧୦ ବର୍ଷ । ମାନସିକ ବିକାଶ ଦୃଷ୍ଟିରୁ ପିଲାଟି ପୂରାପୂରି ସାଧାରଣ (Average) ହୋଇପାରେ । ଏହାର ଅର୍ଥ ହେଉଛି ଯେ ପିଲାଟି ବସବାସ କରୁଥିବା ସମାଜର ଅଧିକାଂଶ ୧୦ ବର୍ଷର ପିଲାମାନେ ଯେଉଁସବୁ ସମାର୍ଥ୍ୟ ଦର୍ଶାନ୍ତି ଏହି ପିଲାଟି ମଧ୍ୟ ସେହିସବୁ ସାମର୍ଥ୍ୟ ଦେଖାଉଛି । ଦ୍ୱିତୀୟ ସମ୍ଭାବନା ହେଉଛି ଯେ ପିଲାଟିର ଜନ୍ମଗତ ବୟସ (Chronological age) ୧୦ ବର୍ଷ ହେଲେ ମଧ୍ୟ ସେ କେବଳ ସେହି ସମାଜର ୮ ବର୍ଷର ପିଲାମାନେ ଦର୍ଶାଉଥିବା ସାମର୍ଥ୍ୟର ଅଧିକାରୀ । ଏହି କ୍ଷେତ୍ରରେ ପିଲାଟିର ଜନ୍ମଗତ ବୟସ ୧୦ ହେଲେ ମଧ୍ୟ ମାନସିକ ବୟସ ୮ ବୋଲି ବିଚାର କରାଯିବ । ସେହିପରି ପିଲାଟିର ଜନ୍ମଗତ ବୟସ ୧୦ ହେଲେ ମଧ୍ୟ ପିଲାଟି ସେହି ସମାଜର ୧୨ ବର୍ଷ ପିଲାମାନଙ୍କର ସାମର୍ଥ୍ୟ ଦର୍ଶାଇପାରେ । ଏ କ୍ଷେତ୍ରରେ ପିଲାଟିର ମାନସିକ ବୟସ ୧୨ ବିଚାର କରାଯିବ । ସମସ୍ତଙ୍କ ପାଇଁ ଏହାକୁ ଏକ ସୂତ୍ର ରୂପେ ପ୍ରକାଶ କଲେ ବୁଦ୍ଧିଅଙ୍କ (Intelligence Quotient) ନିମ୍ନମତେ ସୂଚିତ ହେବ ।

ବୁଦ୍ଧିଅଙ୍କ (Intelligence Quotient) ବା (I.Q.) =

$$\frac{\text{ମାନସିକ ବୟସ}}{\text{ଜନ୍ମଗତ ବୟସ}} \times ୧୦୦$$

ଏହି ସୂତ୍ରଟି ପ୍ରୟୋଗ କଲେ ଉପର ଉଦାହରଣରେ ବର୍ଣ୍ଣନା କରାଯାଇଥିବା ୧୦ ବର୍ଷ ପିଲାର ମାନସିକ ବୟସ ୧୦ ହେଲେ ବୁଦ୍ଧିଅଙ୍କ ୧୦୦ ହେବ । ସେହି ପିଲାର ମାନସିକ ବୟସ ୮ ବର୍ଷ ହେଲେ ବୁଦ୍ଧିଅଙ୍କ ୮୦ ହେବ ଏବଂ ମାନସିକ ବୟସ ୧୨ ହେଲେ ବୁଦ୍ଧିଅଙ୍କ ୧୨୦ ହେବ । କହିବା ଅନାବଶ୍ୟକ ଯେ ବୁଦ୍ଧିଅଙ୍କ ୧୦୦ରୁ ଯେତେ କମିବ ସେହି ଅନୁପାତରେ ପିଲା ବା ବ୍ୟକ୍ତିଟି ପଛୁଆ ବୋଲି ବିଚାର କରାଯିବ । ଅନ୍ୟ ପକ୍ଷରେ ୧୦୦ରୁ ଯେତେ ବେଶି ରହିବ ବୁଦ୍ଧିମତ୍ତା ସେତିକି ଅଗ୍ରସରତାର ସୂଚନା ଦେବ । ବୁଦ୍ଧିଅଙ୍କ ୨୦ ଥିବା ପିଲାଟିକୁ ନିର୍ବୋଧ (Idiot) କୁହାଯାଏ । କାରଣ ଏପରି ପିଲା ଅଗ୍ନିର ଦାହିକା ଶକ୍ତି ଏବଂ ଜଳର ନିମ୍ନଗାମୀ ଧର୍ମ ମଧ୍ୟ ଜାଣି ନଥାଏ । ଅନ୍ୟ ପକ୍ଷରେ ବୁଦ୍ଧିଅଙ୍କ ୧୨୦ ଦର୍ଶାଉଥିବା ବ୍ୟକ୍ତିମାନେ ଉଚ୍ଚ ସ୍ତରର ବୁଦ୍ଧିମତ୍ତାର ଅଧିକାରୀ ରୂପେ ପରିଗଣିତ ହେବା ସ୍ଥଳେ ବୁଦ୍ଧିଅଙ୍କ ୧୪୦ ଦର୍ଶାଉଥିବା ପିଲା ବା ବ୍ୟକ୍ତି ଅନନ୍ୟ ସାଧାରଣ ପ୍ରତିଭାସମ୍ପନ୍ନର ସମ୍ମାନ ପାଏ । ସୁତରାଂ ବୁଦ୍ଧିଅଙ୍କ ବୁଦ୍ଧିମତ୍ତାର ଏକ ସୂଚକ ରୂପେ ବ୍ୟବହୃତ ହୁଏ ।

ଊନବିଂଶ ଶତକର ମଧ୍ୟଭାଗରୁ ଆରମ୍ଭ କରି ଏପର୍ଯ୍ୟନ୍ତ ମନୋବିଜ୍ଞାନୀମାନେ ବୁଦ୍ଧିମତ୍ତା ମାପିବା ପାଇଁ ଅନେକ ମାପକ (Measurement) ଗ୍ରହଣ କରିଛନ୍ତି । କେତେକ ମାପକ ବିଶ୍ୱର ପ୍ରାୟ ସବୁ ଦେଶରେ ବ୍ୟବହାର କରାଯାଉଥିବା ସ୍ଥଳେ ଅନ୍ୟ କେତେକ ମାପକ ଦେଶ କାଳର ଅନ୍ତବର୍ତ୍ତୀ ହୋଇପାରିଲା ଭଳି ଗଠନ କରାଯାଇଛି । ସ୍କୁଲ ଓ କଲେଜରେ ଛାତ୍ର ଛାତ୍ରୀମାନଙ୍କର ମନୋନୟନ ସମୟରେ ବିଭିନ୍ନ ଚାକିରି ପାଇଁ ପ୍ରାର୍ଥୀ ବଛାବଛି ସମୟରେ ଏବଂ କେତେକ ସଂସ୍ଥାରେ କର୍ମଚାରୀମାନଙ୍କୁ ପଦୋନ୍ନତି ଦେବା ସମୟରେ ବୁଦ୍ଧିମାପକର ବ୍ୟବହାର କରାଯାଇଥାଏ । ଉଚ୍ଚବୁଦ୍ଧି ସମ୍ପନ୍ନ ଶିଶୁ, କିଶୋର କିଶୋରୀ ଏବଂ ଯୁବକ ଯୁବତୀମାନେ ଜୀବନର ଯେକୌଣସି କ୍ଷେତ୍ରରେ ସଫଳତା ହାସଲ କରିପାରିବେ, ଏହି ଯୁକ୍ତି ଉପରେ ବୁଦ୍ଧିମାପକର ଗୁରୁତ୍ୱ ପର୍ଯ୍ୟବସିତ ।

୧୦୦ ବର୍ଷରୁ ଅଧିକ କାଳଧରି ବୁଦ୍ଧିଅଙ୍କର ପ୍ରାଧାନ୍ୟ ସ୍ୱୀକୃତି ଲାଭ କରିଥିଲେ ମଧ୍ୟ ବିଂଶ ଶତକର ଦ୍ୱିତୀୟ ଭାଗରେ କେତେକ ସମସ୍ୟା ଦେଖାଦେଲା । ପ୍ରଥମତଃ ସଂସ୍କୃତି ପ୍ରବଣ ସମାଲୋଚକମାନେ ଯୁକ୍ତି କଲେ ଯେ ବୁଦ୍ଧିମାପକର ଅପପ୍ରୟୋଗ ଘଟିଛି । ଉଦାହରଣ ସ୍ୱରୂପ ଭାରତବର୍ଷରେ ଗୋଟିଏ ଆଦିବାସୀ ପିଲା ତା' ନିଜର ସାମାଜିକ-ସାଂସ୍କୃତିକ ପରିବେଶ ମଧ୍ୟରେ ଲାଳିତ ପାଳିତ ଏବଂ ବିକଶିତ ହେଉଛି । ସହରରେ ବସବାସ କରୁଥିବା ଅଣ-ଆଦିବାସୀ ମଧ୍ୟବିତ୍ତ ପରିବାରର ପିଲାମାନଙ୍କୁ କେନ୍ଦ୍ରକରି ଗଠନ କରାଯାଇଥିବା ବୁଦ୍ଧିମାପକରେ ଆଦିବାସୀ ପିଲାର ବୁଦ୍ଧିଅଙ୍କ ନିଶ୍ଚୟ କମ୍ ରହିବ । କିନ୍ତୁ ପ୍ରଶ୍ନ ହେଉଛି; ଆଦିବାସୀ ପିଲାର ବୁଦ୍ଧିମତ୍ତା ପ୍ରକୃତରେ କ'ଣ କମ୍ ? ସେହିପରି ନୌକା ବିହାରରେ ଯାଇ ଚିଲିକାର ମଧ୍ୟଭାଗରେ ଆମେ ସବୁ ଦିଗହରା ହୋଇଥାଉ; ମାତ୍ର ନାଉରୀ ଠିକ୍ ରୂପେ ଦିଗଜାଣି ଆମକୁ କୂଳକୁ ନେଇ ଆସିଥାଏ । ଆମର ସହରୀ ବୁଦ୍ଧିମାପକରେ ନାଉରୀର ବୁଦ୍ଧିଅଙ୍କ କେତେ ହେବ ତାହା ସହଜରେ ଅନୁମେୟ । ଏ ଦୃଷ୍ଟିରୁ ବୁଦ୍ଧିମାପକ ନିର୍ଭୁଲ ବୁଦ୍ଧିଅଙ୍କ ସୂଚାଇବ ନାହିଁ ବୋଲି ସମୀକ୍ଷକମାନେ କହିଥାନ୍ତି ।

ଦ୍ୱିତୀୟତଃ, ଅନ୍ୟ ଗୋଟିଏ ଯୁକ୍ତି ହେଲା ଯେ ବୁଦ୍ଧିମତ୍ତାକୁ ମାତ୍ରାଧିକ ପ୍ରାଧାନ୍ୟ ଦେବା ଫଳରେ କେତେକ କ୍ଷତି ସାଧିତ ହେଉଛି । କମ୍ ବୁଦ୍ଧିଅଙ୍କ ଥିବା ବ୍ୟକ୍ତି ବା ଶିଶୁମାନେ ଅଦରକାରୀ ବୋଲି ଧରି ନିଆଯାଉଛି । ମାତ୍ର ବୁଦ୍ଧିଅଙ୍କ କମ୍ ଥିଲେ ମଧ୍ୟ ଜଣେ ବେଶ୍ ଉପଯୋଗୀ କାର୍ଯ୍ୟ କରିପାରିବ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ ନର୍ସରୀ ସ୍କୁଲରେ ପିଲାମାନଙ୍କ ସହିତ ହସିଖେଳି ଏବଂ ସୁନ୍ଦର ଗୀତସବୁ ମନେରଖି ଗାଇବାର କଳା କୌଶଳ ପାଇଁ ଅଧିକ ବୁଦ୍ଧିଅଙ୍କର ପ୍ରୟୋଜନ ନାହିଁ ।

ବିଶେଷକରି ସୃଜନାତ୍ମକ କାର୍ଯ୍ୟ ପାଇଁ ଅତିବେଶି ବୁଦ୍ଧିଅଙ୍କର ଆବଶ୍ୟକତା ନାହିଁ । ଏହାକୁ ପ୍ରମାଣ କରିବା ପାଇଁ ଜଣେ ବିଶେଷଜ୍ଞ ତାଙ୍କର ସମସାମୟିକ ପ୍ରଖ୍ୟାତ ବୈଜ୍ଞାନିକମାନଙ୍କର ବୁଦ୍ଧିମତ୍ତା ମାପି ସେମାନଙ୍କର ବୁଦ୍ଧିଅଙ୍କ ନିର୍ଦ୍ଧାରଣ କଲେ । ପୁନଶ୍ଚ ସେମାନଙ୍କର ବୈଜ୍ଞାନିକ କୃତିତ୍ୱର ଉତ୍କର୍ଷ ଦର୍ଶାଇବା ପାଇଁ ଏକ ସୂଚାଙ୍କ ବାହାର କଲେ । ବୁଦ୍ଧିଅଙ୍କ ଓ କୃତିତ୍ୱ ମଧ୍ୟରେ ସମ୍ବନ୍ଧ (Correlation) ମାପ କରାଗଲା । ଦେଖାଗଲା ଯେ, ଏପରି ସମ୍ବନ୍ଧ ଥିଲେ ମଧ୍ୟ ତାହା ଉଚ୍ଚମାତ୍ରାର ନୁହେଁ । ଅନ୍ୟଭାଷାରେ କହିଲେ ବୁଝାଯିବ ଯେ ମଧ୍ୟମ ଧରଣର ବୁଦ୍ଧିମତ୍ତାର ବ୍ୟକ୍ତିମାନେ ମଧ୍ୟ ସୃଜନଶୀଳ ହୋଇପାରିବେ । ସୃଜନଶୀଳ ହେବା ପାଇଁ ଖୁବ୍ ବେଶି ବୁଦ୍ଧିମତ୍ତାର ଆବଶ୍ୟକତା ନାହିଁ ବରଂ ଅନେକ ସମୟରେ ଖୁବ୍ ବେଶି ବୁଦ୍ଧିଥିବା ବ୍ୟକ୍ତିମାନେ ଅଯଥା ସମାଲୋଚନା ପ୍ରିୟ ହୋଇ ଉଠନ୍ତି । କୌଣସି ବିଷୟରେ ସହନଶୀଳତାର ମନୋବୃତ୍ତି ନେଇ ସୃଜନାତ୍ମକ କାର୍ଯ୍ୟକ୍ରମ ଆରମ୍ଭ କରିବା ପରିବର୍ତ୍ତେ ସେମାନେ ଅଧିକରୁ ଅଧିକ ଛିଦ୍ର ବାହର କରି କଟୁ ସାମଲୋଚନା କରିଥାନ୍ତି । ଏପରି ଦୃଷ୍ଟିଭଙ୍ଗୀ ସୃଜନଶୀଳତାର ଅନ୍ତରାୟ ହୁଏ । ସୁତରାଂ ବୁଦ୍ଧିମତ୍ତା ଓ ସୃଜନଶୀଳତା ମଧ୍ୟରେ ଥିବା ଅନୁଚ୍ଚ (Moderate) ସମ୍ପର୍କ ଗ୍ରହଣୀୟ । ଗତାନୁଗତିକ ପଦ୍ଧତିରେ ବୁଦ୍ଧିମତ୍ତାର ପରିମାପ ଏବଂ କେବଳ ଯୁକ୍ତିଶୀଳତା (Rationality) ଉପରେ ପର୍ଯ୍ୟବେସିତ ବୁଦ୍ଧିଅଙ୍କକୁ ସମାଲୋଚନା କରି ୧୯୮୦ ମସିହା ବେଳକୁ ଆଉ ଏକ ଭାବନା ପ୍ରସାରିତ ହେଲା । ବୁଦ୍ଧିମତ୍ତାର ବହୁରୂପୀ ପରିପ୍ରକାଶକୁ ସ୍ୱୀକୃତି ଦିଆଗଲା । ଗାର୍ଡ୍‌ନର ନାମକ ମନୋବିଜ୍ଞାନୀ ମତ ଦେଲେ ସେ ବୁଦ୍ଧିମତ୍ତା ଏକାଧିକ ମାଧ୍ୟମରେ ପ୍ରକାଶ ଲାଭ କରିଥାଏ ଓ ସେ ୬ଟି ମୁଖ୍ୟ ବୁଦ୍ଧିମତ୍ତାର ତାଲିକା ଦେଲେ ।

ପ୍ରଥମଟି ହେଉଛି, ଭାଷାଗତ ବୁଦ୍ଧିମତ୍ତା । ଶବ୍ଦାବଳୀର ପରିସର, ଶବ୍ଦ ସଂଯୋଜନା, ଭାବ ପ୍ରକାଶ, ଭାବ ବିସ୍ତୃତି ଏବଂ ରୂପକଳ୍ପ ସବୁ ବୁଝିବାର ସାମର୍ଥ୍ୟ ଏହି ବୁଦ୍ଧିମତ୍ତା ମଧ୍ୟରେ ପ୍ରତିଫଳିତ ହୋଇଥାଏ । ଦ୍ୱିତୀୟ ପ୍ରକାର ବୁଦ୍ଧିମତ୍ତା ହେଉଛି ସଙ୍ଗୀତଧର୍ମୀ । ଛନ୍ଦ, ଯତିପାତ, କଣ୍ଠ ସଙ୍ଗୀତରେ ଦକ୍ଷତା ଇତ୍ୟାଦି ହାସଲ କରିଥିବା ବ୍ୟକ୍ତି ଏପରି ବୁଦ୍ଧିମତ୍ତାର ପରିଚୟ ଦିଏ । ଯୁକ୍ତିଯୁକ୍ତ ବିଚାର ଦକ୍ଷତା ତୃତୀୟ ଧରଣର ବୁଦ୍ଧିମତ୍ତା । ଗତାନୁଗତିକ ବୁଦ୍ଧିଅଙ୍କରେ ଏହି ପ୍ରକାର ବୁଦ୍ଧିମତ୍ତା ମୁଖ୍ୟତଃ ପ୍ରତିବିମ୍ବିତ ହୋଇଥାଏ । ଚତୁର୍ଥ ଧରଣର ବୁଦ୍ଧିମତ୍ତାଟି ସ୍ଥାନ ଓ ଅବସ୍ଥିତି ସମ୍ପର୍କୀୟ ବୁଦ୍ଧିମତ୍ତା । କେଉଁ ସ୍ଥାନରେ କେଉଁ ବସ୍ତୁ ଅବସ୍ଥିତ ତାହା ଏପରି ଲୋକମାନେ ସହଜରେ ଧାରଣା କରିପାରନ୍ତି । ଏପରି ବୁଦ୍ଧିମତ୍ତା ଅଧିକ ଥିବା ବ୍ୟକ୍ତିମାନେ କୌଣସି ଲୋକର ଘର ଥରେ ଜାଣିଲା ପରେ ପରବର୍ତ୍ତୀ ସମୟରେ ସଠିକ ଭାବରେ ସେଠାରେ ଯାଇ ପହଞ୍ଚି ପାରନ୍ତି । ବାଟଘାଟ ଭୁଲିଯିବାର

ଅସୁବିଧା ଏମାନଙ୍କର କମ୍ ହୁଏ ଓ ଶରୀର ଚାଳନାରେ ଦକ୍ଷତା ଦର୍ଶାଇବା ପଞ୍ଚମ ପ୍ରକାରର ବୁଦ୍ଧିମତ୍ତା । ଅନ୍ୟତମ ବୁଦ୍ଧିମତ୍ତା ହେଉଛି ସାମାଜିକ ଦକ୍ଷତା । କଥୋପକଥନ, ସାମାଜିକ ସମ୍ପର୍କ ଓ ପ୍ରୀତିପଦ ସାମାଜିକ ବ୍ୟବହାର ଦର୍ଶାଇବାର ସାମର୍ଥ୍ୟ ଏ ଧରଣର ବୁଦ୍ଧିମତ୍ତା । ମୋଟ ଉପରେ ବୁଦ୍ଧିମତ୍ତା ବିଭିନ୍ନ ରୂପରେ ପ୍ରକାଶିତ ହୁଏ । କେବଳ ବୁଦ୍ଧି ଅଙ୍କକୁ ବୁଦ୍ଧିମତ୍ତାର ସୂଚକ ରୂପେ ଗ୍ରହଣ କରିବା ଫଳରେ ଗୋଟିଏ ପ୍ରକାର ବୁଦ୍ଧିମତ୍ତାକୁ ପ୍ରାଧାନ୍ୟ ଦିଆଯାଇ ଅନ୍ୟସବୁକୁ ଉପେକ୍ଷା କରାଯାଉଛି ।



(ଭାବବୁଦ୍ଧିର ଏକ ପରିପ୍ରକାଶ)

ବୁଦ୍ଧିମତ୍ତାର ଏହିସବୁ ସମାଲୋଚନାର ଗୁରୁତ୍ୱ ଯାହା ହେଉନା କାହିଁକି ବିଗତ ଶତକର ଶେଷ ଭାଗରେ ଭାବବୁଦ୍ଧି (Emotional Intelligence) ଏବଂ ଭାବଅଙ୍କର (Emotional Quotient)ର ଚର୍ଚ୍ଚା ବୁଦ୍ଧିମତ୍ତାର ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ ରୂପେ ଜ୍ଞାନ ରାଜ୍ୟକୁ ଆସିଛି । ବର୍ତ୍ତମାନ ଚିନ୍ତାଶୀଳ ବ୍ୟକ୍ତି ଓ ଗବେଷକମାନେ ଅନୁଭବ କରୁଛନ୍ତି ଯେ ମନୁଷ୍ୟର ଭାବନା (Thinking) ଯେପରି ଗୁରୁତ୍ୱପୂର୍ଣ୍ଣ ମଣିଷର ଭାବ (Emotion ବା Feelings) ମଧ୍ୟ ସେତିକି ମହତ୍ତ୍ୱପୂର୍ଣ୍ଣ । ବିବର୍ତ୍ତନ ଧାରାରେ ମସ୍ତିଷ୍କ ଗୋଟିଏ ହେଲେ ମଧ୍ୟ ଏହା ମଧ୍ୟରେ ଭାବନା ମସ୍ତିଷ୍କ (Thinking Brain) ଓ ଭାବ ମସ୍ତିଷ୍କ (Felling Brain) ପରି ଦୁଇଟି ମନ ସକ୍ରିୟ ରହିଛି ।

ଅବଶ୍ୟ ଆଧୁନିକ ଜଗତରେ ଭାବନା ମସ୍ତିଷ୍କଟି ଅପେକ୍ଷାକୃତ ଅଧିକ ପରିମାଣରେ ବ୍ୟବହାର କରାଯାଉଛି । କିନ୍ତୁ ଏହା ସତ୍ୟ ଯେ ବ୍ୟକ୍ତିଗତ ଓ

ଗୋଷ୍ଠୀଗତ ଜୀବନର ସୌନ୍ଦର୍ଯ୍ୟ ଆଣିବାକୁ ହେଲେ ଭାବନାର ବିକାଶପରି ଭାବର ମଧ୍ୟ ବିକାଶ ଆବଶ୍ୟକ । ଜୀବନର ପ୍ରାରମ୍ଭିକ ପର୍ଯ୍ୟାୟରୁ ଏହା ଅବହେଳିତ ଅବସ୍ଥାରେ ରହିଛି । ପିତାମାତା ଓ ଶିକ୍ଷକ ଶିକ୍ଷୟିତ୍ରୀ ଶିଶୁ ଓ ଅଳ୍ପ ବୟସର ପିଲାମାନଙ୍କର ଗତାନୁଗତିକ ବୁଦ୍ଧି ପ୍ରତି ମାତ୍ରାଧିକ ଗୁରୁତ୍ୱ ଦେବା ଫଳରେ ଶିଶୁର ଭାବଗତ ବିକାଶ ବ୍ୟାହତ ହେଉଛି ।

ଗତାନୁଗତିକ ଭାବନା-କୈନ୍ଦ୍ରିକ ବୁଦ୍ଧିମତ୍ତାକୁ ପ୍ରକାଶ କରିବା କ୍ଷେତ୍ରରେ ବୁଦ୍ଧିଅଙ୍କ (I.Q) ଶବ୍ଦଟି ପ୍ରୟୋଗ କରିବା ବେଳେ ଭାବଗତ ଉତ୍କର୍ଷ ପାଇଁ ଭାବଅଙ୍କ ଶବ୍ଦଟି ବ୍ୟବହାର କରାଯାଇପାରେ । ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନ ହେଉଛି—କେଉଁ କେଉଁ ଉପାଦାନକୁ ନେଇ ଭାବଅଙ୍କ ପ୍ରକାଶିତ । ମନୋବିଜ୍ଞାନୀମାନେ ଭାବବୁଦ୍ଧି (Emotional Intelligence)ର ପାଞ୍ଚଟି ଉପାଦାନ ନିର୍ଦ୍ଧାରଣ କରିଛନ୍ତି । ପ୍ରଥମ ଉପାଦାନଟି ହେଉଛି ଆତ୍ମସଚେତନତା (Self-awareness) । ଉଚ୍ଚ ଭାବବୁଦ୍ଧି ଥିବା ଶିଶୁ, କିଶୋର କିଶୋରୀ, ଯୁବକ ଯୁବତୀମାନେ ନିଜ ସାମର୍ଥ୍ୟ ବିଷୟରେ ସଚେତନ ଥାଆନ୍ତି । ସେମାନେ ନିଜର ଦୋଷ ଦୁର୍ବଳତା ଜାଣିବା ସଙ୍ଗେ ସଙ୍ଗେ ନିଜର ସାମର୍ଥ୍ୟ ମଧ୍ୟ ଜାଣିଥାନ୍ତି । ଗଭୀର ଆତ୍ମବିଶ୍ୱାସ ଓ ଆତ୍ମପ୍ରତ୍ୟୟ ଏମାନଙ୍କର ଦୃଢ଼ ଥାଏ । ସ୍ଥଳ ବିଶେଷରେ ଏମାନେ ନିଜର ତ୍ରୁଟି ଜାଣି ସଂଶୋଧନ ପାଇଁ ଯତ୍ନଶୀଳ ହୁଅନ୍ତି । ଏମାନଙ୍କର ଆତ୍ମ-ମର୍ଯ୍ୟାଦାବୋଧ ଅଧିକ ।

ଭାବବୁଦ୍ଧିର ଦ୍ୱିତୀୟ ଉପାଦାନଟି ହେଉଛି ଆତ୍ମ ନିୟନ୍ତ୍ରଣ (Self-Regulation) । ନିଜକୁ ନିୟନ୍ତ୍ରଣରେ ରଖିବା, ଶୀଘ୍ର ଶୀଘ୍ର ଚାହିଦା (Needs) ପ୍ରତି ଦୃଷ୍ଟିଦେବା, ସହନଶୀଳତା ଓ ମାନସିକ ଚାପ ଏଡ଼ାଇବାର ଦକ୍ଷତାକୁ ନେଇ ଏହି ଉପାଦାନ ଗଠିତ । ଭାବବୁଦ୍ଧିର ତୃତୀୟ ଉପାଦାନଟି ହେଉଛି ସମାନାନୁଭୂତି (Empathy) । ଅନ୍ୟର ଦୁଃଖ କଷ୍ଟର କାହାଣୀ ଶୁଣିଲାବେଳେ ନିଜକୁ ସେହି ସ୍ତରକୁ ଓହ୍ଲାଇ ଆଣି ଅନୁଭବ କରିବାର ଦକ୍ଷତା ହେଉଛି ସମାନାନୁଭୂତି । ଅନ୍ୟର ସୁଖରେ ସୁଖ ଅନୁଭବ କରିବା ଏବଂ ଦୁଃଖରେ ଦୁଃଖ ଅନୁଭବ କରିବା ହେଉଛି ଏ ଧରଣର ସାମର୍ଥ୍ୟ ।

ଭାବବୁଦ୍ଧିର ଚତୁର୍ଥ ଉପାଦାନଟି ହେଉଛି ଗଭୀର ଅଭିପ୍ରେରଣା । ଉଚ୍ଚ ଲକ୍ଷ୍ୟ ସାଧନ ପାଇଁ ସଂକଳ୍ପ ରହିଥାଏ । ପ୍ରତିବନ୍ଧକ ଦ୍ୱାରା ଦବି ନଯାଇ ଅଗ୍ରସର ହେବାର ମନୋବଳ ଏହାର ଅନ୍ତର୍ଭୁକ୍ତ । ଭାବବୁଦ୍ଧିର ପଞ୍ଚମ ଉପାଦାନଟି ହେଉଛି ସାମାଜିକ ଦକ୍ଷତା । ଅନ୍ୟମାନଙ୍କ ସହିତ ସୁସମ୍ପର୍କ ରକ୍ଷା କରିବାର ଦକ୍ଷତା ହେଉଛି ଏ ଧରଣର ଭାବବୁଦ୍ଧି ।

ସ୍ଥୂଳତଃ ଶିଶୁ ଓ ବୟସ୍କମାନଙ୍କର ଭାବନାଗତ ବିକାଶ ଯଥେଷ୍ଟ ନୁହେଁ। ଭାବନାର ବିକାଶ ସହିତ ଭାବଗତ ବିକାଶ ମଧ୍ୟ ଆବଶ୍ୟକ। ସାମ୍ପ୍ରତିକ ବିଚାରରେ ଭାବ ଦାରିଦ୍ର୍ୟ ସୃଷ୍ଟି ହେବା ଫଳରେ ଅନେକ ସମସ୍ୟା ଉପୁଜୁଛି। ସୁତରାଂ ଭାବଅଙ୍କକୁ ମର୍ଯ୍ୟାଦା ଦେବାର ବେଳ ଆସିଛି। ଅତି ଅଳ୍ପ ବୟସରୁ ଶିଶୁ ଭାବବୁଦ୍ଧିର ଉପାଦାନ ସବୁ ପ୍ରକାଶ କରିଥାଏ। ମାତ୍ର ପିତାମାତା ଓ ଶିକ୍ଷକ ଶିକ୍ଷୟିତ୍ରୀ ଏ ସବୁକୁ ବିଶେଷ ପ୍ରୋତ୍ସାହନ ନଦେବା ଫଳରେ ଏ ଗୁଡ଼ିକର ମାତ୍ରା କମିଯାଏ। କେବଳ ଭାବନା କୈନ୍ଦ୍ରିକ ବୁଦ୍ଧି ବିକଶିତ ହୁଏ। ଜନ ଜୀବନରେ ସମୁଚିତ ବିକାଶ ଆଣିବାକୁ ହେଲେ ଅଳ୍ପ ବୟସରୁ ଭାବବୁଦ୍ଧିର ବିକାଶ ପ୍ରତି ଧ୍ୟାନଶୀଳ ହେବାକୁ ପଡ଼ିବ।

## କେଉଁ ବାଟରେ ଯିବେ ?

ଭାବବୁଦ୍ଧିର ଛ'ଟି ଉପାଦାନ ଚିହ୍ନନ୍ତୁ ଏବଂ ବଢ଼ାନ୍ତୁ ।

୧. ଶିଶୁର ନିଜର ସାମର୍ଥ୍ୟ ଓ ଅସାମର୍ଥ୍ୟ ବିଷୟରେ ଧାରଣା ।
୨. ଶିଶୁର ପ୍ରୀତିପଦ ସାମାଜିକ ବ୍ୟବହାର ।
୩. ଶିଶୁର ଆତ୍ମନିୟନ୍ତ୍ରଣ ।
୪. ମନର ଫୁର୍ତ୍ତି ଏବଂ କାର୍ଯ୍ୟତତ୍ପରତା ।
୫. ସହନଶୀଳତା ।
୬. ହସଖୁସିର ମିଜାଜ ।



# ପିଲାମାନଙ୍କର ରାଗ

ପିଲାହେଉ ବା ବୟସ୍କ ଲୋକ ହୁଅନ୍ତୁ, ପ୍ରାୟ ସମସ୍ତେ ସମୟ ସମୟରେ ରାଗନ୍ତି । କିନ୍ତୁ କେତେକ ପିଲାଙ୍କର ଓ ବୟସ୍କବ୍ୟକ୍ତିଙ୍କର ରାଗ ଅତି ବେଶି ମାତ୍ରାରେ ପ୍ରକାଶ ପାଏ ଏବଂ ବାରମ୍ବାର ଦେଖାଯାଏ । ଏପରି ସ୍ଥଳରେ ନିତିଦିନିଆ ଜୀବନର ଶାନ୍ତି ଭାଙ୍ଗେ ଏବଂ ବିରକ୍ତି ବଢ଼େ । ପିଲାମାନଙ୍କର ରାଗ ବେଶି ବେଶି ପରିମାଣରେ ବହୁ ସମୟରେ ପ୍ରକାଶ ପାଇଲେ ବୟସ୍କମାନଙ୍କର ଧୈର୍ଯ୍ୟ ମଧ୍ୟ କମିଯାଏ । ପିଲାମାନଙ୍କର ରାଗ କମାଇ ସେମାନଙ୍କ ମନରେ ଭଲଗୁଣଗୁଡ଼ିକର ବିକାଶ ଘଟାଇବା ଆମ ସମସ୍ତଙ୍କର ଦାୟିତ୍ୱ । ଏ ଦୃଷ୍ଟିରୁ ପିଲାମାନେ କେଉଁ କେଉଁ ଅବସ୍ଥାରେ ରାଗନ୍ତି ଏବଂ ସେମାନଙ୍କ ରାଗ ନ ବଢ଼ାଇବା ପାଇଁ କ'ଣ କ'ଣ କାଯାଇପାରେ, ସେଗୁଡ଼ିକର ଆଲୋଚନା ଖୁବ୍ ଉପାଦେୟ ।

ପିଲାମାନେ ଯେଉଁ ସବୁ ଅବସ୍ଥାରେ ରାଗ ଦେଖାନ୍ତି ସେଗୁଡ଼ିକ ଦୁଇଶ୍ରେଣୀର ଅବସ୍ଥା । ପ୍ରଥମ ପ୍ରକାରର ଅବସ୍ଥାଟି ରାଗ ସୃଷ୍ଟିକରେ ଏବଂ ଦ୍ୱିତୀୟ ପ୍ରକାରର ଅବସ୍ଥାଟି ରାଗ ବଢ଼ିବାରେ ସାହାଯ୍ୟ କରେ । ଏ ଦୁଇ ପ୍ରକାର ଅବସ୍ଥାକୁ ପୃଥକ୍ ପୃଥକ୍ ଆଲୋଚନା କରାଯାଇପାରେ ।

ରାଗସୃଷ୍ଟି କରୁଥିବା ଅବସ୍ଥା :

ରାଗସୃଷ୍ଟି କରୁଥିବା ଅବସ୍ଥା ମଧ୍ୟରେ ବିଫଳତା ଗୋଟିଏ ଅବସ୍ଥା । ପିଲାଟି କୌଣସି ଗୋଟିଏ କାମ କରୁ କରୁ ହଠାତ୍ ଯଦି ବିଫଳ ହୁଏ, ତେବେ ସେ ହୁଏତ ରାଗି ଉଠେ । ଜୋତାରେ ଫିତା ପୁରାଇବାକୁ ଚେଷ୍ଟା କରୁ କରୁ ଜୋତାରେ ଫିତା ପୁରାଇ ନ ପାରିଲେ, ସେ ହୁଏତ ରାଗିଯାଇ ଯୋତା ଫୋପାଡ଼ି ଦିଏ । ରାଗର ମାତ୍ରା ବେଶି ହୋଇଥିଲେ ଅନ୍ୟ ଉପରେ ରାଗ ଦେଖାଇଥାଏ । ବହୁସ୍ଥଳରେ ବିଫଳତାରୁ ରାଗ ଜନ୍ମ ନିଏ । ଏହାର ଅର୍ଥ ନୁହେଁ ଯେ ପିଲାଟିକୁ କୌଣସି ପ୍ରକାରର ବିଫଳତାର ଅଭିଜ୍ଞତା ଦିଆଯିବା ଉଚିତ ନୁହେଁ । ବରଂ ସମୟ ସମୟରେ ବିଫଳତାର ଅନୁଭୂତି ମନକୁ ଦୃଢ଼ କରେ ଏବଂ ଭବିଷ୍ୟତ ଜୀବନରେ ସଂସାରର ବ୍ୟର୍ଥତାମଧ୍ୟରେ ଜୀବନଯାପନ କରିବା ସହଜ ହୁଏ । ସେଥିପାଇଁ ଅନେକ ଅଭିଜ୍ଞ ଶିକ୍ଷକ ଓ ପିତାମାତା ପିଲାମାନଙ୍କୁ ବିଭିନ୍ନ କାମ ଦେଲାବେଳେ ଲକ୍ଷ୍ୟ ରଖନ୍ତି ଯେପରି ପିଲାଟି ଅଧିକାଂଶ କାମ କରି ପାରିବ ଏବଂ ଅଳ୍ପ କେତେକ ସ୍ଥଳରେ ବିଫଳ ହେବ । ପିଲାଟି ସଦାସର୍ବଦା ବିଫଳ ହେଲେ ତାହାର ମନର ବିକାଶ ବାଧାପାଏ । ସୁତରାଂ ପିଲାମାନଙ୍କୁ ସ୍ଥଳ ବିଶେଷରେ ବିଫଳତାର

ସୁଯୋଗ ଦେବା ଏବଂ ବିଫଳତାର କାରଣ ବୁଝାଇ ଦେବା ଉଚିତ । ତାହେଲେ ପିଲାଟି ବିଫଳ ହେଲାମାତ୍ରେ ରାଗି ନ ଯାଇ ବିଫଳତା ନିତିଦିନିଆ ଜୀବନର ଏକ ସାଧାରଣ ଘଟଣା ବୋଲି ଗ୍ରହଣ କରେ ।

ବିଫଳତା ବ୍ୟତୀତ ଅନ୍ୟାନ୍ୟ ଭାବରେ ଆବେଗ ବେଳେ ବେଳେ ରାଗ ସୃଷ୍ଟି କରାଏ । କୌଣସି କାରଣରୁ ପିଲାଟିକୁ ଭଲ ଲାଗୁ ନଥିଲେ କିମ୍ବା ଅସ୍ଥିର ଲାଗୁଥିଲେ ସାମାନ୍ୟ ଘଟଣାରେ ପିଲାଟି ରାଗିଯାଏ । ଘରର ଅଶାନ୍ତି ମଧ୍ୟ ପିଲାଟିକୁ ରାଗି କରାଇ ଦିଏ । ଏପରି କ୍ଷେତ୍ରରେ କେଉଁ ଘଟଣାଟି ପିଲା ମନରେ ଅସ୍ଥିରତା ସୃଷ୍ଟି କରୁଛି, ତାହା ଜାଣିବାକୁ ହେବ । ପିତାମାତା ଓ ଅଭିଭାବକମାନେ ଅସ୍ଥିରତା ଦୂର କରିବା ପାଇଁ ଚେଷ୍ଟା କଲେ ପିଲାର ରାଗ କମିଯାଏ । ପିଲାଟିର ଭୋକଶୋଷ ବେଳେ, ଶୀତ ଓ ଗରମ ପାଇଁ କଷ୍ଟ ହେଲେ ପିଲାଟି କୌଣସି ଘଟଣାରେ ବେଶି ରାଗ ଦେଖାଇପାରେ । ସେହିପରି ଶାରୀରିକ ଅଶ୍ୱସ୍ତି ବ୍ୟତୀତ ଅନ୍ୟ ଅସୁବିଧା ମଧ୍ୟ ପିଲାମନରେ ଅସ୍ଥିରତା ଜନ୍ମାଏ ଏବଂ ଅସ୍ଥିରତା ସମୟରେ ରାଗ ବଢ଼େ । ଅଶ୍ୱସ୍ତିର କାରଣ ଦୂର କରି ରାଗ କମାଯାଇପାରେ ।

ସମୟ ସମୟରେ ଜୋର୍‌ସୋର୍‌ରେ ଚାଲିଥିବା ପ୍ରତିଯୋଗିତା ପିଲାମାନଙ୍କ ରାଗ ସୃଷ୍ଟି କରିପାରେ । ଅଳ୍ପ ବୟସର କେତେଜଣ ପିଲାଙ୍କୁ ଯଦି କୁହାଯାଏ ରଙ୍ଗୀନ ପେନ୍‌ସିଲ ନେଇ ଅଲଗା ଅଲଗା ଚିତ୍ର ଆଙ୍କିବାକୁ, ତେବେ ରଙ୍ଗୀନ ପେନ୍‌ସିଲର ସଂଖ୍ୟା ଅଧିକ ଥିଲେ ସେମାନେ ନ ରାଗି ନିଜ ନିଜ କାମ କରିବେ । ମାତ୍ର ଏପରି ପ୍ରତିଯୋଗିତାମୂଳକ ଅବସ୍ଥାରେ ରଙ୍ଗୀନ୍ ପେନ୍‌ସିଲର ସଂଖ୍ୟା ଖୁବ୍ କମ୍‌ଥିଲେ, ସେମାନେ ରାଗିଯାଇ ପାରନ୍ତି । ଗୋଟିଏ ପିଲା ରାଗିଯାଇ ଅନ୍ୟପିଲାର ଛବି ନଷ୍ଟ କରିଦେଇ ପାରେ । ଏସବୁ କ୍ଷେତ୍ରରେ ଶିକ୍ଷକ ଓ ଅଭିଭାବକମାନଙ୍କର ବିଶେଷ ଦାୟିତ୍ୱ ରହିଛି । ଛୋଟପିଲାମାନଙ୍କୁ ପ୍ରତିଯୋଗିତା ସ୍ତରକୁ ନେଲାବେଳେ ନିଜେ ନଜର ରଖିବା ନିତାନ୍ତ ଦରକାର । ତା'ଛଡ଼ା କେତେକ ସମୟରେ ପିଲାମାନଙ୍କୁ ସହଯୋଗମୂଳକ କାମରେ ଲଗାଇବା ମଧ୍ୟ ଆବଶ୍ୟକ । ପିଲାମାନେ ଏକାଠି ହୋଇ କିପରି ଅନେକ କାର୍ଯ୍ୟକରି ପାରନ୍ତି, ତାହାର ଉଦାହରଣ ଦେବା ଏବଂ ଦେଖାଇ ଦେବା ଖୁବ୍ ଭଲଭାବରେ କାମ କରେ । ପ୍ରତିଯୋଗିତା ଓ ସହଯୋଗ ପରି ଦୁଇଟି ଗୁଣ ଏକାଠି ବିକାଶ ଲାଭ କଲେ ପ୍ରତିଯୋଗିତାର କୁଫଳ କମିଯାଏ । ସେହିପରି ପ୍ରତିଯୋଗିତାରେ ଭାଗ ନେଉଥିବା ବେଳେ ପ୍ରତିଯୋଗିତାର ନିୟମଗୁଡ଼ିକ ଭଲଭାବରେ ପିଲାଟିକୁ ବୁଝାଇବା ଏବଂ ଅନ୍ୟର କାର୍ଯ୍ୟକୁ ସମ୍ମାନ ଦେବାକୁ ଶିଖାଇବା ନୀତି ପିଲାଟିର ମାନସିକ ବିକାଶରେ ସାହାଯ୍ୟ କରେ ।

**ରାଗକୁ ଉତ୍ସାହିତ କରିବା ଅବସ୍ଥା :**

କେତେଗୁଡ଼ିଏ ଅବସ୍ଥା ରହିଛି ଯାହାକି ରାଗ ବଢ଼ାଇବାରେ ଉତ୍ସାହିତ କରେ । ପିଲାଟି ରାଗ ଦେଖାଇଲା ପରେ ଯଦି ପିତାମାତା ବା ବଡ଼ଙ୍କଠାରୁ କେବେ କେମିତି ପୁରସ୍କାର ଲାଭ କରେ, ତେବେ ତାହା ପିଲାର ରାଗ ବଢ଼ାଇବାରେ ସାହାଯ୍ୟ କରିଥାଏ । ଅନ୍ୟ ପିଲାପ୍ରତି ଖରାପ ଭାଷା ପ୍ରୟୋଗ କଲାପରେ କିମ୍ବା ଅନ୍ୟ ପିଲାକୁ ଆଘାତ ଦେଲାପରେ ଯଦି ପିଲାଟିକୁ ସାବାସ୍ ବୋଲି କୁହାଯାଏ, ତେବେ ପିଲାଟି ରାଗୀ ହେବାକୁ ଶିଖେ । ସେହିପରି ଜିନିଷପତ୍ର ଭାଙ୍ଗିବା ଓ ଟେକା ପଥର ଫୋପାଡ଼ିବା ଇତ୍ୟାଦି କାର୍ଯ୍ୟ ଦେଖି କେତେକ ଅଭିଭାବକ ପିଲାର ବାହାଦୂରୀକୁ ତାରିଫ୍ କରନ୍ତି । ପିଲାର କୁଭାଷା ଶୁଣି ମଧ କେତେକ ତାକୁ ଖୁବ୍ ସାହସୀ ବୋଲି ପ୍ରଶଂସା କରନ୍ତି । ଏହିପରି ପ୍ରଶଂସା ସାମୟିକ ଭାବରେ ମିଳିଲେ ମଧ ପିଲା ରାଗୀ ହେବାକୁ ଶିଖେ ।

କେତେକ ଲୋକଙ୍କର ଧାରଣା ଯେ ପିଲାଟି ବେଳେ ବେଳେ ରାଗିଯାଇ କୁଭାଷା ବ୍ୟବହାର କଲେ ଓ ରାଗ ଦେଖାଇଲେ ତା'ର ମନ ଭିତରେ ରାଗ ଜମାଟ ବାନ୍ଧି ରହିବ ନାହିଁ ଏବଂ ତା'ର ରାଗର ପରିମାଣ କମ୍ ହେବ । ତାହା ପ୍ରକୃତରେ ଠିକ୍ ନୁହେଁ । ପିଲାର ଖରାପ ଭାଷା ଓ ଦେଖାଉଥିବା ରାଗ ପରବର୍ତ୍ତୀ କାଳର ରାଗକୁ ବଢ଼ାଏ । ସୁତରାଂ ପିତାମାତା ଓ ଅଭିଭାବକମାନଙ୍କର କର୍ତ୍ତବ୍ୟ ହେଉଛି ପିଲାର ଖରାପ ଭାଷା ଓ ରାଗକୁ ପୂର୍ଣ୍ଣଭାବରେ ନିରୁତ୍ସାହିତ କରିବା । ପିଲାଟି ନିଜର ରାଗ ଦେଖାଇ କୌଣସି ଜିନିଷ ହାସଲ କରିବାକୁ ଚାହୁଁଥିଲେ, ସେ ଜିନିଷଟି ଦେବା ଆଦୌ ଉଚିତ ନୁହେଁ । ସେହିପରି ଶିଶୁ ରାଗ ଦେଖାଉଥିବା ସମୟରେ ଶିଶୁଟି ପ୍ରତି ଅବଜ୍ଞା ପ୍ରଦର୍ଶନ କରିବା ଓ କୌଣସି ପୁରସ୍କାର ନ ଦେବା ପିଲାର ଜୀବନ ଗଠନରେ ସାହାଯ୍ୟ କରେ ।

ଅନ୍ୟକୁ ଅନୁକରଣ କରି ପିଲାଟି ଅଧିକ ରାଗୀ ହୋଇପାରେ । ପିଲାମାନେ ଖୁବ୍ ଅନୁକରଣ ପ୍ରିୟ । ସେମାନେ ଅନ୍ୟ ପିଲା ବା ବୟସ୍କମାନଙ୍କୁ ରାଗିବାର ଦେଖିଲେ ନିଜେ ରାଗୀ ହେବାକୁ ଉତ୍ସାହିତ ହୁଅନ୍ତି । ସେମାନଙ୍କ ପରିବାରରେ ଅନ୍ୟ ବୟସ୍କବ୍ୟକ୍ତିର ରାଗ କିମ୍ବା ସାଙ୍ଗସାଥୀଙ୍କ ରାଗ ଦେଖି ସେପରି ଭାବରେ ରାଗ ଦେଖାଇବାକୁ ଚେଷ୍ଟା କରନ୍ତି । ବହୁ କ୍ଷେତ୍ରରେ ଦେଖାଯାଇଛି ଯେ ପିଲାମାନେ ଅନ୍ୟର ରାଗ ଅବସ୍ଥା ବା ସେହିପରି ଛବି ଦେଖିସାରି ଅଧିକ ରାଗ ପ୍ରକାଶ କରନ୍ତି । ଟେଲିଭିଜନରେ ବିଭିନ୍ନ ହିଂସାମୂଳକ ଘଟଣା ଦେଖିବା ପରେ ପରେ ପିଲାମାନଙ୍କର ରାଗର ମାତ୍ରା ବଢ଼ିବା ଘଟଣା

ଲକ୍ଷ୍ୟ କରାଯାଇଛି । ଟେଲିଭିଜନରେ ଦେଖୁଥିବା ଅପରାଧମୂଳକ ଘଟଣା ଓ ହିଂସାତ୍ମକ ବ୍ୟବହାର ପିଲାମାନଙ୍କ ରାଗ ବୃଦ୍ଧିକୁ ଉତ୍ସାହିତ କରେ ।

ଅନୁକରଣ ଧାରାକୁ ବଦଳାଇ ଶିଶୁ ମନରେ ଶାନ୍ତ ସୁନ୍ଦର ମନୋଭାବ ଗଢ଼ାଯାଇ ପାରେ । ପିଲାର ପରିପାର୍ଶ୍ୱରେ ଥିବା ବୟସ୍କମାନେ ସଂଯତ ଓ ଦାୟିତ୍ୱସମ୍ପନ୍ନ ବ୍ୟବହାର ଦେଖାଇଲେ ଶିଶୁଟି ମଧ୍ୟ ସଂଯମ ଶିକ୍ଷା କରେ । ସେହିପରି ପିଲାଟିର ସାଙ୍ଗସାଥୀ ଓ ଭାଇଭଉଣୀମାନଙ୍କର ବ୍ୟବହାର ଉପରେ ମଧ୍ୟ ଲକ୍ଷ୍ୟ ରଖିବାକୁ ହେବ । ପିଲାଟିର ମନୋରଞ୍ଜନ ପାଇଁ ବ୍ୟବହାର କରାଯାଉଥିବା ଟେଲିଭିଜନ, ଗପବହି ଓ ଖେଳସାମଗ୍ରୀ ଇତ୍ୟାଦି ସୁନିର୍ବାଚିତ କରାଗଲେ ପିଲାଟି ନିଜ ସାମାଜିକ ପରିବେଶରୁ ବହୁତ ଭଲ ଶିକ୍ଷା ପାଇବ ଏବଂ ତା'ର ରାଗ ମଧ୍ୟ କମ୍ ହେବ । ପିଲାର ରାଗ କମାଇ ତା'କୁ ଆତ୍ମସଂଯମ ଶିକ୍ଷାଦେବାର ପନ୍ଥା ଏକାଧିକ ଏବଂ ଦାୟିତ୍ୱସମ୍ପନ୍ନ ଶିକ୍ଷକ ଓ ଅଭିଭାବକମାନେ ଏ ସମସ୍ତ ପନ୍ଥାର ଉପଯୋଗ କଲେ ସର୍ବାଧିକ ସଫଳତା ମିଳିପାରିବ ।



# ପିଲାର ଭାବଗତ ବିକାଶରେ ଶିକ୍ଷକ ଓ ପିତାମାତାଙ୍କ ଭୂମିକା

ନିଜର କଳ୍ପନା ନିଜର ଆଦର୍ଶ ଅନୁଯାୟୀ ପିଲାମାନଙ୍କୁ ଗଢ଼ି ନ ପାରିଲେ ମନରେ ଯେ କି ଭୀଷଣ ଆଘାତ ଲାଗେ, ତା' ପ୍ରତ୍ୟେକ ବାପ ମା' ଅନୁଭବ କରନ୍ତି । ଅନେକ ସମୟରେ ପ୍ରତି ବାପ ମା' ନିଜର ସନ୍ତାନକୁ ସୁଶୃଙ୍ଖଳ, ପରିଶ୍ରମୀ, ମନୋଯୋଗୀ ଓ ଅଧ୍ୟୟନଶୀଳ ରୂପରେ ଦେଖିବାକୁ ଚାହିଁଲେ ମଧ କେତେକ ସ୍ଥଳରେ ହତାଶ ହେବାକୁ ପଡ଼େ । ସେହିପରି ଅନ୍ୟ କେତେକ କ୍ଷେତ୍ରରେ ବାପ ମା'ଙ୍କ କୁପ୍ରଭାବରୁ ମୁକ୍ତ କରି କେହି କେହି ପିଲା ଉପରୋକ୍ତ ଗୁଣର ପରିଚୟ ଦେଇଥାନ୍ତି । ଶିଶୁ ଓ କୈଶୋର କାଳର ଭାବଗତ ବିକାଶରେ ଏକ ବିଶିଷ୍ଟ ଭୂମିକା ନିଅନ୍ତି ବିଦ୍ୟାଳୟ ଓ ସ୍କୁଲ ସାଥୀବୃନ୍ଦ । ବାପ ମା' ବେଳେବେଳେ ସ୍କୁଲର ଏହି ବିରାଟ ଭୂମିକାକୁ ଭୁଲିଗଲେ ମଧ୍ୟ ଏହା ଯେ ଶିଶୁର ଜୀବନକୁ ବହୁ ମାତ୍ରାରେ ପ୍ରଭାବିତ କରେ, ଏଥିରେ ସନ୍ଦେହ ନାହିଁ ।

ନର୍ସରୀ ସ୍କୁଲ (ପ୍ରାକ୍-ବିଦ୍ୟାଳୟ) :

ନର୍ସରୀ ସ୍କୁଲକୁ ଯିବା ଆରମ୍ଭ କରିବା ସମୟରୁ ଶିଶୁର ଭାବଗତ ବିକାଶ ଏକ ନୂତନ ଦିଗ ନିଏ । ପ୍ରଥମତଃ ଶିଶୁ ମନରେ ଦେଖାଦିଏ ସ୍ୱାଧୀନ ହେବାର ଆକାଂକ୍ଷା । ପ୍ରଥମ ଥର ପାଇଁ ସେ ପିତାମାତାଙ୍କ ପ୍ରତ୍ୟକ୍ଷ ଶାସନରୁ ମୁକ୍ତ ହୋଇ ସ୍କୁଲ ପରିବେଶରେ ପହଞ୍ଚେ । ଏ ସମୟରେ ସେ ଧୀରେ ଧୀରେ ନିଜର କାମ ନିଜେ କରିବା ପାଇଁ ଆଗଭର ହୁଏ । ନିଜର ନିୟନ୍ତ୍ରଣ ଜାରି କରିବାକୁ ତତ୍ପର ହୁଏ । ସ୍ୱାଧୀନ ହେବାର ଏ ମନୋବୃତ୍ତି ସହିତ ଏକ ପ୍ରକାର ଖାମଖିଆଲି ଭାବ ମଧ୍ୟ ଚାଲିଥାଏ । ଅନେକ ସମୟରେ ଦେଖାଯାଏ ସେ ନର୍ସରୀସ୍କୁଲର ପିଲାମାନେ ବଡ଼ ବଡ଼ ସୁଟକେଶକୁ ଟାଣି ନିଜ ଶକ୍ତିର ପରିଚୟ ଦେବାକୁ ଆଗଭର, ସେହି ପିଲାମାନେ ପୁଣି ନିଜ ଜୋତାର ଫିତା ବାନ୍ଧିବାକୁ ଶିକ୍ଷକ କିମ୍ବା ପିତାମାତାଙ୍କ ସାହାଯ୍ୟ ଲୋଡ଼ୁଛନ୍ତି । ଏହି ସମୟରେ ଆଉ ଗୋଟିଏ ବିଷୟ ଲକ୍ଷ୍ୟ କରିବାର କଥା ଯେ ଶିଶୁଟି କୌଣସି ବଡ଼ କାର୍ଯ୍ୟକୁ ହାତକୁ ନେଇ ତାହା କରି ନ ପାରିଲେ ତା' ମନରେ ଲଜ୍ଜା ଆସେ । ନିଜର ଦକ୍ଷତା ବିଷୟରେ ତା' ମନରେ ଯେଉଁ ଉଚ୍ଚ ଧାରଣା ଥାଏ ଏପରି ଲଜ୍ଜା ସେଥିରେ ବାଧା ସୃଷ୍ଟି କରେ । ବିଭିନ୍ନ କାର୍ଯ୍ୟରେ ସାମୟିକ ବିଫଳତା କିଛି ଖରାପ ନୁହେଁ, ସେ ନିଜର ସୀମିତ ଶକ୍ତିର ପରିସର ବୁଝିବାକୁ ସମର୍ଥ ହୁଏ । ମାତ୍ର ଅତି ବେଶୀ ପରିମାଣରେ ବିଫଳତା ତା' ମନରେ ଅତ୍ୟଧିକ ଲଜ୍ଜା ସୃଷ୍ଟି କରେ ।

ନର୍ସରୀ ସ୍କୁଲର ପିଲାମାନେ ଅନ୍ୟ ପିଲାମାନଙ୍କ ସହିତ କଥାବାର୍ତ୍ତା ଓ ମିଳାମିଶା କରିବାର ସୁଯୋଗ ପାଆନ୍ତି । ଏ ବୟସରେ କଥାବାର୍ତ୍ତା କରିବାର ସାମର୍ଥ୍ୟର ବିକାଶ ଘଟିଥିବାରୁ ଅନ୍ୟମାନଙ୍କ ସହିତ କଥାବାର୍ତ୍ତା କରି ଆନନ୍ଦ ପାଆନ୍ତି । କଥାବାର୍ତ୍ତା ପାଇଁ ଖେଳ ଏକ ବିଶିଷ୍ଟ ମାଧ୍ୟମ ଯୋଗାଏ । ଦେଖାଯାଏ ଯେ ଏ ବୟସର ପିଲାମାନେ ଅନ୍ୟ ପିଲାମାନଙ୍କର ପ୍ରଶ୍ନର ଉତ୍ତର ଦେବା ତୁଳନାରେ ନିଜେ ପ୍ରଶ୍ନ ପଚାରିବାରେ ବେଶୀ ସଫଳତା ଦର୍ଶାନ୍ତି । ତା' ଛଡ଼ା କଥାବାର୍ତ୍ତା ଓ ଅନ୍ୟମାନଙ୍କ ସହ ପାରସ୍ପରିକ କ୍ରିୟାକଳାପରେ ନିଜ ପସନ୍ଦ ଅପସନ୍ଦର ସୂଚନା ଦିଅନ୍ତି । ପସନ୍ଦ କରୁଥିବା ସାଥୀମାନଙ୍କ ପାଖାପାଖି ବସିବା, ସେମାନଙ୍କୁ ସାମୟିକ ଉପହାର ଦେବା, ନିଜ ଘରକୁ ନିମନ୍ତ୍ରଣ କରିବା ପ୍ରଭୃତି ମାଧ୍ୟମରେ ନିଜ ପସନ୍ଦର ସୂଚନା ଦିଅନ୍ତି । ସେହିପରି ଅନ୍ୟ କେତେକ ପିଲାମାନଙ୍କୁ ଖେଳରୁ ବାହାର କରିଦେବା, ସେମାନଙ୍କୁ ଥଟ୍ଟା ପରିହାସ କରିବା ଓ ଚିଡ଼େଇବା ଇତ୍ୟାଦି ମାଧମରେ ନିଜ ଅପସନ୍ଦ ବ୍ୟକ୍ତ କରନ୍ତି ।

ବର୍ତ୍ତମାନ ପ୍ରଶ୍ନ ହେଉଛି ନର୍ସରୀସ୍କୁଲକାଳୀନ ଭାବଗତ ବିକାଶକୁ ଉଚିତ୍ ମାର୍ଗରେ ପରିଚାଳିତ କରିବା ପାଇଁ ଶିକ୍ଷକମାନଙ୍କର କୌଣସି ଦାୟିତ୍ୱ ଅଛି କି ? ବାସ୍ତବରେ ଶିକ୍ଷକ ଶିକ୍ଷୟତ୍ରୀମାନେ ଏ ଦିଗରେ ବହୁତ କିଛି କରିପାରିବେ । ପ୍ରଥମତଃ ଏ ବୟସର ଶିଶୁମାନଙ୍କୁ ଖେଳ ସାମଗ୍ରୀ, ବସିବାର ସୁବିଧା ସୁଯୋଗ ଓ ସ୍କୁଲ କାର୍ଯ୍ୟ ଏପରି ଭାବରେ ଦିଆଯିବା ଉଚିତ୍ ଯେ, ସେଗୁଡ଼ିକ ଶିଶୁର ସ୍ୱାଧୀନ ମନୋଭାବକୁ ଉତ୍ସାହିତ କରିପାରିବ । ସ୍କୁଲ କାର୍ଯ୍ୟକୁ ଏପରି ଭାବରେ ପରିକଳ୍ପନା କରାଯିବା ଉଚିତ୍ ଯେପରି ଶିଶୁ ନିଜର ଦକ୍ଷତା ଦେଖାଇ ପାରିବ ଓ ଅଧିକାଂଶ କ୍ଷେତ୍ରରେ ସଫଳକାମ ହେବ । ଦ୍ୱିତୀୟତଃ କଥାବାର୍ତ୍ତା ମାଧ୍ୟମରେ ଶିକ୍ଷକ ବା ବୟସ୍କ ବ୍ୟକ୍ତିମାନେ ଶିଶୁକୁ ଉତ୍ସାହ ଦେଇ ଶିଶୁଟି ଯେପରି ସ୍ୱାଧୀନ ଭାବରେ ଛୋଟ ଛୋଟ ସମସ୍ୟା ସମାଧାନ କରିପାରିବ ସେ ଦିଗରେ କାର୍ଯ୍ୟ କରିପାରିବେ । ଅଯଥା ହସ୍ତକ୍ଷେପ ବଦଳରେ ପରିମିତ ପରିମାଣରେ ଉପଦେଶ ଏ କ୍ଷେତ୍ରରେ ବେଶୀ ଫଳ ଦିଏ । ତୃତୀୟତଃ, ଦଳଗତ ପରିପ୍ରେକ୍ଷୀରେ ମଧ୍ୟ ଶିଶୁର ବହୁ ବିକାଶ ଘଟେ । ନିଜ ବ୍ୟତୀତ ବିଶ୍ୱରେ ଯେ ଅନ୍ୟ ଶିଶୁମାନେ ଅଛନ୍ତି, ଅନ୍ୟ ବ୍ୟକ୍ତିମାନେ ଅଛନ୍ତି ଏବଂ ସେମାନଙ୍କର ଭିନ୍ନ ଭିନ୍ନ ଭାବଧାରା ଥାଇପାରେ ଏ ଧାରଣା ଭଲ ରୂପେ ଦଳଗତ ପରିପ୍ରେକ୍ଷୀରେ ଜନ୍ମ ନିଏ । ଦଳ ଦଳ ହୋଇ ଖେଳିବା ବୁଲିବା ଓ କାମ କରିବା ମାଧ୍ୟମରେ ଏହା ବିକାଶ ଲାଭ କରେ । ସୁତରାଂ ବିଭିନ୍ନ ଖେଳ, ଖେଳନା ଓ ସ୍କୁଲକାର୍ଯ୍ୟ ଦେଇ ସାଙ୍ଗସାଥୀମାନଙ୍କ ଗହଣରେ ସାମାଜିକ ବିକାଶକୁ ତ୍ୱରାନ୍ୱିତ କରାଯାଇପାରେ । ଅନ୍ୟ ପିଲାମାନେ

କିପରି କ'ଣ ସାମର୍ଥ ଦେଖାଉଛନ୍ତି, ତାହା ଆବିଷ୍କାର କରି ଶିଶୁ ନିଜର ସାମର୍ଥ୍ୟକୁ ଠିକ୍ ରୂପେ ବୁଝିବାକୁ ଚେଷ୍ଟା କରେ ।

ବିଦ୍ୟାଳୟର ପ୍ରଭାବ :

ନର୍ସରୀ ସ୍କୁଲ ବୟସର ପରବର୍ତ୍ତୀ ଅବସ୍ଥାରେ ଅନ୍ୟାନ୍ୟ ଭାବଗତ ବିକାଶ ପରିଦୃଷ୍ଟ ହୁଏ । ବିଶେଷ କରି ପାଞ୍ଚ ବର୍ଷରୁ ତେରବର୍ଷ ମଧ୍ୟରେ ଏ ପରିବର୍ତ୍ତନଗୁଡ଼ିକ ସ୍ପଷ୍ଟଭାବେ ଲକ୍ଷ୍ୟ କରାଯାଏ । ପିଲାର ବୌଦ୍ଧିକ ବିକାଶ ସହିତ ସଂଯୋଗ ରକ୍ଷା କରି ଏପରି ଭାବଗତ ବିକାଶ ସଂଘଟିତ ହୁଏ ।

ପ୍ରଥମତଃ ପିଲା ମନରେ ଜିଜ୍ଞାସା ଓ କୌତୂହଳ ଦେଖାଦିଏ । ଏପରି କୌତୂହଳର ପରିସୀମା ଖୁବ୍ ପରିବ୍ୟାପ୍ତ । ଜିନିଷଗୁଡ଼ିକ କାହିଁକି ସେପରି ହୋଇଛନ୍ତି ଏବଂ କିଏ ସେମାନଙ୍କୁ ସେପରି ରୂପ ଦେଇଛି ଏହା ପଚାରି ବସନ୍ତି । ଏପରି ପ୍ରଶ୍ନ କରି ଉତ୍ତର ପାଇବାର ଇଚ୍ଛା ସେମାନଙ୍କ ଜ୍ଞାନ ରାଜ୍ୟକୁ ବିସ୍ତୃତ କରେ । ବେଳେବେଳେ ସେମାନଙ୍କ ଜିଜ୍ଞାସା ସେମାନଙ୍କ ମନରେ ଦ୍ୱନ୍ଦ ମଧ୍ୟ ସୃଷ୍ଟି କରେ । କାରଣ କେତେକ କ୍ଷେତ୍ରରେ ଶିକ୍ଷକ ବା ପିତାମାତା ପ୍ରଶ୍ନର ଉତ୍ତର ଜାଣି ନ ଥାନ୍ତି । ବେଳେବେଳେ ଉତ୍ତର ଜାଣିଥିଲେ ମଧ୍ୟ ପିଲା ତାହା ଜାଣିବା ଉଚିତ୍ ନୁହେଁ ବୋଲି ମନେ କରନ୍ତି । ଶିଶୁର କୌତୂହଳ ବାଧା ପାଇଲେ ତାର ଏକ ନୂତନ ଅନୁଭୂତି ଆସେ । ସେ ଆବିଷ୍କାର କରେ ଯେ କେତେକ ଅଭିଜ୍ଞତା ଓ କେତେକ ତଥ୍ୟ ତା' ସୀମାର ବହିର୍ଭୂତ । ନିଜେ ପ୍ରଶ୍ନ ପଚାରି ପଚାରି ଅନ୍ୟମାନଙ୍କୁ ବିରକ୍ତ କରୁଛି ଭାବି ସେ ନିଜକୁ ଦୋଷୀ ମନେ କରେ ।

ଦ୍ୱିତୀୟରେ କର୍ମକୁଶଳତା ଜନିତ ଏକ ଆନନ୍ଦ ଏ ସମୟରେ ଦେଖାଦିଏ । ଦିନକୁ ଦିନ ତା'ର ଶକ୍ତି ସାମର୍ଥ୍ୟ ବୃଦ୍ଧି ପାଉଛି ବୋଲି ଅନୁଭବ କରି ସେ ଆନନ୍ଦ ପାଏ । ସେ ଯେ କେବଳ ସ୍ୱାଧୀନ ଭାବରେ କାମ କରିବାକୁ ଚାହେଁ ତା' ନୁହେଁ, ସେ କାମଟିକୁ ଭଲରୂପେ କରିବା ପାଇଁ ମଧ ପ୍ରବୃତ୍ତ ହୁଏ । ପ୍ରତି କାମର ଯେ ଗୋଟିଏ ମାନଦଣ୍ଡ ଅଛି ଏହା ଅନୁଭବ କରେ ଓ ଏ ମାନଦଣ୍ଡଟି ନିଜ କାମ ଓ ଅନ୍ୟମାନଙ୍କ କାମ ପ୍ରତି ପ୍ରୟୋଗ କରେ । ଅନ୍ୟମାନେ କୌଣସି କାମ ଯାହା ତାହା ଭାବରେ କରିଦେଲେ କାମଟି ସେପରି ନ ହୋଇ ପ୍ରକୃତରେ ଏପରି ହେବା ଉଚିତ ବୋଲି ଅନ୍ୟମାନଙ୍କୁ ବୁଝାଏ ଓ ନିଜେ ଦେଖାଇ ଦିଏ । ଏପରି ଭାବଗତ ବିକାଶ ହେଉଛି ସ୍ୱାଭାବିକ ଧାରା । ମାତ୍ର କୌଣସି ଛାତ୍ର ନିଜର ସାଙ୍ଗସାଥୀ, ଶିକ୍ଷକ ବା ପିତାମାତାଙ୍କଠାରୁ ଅତି ବେଶି ତିରସ୍କାର ପାଇଲେ, ସେ ଆଗପରି ଆଉ ନୂଆ ଜିନିଷରେ ହାତ ଦେବାକୁ ଆଗଭର ହୁଏ ନାହିଁ । ଅନୁସନ୍ଧିତ୍ସା ବାଧାପାଇ ବେଳକୁ ବେଳ ଅନିଚ୍ଛା ବୃଦ୍ଧି ପାଏ ।

ନିଜର ସାମର୍ଥ୍ୟ ଦେଖାଇବାର ମନୋବୃତ୍ତି ସହିତ ଶିକ୍ଷକ ଶିକ୍ଷୟତ୍ରୀ-ମାନଙ୍କର ଆନନ୍ଦ ଓ ପ୍ରଶଂସା ପାଇବାର ଇଚ୍ଛା ମଧ୍ୟ ବଳବତୀ ହୁଏ । ଶିକ୍ଷକ ଶିକ୍ଷୟତ୍ରୀମାନଙ୍କୁ ଖୁସି କରିବାକୁ ପିଲାମାନେ ଚେଷ୍ଟା କରନ୍ତି । କିନ୍ତୁ ଚତୁର୍ଥ, ପଞ୍ଚମ ଶ୍ରେଣୀ ବେଳକୁ ସାଙ୍ଗସାଥୀମାନଙ୍କଠାରୁ ଆଦର ପ୍ରଶଂସା ପାଇଁ ଅଧିକ ଇଚ୍ଛା ଦେଖାଦିଏ । ଅନେକ ଶିକ୍ଷକ ଶିକ୍ଷୟିତ୍ରୀ ଏହାକୁ ଭିତ୍ତିକରି ଛାତ୍ରମାନଙ୍କ ଉତ୍ସାହିତ କରିବାର ଦେଖାଯାଏ । ଶ୍ରେଣୀ ଗୃହର କାର୍ଯ୍ୟ ପରିଧିର ଶୃଙ୍ଖଳା ରକ୍ଷା ଆଦି କାମରେ ସାଙ୍ଗସାଥୀମାନଙ୍କର ମତାମତକୁ ମାଧ୍ୟମ ରୂପେ ବ୍ୟବହାର କରି ଶିକ୍ଷକ ଶିକ୍ଷୟତ୍ରୀ କେତେକ ଲକ୍ଷ୍ୟ ହାସଲ କରନ୍ତି । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ଗୋଟିଏ ଛାତ୍ର ଲେଖିଥିବା ରଚନାଟି ଶ୍ରେଣୀରେ ପାଠ କରିବାର ସୁଯୋଗ ଦେଇ ଉକ୍ତ ଛାତ୍ରର ସାଙ୍ଗସାଥୀମାନେ ସେ ରଚନାର ମୂଲ୍ୟାଙ୍କନ କରିବାର ସୁଯୋଗ ଦିଆଯାଇପାରେ । ମୂଲ୍ୟାୟନଟି ଛାତ୍ର ପାଇଁ ଏକ ପ୍ରଭାବଶାଳୀ ସଙ୍କେତ ରୂପେ କାର୍ଯ୍ୟ କରେ ।

ବାସ୍ତବରେ ସାଙ୍ଗସାଥୀମାନଙ୍କ ସହିତ ସମ୍ପର୍କ କେବଳ ପାଠଗତ ଉଦ୍ୟମ ଉପରେ ପ୍ରଭାବ ପକାଏ ନାହିଁ, ବହୁ ଭାବରେ ଏହା ପିଲାର ମାନସିକ ବିକାଶକୁ ନିୟନ୍ତ୍ରଣ କରେ । ବନ୍ଧୁ ନିର୍ବାଚନ କରିବାରେ ନିଜର ପାଠ୍ୟନୋଟ୍ ବାଣ୍ଟିବାରେ, ଜଳଖିଆ ଦୋକାନରେ ବସିବା ମେଳରୁ ତା' ଉପରେ ପଡୁଥିବା ପ୍ରଭାବର ଉତ୍ସ ଲକ୍ଷ୍ୟ କରି ହୁଏ । ସେହିପରି ଶ୍ରେଣୀ ଗୃହରେ କାହାକୁ ସେ ଶିକ୍ଷକଙ୍କର ପ୍ରିୟଛାତ୍ର ଭାବୁଛି, କାହାକୁ ଜୋକ୍ରର ଆଖ୍ୟା ଦେଉଛି, କାହାକୁ ନାଟର ଗୋବର୍ଦ୍ଧନ ବୋଲି ବିଚାରୁଛି, ଏ ସବୁରୁ ତା'ର ଅନ୍ୟ ପ୍ରତି ମନୋଭାବ ଜଣା ପଡ଼ିଥାଏ । ବେଳେବେଳେ ଏହି ସାଙ୍ଗସାଥୀଙ୍କ ଗହଣରେ ତା' ମନରେ ନୈତିକ ଦ୍ୱନ୍ଦ୍ୱ ସୃଷ୍ଟି ହୁଏ । ତା'ର କୌଣସି ପ୍ରିୟବନ୍ଧୁ ଚୋରି କରୁଥିବାର ଦେଖିଲେ ବା କୌଣସି କୁକାର୍ଯ୍ୟ କରୁଥିବାର ଦେଖିଲେ ତାହା ସେ ଅନ୍ୟମାନଙ୍କୁ ଜଣାଇବ କି ନାହିଁ ସ୍ଥିର କରିପାରେ ନାହିଁ । ପୁଣି ଅନ୍ୟ କେତେକ ସ୍ଥଳରେ କେହି କେହି ଛାତ୍ର ସାଙ୍ଗସାଥୀର ଚାପରୁ ନିଜକୁ ମୁକ୍ତ କରି ସ୍ୱାଧୀନତା ଓ ବ୍ୟକ୍ତିଗତ ମୂଲ୍ୟବୋଧ ନିର୍ମାଣ କରିପାରନ୍ତି ।

କୈଶୋର କାଳୀନ ଏପରି ଏକ ଦ୍ୱନ୍ଦ୍ୱ ସମୟରେ ଆଉ ଗୋଟିଏ ସମସ୍ୟା ସୃଷ୍ଟି ହୁଏ, ତାହା କର୍ମାଭିମୁଖୀ ମନୋବୃତ୍ତିକୁ ନେଇ । କାମ ପ୍ରତି ଅନୁକୂଳ ମନୋଭାବ ଥିଲେ ପିଲାଟି କିଛି ହାସଲ କରିବାର ମନୋବୃତ୍ତି ନେଇ କର୍ମତତ୍ପର ହୁଏ, କର୍ମକୁଶଳତା ଦେଖାଇ କାମ ପ୍ରତି ବିରାଗ ଜନ୍ମିଲେ ସେ ଏପରି ଏକ ଦଳ ବା ସଂଘର ବଶବର୍ତ୍ତୀ ହୁଏ ଯେଉଁ ଦଳର ଆଭିମୁଖ୍ୟ ହେଉଛି ବିଦ୍ୟାଳୟଗତ

ସଫଳତା ବା କର୍ମକୁଶଳତାକୁ ହେୟ କରି ବାହାରର ବହ୍ସାହସୀ କାମରେ ମାତିବା । ସ୍କୁଲ କାମରୁ ଫାଙ୍କିମାରି ବାହାରେ ବୁଲିବା ଦୁଷ୍ଟାମି କରିବା ଇତ୍ୟାଦିରେ ସମୟ ଦିଅନ୍ତି ।

ଭାବଗତ ବିକାଶର ଏପରି ଖରାପ ସମ୍ଭାବନା ଥିବା ସତ୍ତ୍ୱେ ଶିକ୍ଷକ ବା ପିତାମାତାଙ୍କ ଦାୟିତ୍ୱପୂର୍ଣ୍ଣ ଭୂମିକା ଏକ ବିରାଟ ସଂଘଟକ ରୂପେ କାର୍ଯ୍ୟ କରେ । ଜିଜ୍ଞାସା, ଅନୁସନ୍ଧିତ୍ସା ଓ ସାମାଜିକ କ୍ରିୟାକଳାପକୁ ଅନୁରୂପ ଉତ୍ସାହ ଦେଇପାରିଲେ ପିଲାର ଭାବଗତ ବିକାଶ ସୁସମଞ୍ଜସ ଭାବରେ ଘଟିଥାଏ । ବିଶେଷ କରି ପିଲାଟି ଅନ୍ୟମାନଙ୍କର ମୂଲ୍ୟବୋଧର ଭିନ୍ନତା ବୁଝେ ଓ ତଦନୁସାରେ ନିଜେ ଭାରସାମ୍ୟ ରକ୍ଷା କରିବାକୁ ଶିକ୍ଷା କରେ । ଭାବଗତ ବିକାଶର ଏ ଦିଗଟି ତା'ର ଭବିଷ୍ୟତ ଜୀବନରେ ଏକ ସାମାଜିକ ବିଭବ ରୂପେ କାର୍ଯ୍ୟ କରେ ।



# ଛୋଟ ପିଲାମାନେ ସଂଖ୍ୟା ସଂପର୍କରେ ଧାରଣା କରନ୍ତି କିପରି ?

ନିଜର ଛୋଟ ପୁଅ ଝିଅ, ପୁତୁରା, ଝିଆରୀ ବା ସାନ ଭାଇଭଉଣୀମାନଙ୍କୁ ଅଙ୍କ ବୁଝାଇବାକୁ ଗଲାବେଳେ କିପରି ଅସୁବିଧା ହୁଏ, ତାହା ଅଳ୍ପ ବହୁତେ ଅନେକ ଲୋକ ଅନୁଭବ କରିଥିବେ । ଦୁଇଟି ଆମ୍ବ ସହିତ ଆଉ ଦୁଇଟି ଆମ୍ବ ମିଶିଲେ ଚାରୋଟି ଆମ୍ବ ହୁଏ, ଏହି ଉଦାହରଣଟି ପ୍ରାଞ୍ଜଳ ଭାବେ ବୁଝାଇଲା ପରେ ମଧ୍ୟ ପିଲାଟିକୁ ଯେତେବେଳେ ପଚରାଯାଏ ଦୁଇଟି ହାତୀ ସହିତ ଆଉ ଦୁଇଟି ହାତୀ ମିଶିଲେ କ'ଣ ହେବ, କେତେକ ଅଳ୍ପ ବୟସର ପିଲା ଭୁଲ୍ ଉତ୍ତର ଦିଅନ୍ତି କିମ୍ୱା ନୀରବ ରୁହନ୍ତି । ସେତେବେଳେ ଅଙ୍କ ବୁଝାଉଥିବା ବ୍ୟକ୍ତିର ରାଗ ଖୁବ୍ ବଢ଼ିଯାଏ । ମନେହୁଏ ଏକା ଧରଣର ଦୁଇଟି ପ୍ରଶ୍ନ, ଅଥଚ ଏ ଉତ୍ତର ଦେଇ ପାରୁନାହିଁ । ପିଲାଟି ନିଶ୍ଚୟ ବୁଦ୍ଧିହୀନ । କିନ୍ତୁ ଏପରି ସିଦ୍ଧାନ୍ତ ନେବା ପୂର୍ବରୁ ପିଲାମାନେ ସଂଖ୍ୟା ବିଷୟରେ କିପରି ଧାରଣା କରନ୍ତି, ତାହା ଜାଣିବା ଆବଶ୍ୟକ ।

ପିଲାମାନଙ୍କର ମାନସିକ ବିକାଶ କେତୋଟି ନିର୍ଦ୍ଦିଷ୍ଟ ସ୍ତର ଦେଇ ଗତି କରିଥାଏ । ଏଇ ସ୍ତରଗୁଡ଼ିକ କ୍ରମାନ୍ୱୟରେ ଆସେ ଏବଂ ପିଲା ନିଜ ବୟସର ପରିପକ୍ୱତା ଲାଭ କରିବା ସଙ୍ଗେ ସଙ୍ଗେ ବାହ୍ୟଜଗତ ବିଷୟରେ ଅଧିକରୁ ଅଧିକ ଜ୍ଞାନ ଆହରଣ କରିଥାଏ । ଅତି ଅଳ୍ପବୟସ୍କ ପିଲାମାନଙ୍କର ସଂଖ୍ୟା ବିଷୟରେ ସ୍ପଷ୍ଟ ଧାରଣା ନଥାଏ । ଯାହା ଥାଏ, ପଦାର୍ଥ ସଙ୍ଗେ ମିଶିକରି ଥାଏ । ସେମାନେ ଇନ୍ଦ୍ରିୟ ସାହାଯ୍ୟରେ ଧାରଣା କରନ୍ତି । ସେମାନେ ଆମ୍ବ ଦେଖନ୍ତି ଏବଂ ତାହା କିଭଳି ଜିନିଷ ଜାଣନ୍ତି । ତିନୋଟି ଆମ୍ବ ଦେଖନ୍ତି ଏବଂ ଜାଣନ୍ତି; ମାତ୍ର 'ତିନୋଟି' ବୋଲି ପୃଥକ୍ କିଛି ଦେଖନ୍ତି ନାହିଁ । ତେଣୁ ସେମାନଙ୍କ ପକ୍ଷରେ ସଂଖ୍ୟାକୁ ବସ୍ତୁଠାରୁ ମୁକ୍ତ କରି ଧାରଣା କରିବା କଷ୍ଟକର ହୁଏ । ବୟସ୍କମାନେ ଜାଣନ୍ତି 'ତିନୋଟି' ଏକ ସଂଖ୍ୟାବାଚକ ବିଶେଷଣ । ତାହାକୁ ସେହି ସଂଖ୍ୟକ ଯେକୌଣସି ବସ୍ତୁ ପୂର୍ବରୁ ଲଗାଇ ହେବ ।

କିନ୍ତୁ ଅଳ୍ପ ବୟସର ପିଲାମାନେ ସଂଖ୍ୟାଗୁଡ଼ିକ ବସ୍ତୁଠାରୁ ମୁକ୍ତ ବୋଲି ଭାବିପାରନ୍ତି ନାହିଁ । ପ୍ରଥମେ ସେମାନଙ୍କୁ ଦୁଇଟି ଆମ୍ବର ଉଦାହରଣ ଦେଲେ ସେମାନେ 'ଆମ୍ବ' ଓ 'ଦୁଇ' ଯେ ସଂପୂର୍ଣ୍ଣ ପୃଥକ୍, ଏହା କଳ୍ପନା କରିପାରନ୍ତି

ନାହିଁ । ଫଳରେ ଦୁଇଟି ଆମ୍ବ ସହ ଦୁଇଟି ଆମ୍ବ ମିଶିଲେ ଚାରୋଟି ଆମ୍ବ ହେବ ବୋଲି ବୁଝାଇ ସାରିଲା ପରେ ଦୁଇଟି ହାତୀ ଓ ଦୁଇଟି ହାତୀ ମିଶି କେତେ ପଚାରିଲେ ସେମାନେ କହିପାରନ୍ତି ନାହିଁ । ସଂଖ୍ୟା ଦୃଷ୍ଟିରୁ ଦୁଇଟି ଆମ୍ବ ଓ ଦୁଇଟି ହାତୀ ଯେ ସମାନ—ଏକଥା ବୁଝିପାରନ୍ତି ନାହିଁ ।

ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ପିଲାଟି କ୍ରମଶଃ ବୁଝେ ଯେ କୌଣସି ଏକ ସଂଖ୍ୟା କହିଲେ ଯାହା ବୁଝାଯାଏ ତାହା ସହିତ ବସ୍ତୁର କୌଣସି ସଂପର୍କ ନାହିଁ । ବୟସ ବୃଦ୍ଧି ବ୍ୟତୀତ ପିତାମାତା, ଅଭିଭାବକ ଓ ଶିକ୍ଷକ ଶିକ୍ଷୟତ୍ରୀମାନେ ମଧ୍ୟ ଏ ଦିଗରେ ବେଶ୍ କିଛି କରିପାରିବେ । ପିଲାର ସଂଖ୍ୟାଗତ ଧାରଣାର ବିକାଶ ତ୍ୱରାନ୍ୱିତ କରିବାକୁ ବିଭିନ୍ନ ବସ୍ତୁ, ବିଶେଷ କରି ବହୁ ବୈଷମ୍ୟପୂର୍ଣ୍ଣ ବସ୍ତୁର ଉଦାହରଣ ଦେବାକୁ ପଡ଼ିବ । 'ତିନୋଟି'ର ଧାରଣା ଦେବା ସମୟରେ ତିନୋଟି ଆଳୁ, ତିନୋଟି ହାତୀ, ତିନୋଟି ମାଛ, ତିନୋଟି ବହି ଏହିପରି ବହୁ ଉଦାହରଣ ଦେବା ଉଚିତ । ଏହି ଉଦାହରଣଗୁଡ଼ିକ ଯେତେ ପୃଥକ୍ ଜାତୀୟ ହେବ ସେତେ ଭଲ ।

ବିକାଶର ଏହି ସ୍ତରରେ ଆଉ ଗୋଟିଏ ବିଷୟ ଲକ୍ଷ୍ୟ କରିବାର କଥା । ସଂଖ୍ୟା ଧାରଣାର ପୂର୍ଣ୍ଣ ବିକାଶ ପୂର୍ବରୁ ଅନ୍ୟ ଯେଉଁସବୁ ଧାରଣାର ବିକାଶ ଘଟିଥାଏ ସେ ଧାରଣାଗୁଡ଼ିକ କେତେକ କ୍ଷେତ୍ରରେ ପିଲାଙ୍କର ସଂଖ୍ୟାଧାରଣା ବିକାଶରେ ବାଧା ସୃଷ୍ଟି କରିପାରେ । ଗୋଟିଏ ଉଦାହରଣ ଦେଲେ ଏହା ସ୍ପଷ୍ଟ ହେବ । ସଂଖ୍ୟାଧାରଣା ପୂର୍ବରୁ ପିଲା ଲମ୍ବ ବା ଦୈର୍ଘ୍ୟର ଧାରଣାଟି ଲାଭ କରିଥାଏ । ତଳ ଉପର କରି ଦୁଇ ଧାଡ଼ିରେ ଅଣ୍ଡା ରଖାଯାଉ ଏବଂ ପ୍ରତି ଧାଡ଼ିରେ ଦଶଟି ଅଣ୍ଡା ରଖାଯାଉ । ଅଣ୍ଡାଗୁଡ଼ିକ ଧାଡ଼ିରେ ଏପରି ରଖାଯାଉ ଯେପରି ଦୁଇ ଧାଡ଼ିର ଦୈର୍ଘ୍ୟ ସମାନ ରହିବ ଏବଂ ଉପର ଧାଡ଼ିର ପ୍ରତି ଅଣ୍ଡା ସିଧାରେ ତଳ ଧାଡ଼ିର ଗୋଟିଏ ଲେଖାଁ ଅଣ୍ଡା ରହିବ । ବର୍ତ୍ତମାନ ଦୁଇଧାଡ଼ିରେ ସମାନ ସଂଖ୍ୟକ ଅଣ୍ଡା ଅଛି କି କେଉଁ ଧାଡ଼ିରେ ଅଧିକ ଅଣ୍ଡା ଅଛି ? ଏପରି ପ୍ରଶ୍ନ ପଚାରିଲେ ଅଳ୍ପବୟସର ପିଲାଟି ଉତ୍ତର ଦେବ ଯେ ସମାନ ସଂଖ୍ୟକ ଅଣ୍ଡା ରହିଛି । ଅଧିକାଂଶ ପିଲା ଏପରି ଉତ୍ତର ଦେବେ । ଉତ୍ତର ପାଇସାରିଲା ପରେ ଗୋଟିଏ ଧାଡ଼ିର ଅଣ୍ଡାଗୁଡ଼ିକୁ ପାଖ ପାଖ ଲଗାଇ ଦିଆଯାଇ ଧାଡ଼ିର ଦୈର୍ଘ୍ୟ କମାଇ ଦିଆଯାଉ ଏବଂ ଅନ୍ୟ ଧାଡ଼ିର ଅଣ୍ଡାଗୁଡ଼ିକୁ ପରସ୍ପରଠାରୁ ଦୂରେଇ ନେଇ ଧାଡ଼ିର ଦୈର୍ଘ୍ୟ ବଢ଼େଇ ଦିଆଯାଉ । ପିଲାଟିର ଆଖି ସାମନାରେ ଏ ପରିବର୍ତ୍ତନ କରାଯାଇପାରେ । ଏହା କରି ସାରି ପିଲାଟିକୁ ଯଦି ପଚରାଯାଏ—କେଉଁ ଧାଡ଼ିରେ ବେଶୀ ଅଣ୍ଡା ରହିଛି, ତେବେ ସେ ଅଧିକ ଦୈର୍ଘ୍ୟ ଥିବା ଧାଡ଼ିରେ ବେଶୀ ଅଣ୍ଡା

ରହିଛି ବୋଲି ଉତ୍ତର ଦେବ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ପିଲାର ସଂଖ୍ୟା ସଂପର୍କରେ ଧାରଣା ତା'ର ପୂର୍ବ ବିକଶିତ ଦୈର୍ଘ୍ୟର ଧାରଣା ଦ୍ୱାରା ପ୍ରଭାବିତ ।

ଏଠାରେ ଶିକ୍ଷକ ବା ଅଭିଭାବକମାନଙ୍କର ଦାୟିତ୍ୱ ହେଉଛି ପିଲାକୁ ସଂଖ୍ୟା ବିଷୟରେ ଧାରଣା ଦେଲାବେଳେ ସଂଖ୍ୟାଟି ଯେପରି ଅନ୍ୟ ଧାରଣାଠାରୁ ଭିନ୍ନ ରହିବ, ସେ ଦିଗରେ ଦୃଷ୍ଟି ଦେବେ । ଅର୍ଥାତ୍ 'ତିନୋଟି'ର ଧାରଣା ଦେବା ପାଇଁ ତିନୋଟି ମାଛ, ତିନୋଟି ହାତୀ, ତିନୋଟି ଆଳୁ, ତିନୋଟି ବହି ଇତ୍ୟାଦି ଭିନ୍ନ ଜାତୀୟ ବସ୍ତୁର ଉଦାହରଣ ଦେବେ । ତିନୋଟି ଆମ୍ବକୁ ବିଭିନ୍ନ ଦୈର୍ଘ୍ୟର ଧାଡ଼ିରେ ରଖାଯାଇପାରେ, ତିନୋଟି ଆମ୍ବ ବିଭିନ୍ନ ଆକାରର ପାତ୍ରରେ ରଖାଯାଇପାରେ । ଏହିପରି ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ଦେଖାଇ ଓ ପ୍ରକୃତ ବସ୍ତୁ ନେଇ ବୁଝାଇଦେବା ଆବଶ୍ୟକ । ସଂଖ୍ୟାଗତ ଧାରଣା ଦେଲାବେଳେ ଏହିସବୁ ଦୃଷ୍ଟାନ୍ତର ଅସଂଖ୍ୟ ସମ୍ଭାବନା ଅଛି ଏବଂ ଶିକ୍ଷକ ନିଜର ବାସ୍ତବ ଅଭିଜ୍ଞତା ଅନୁସାରେ ସେ ସବୁର ପରିକଳ୍ପନା କରିପାରନ୍ତି । କିନ୍ତୁ ସଂଖ୍ୟାଗତ ଧାରଣା ଯେପରି ପାରିପାର୍ଶ୍ୱିକ ପରିବର୍ତ୍ତନରୁ ମୁକ୍ତ ରହେ ସେ ମୂଳ ନୀତିକୁ ସେ ଯେପରି ଭୁଲି ନଯାନ୍ତି ।



# ପିଲାମାନେ ଭଲ ମନ୍ଦର ବିଚାର କରନ୍ତି କିପରି ?

ପିଲା ଓ ବୟସ୍କ ମଧ୍ୟରେ କେବଳ ବୟସର ପାର୍ଥକ୍ୟ ନାହିଁ, ସେମାନଙ୍କ ଚିନ୍ତାଧାରାରେ ମଧ୍ୟ ବେଶ ବ୍ୟବଧାନ ପରିଲକ୍ଷିତ ହୁଏ । ପିତାମାତା, ଅଭିଭାବକ, ଶିକ୍ଷକ, ତଥା ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିମାନେ ପିଲାକୁ ଭଲମନ୍ଦ, ନୈତିକ ଅନୈତିକ ଓ ବାଞ୍ଛନୀୟ ଅବାଞ୍ଛନୀୟ ବ୍ୟବହାର ବୁଝାଇବାକୁ ଯାଇ ଅନେକ ସମୟରେ ବ୍ୟର୍ଥ ହୁଅନ୍ତି । ଏହାର ମୁଖ୍ୟ କାରଣ ହେଉଛି, ବହୁ ସ୍ଥଳରେ ପିଲା ଓ ବୟସ୍କ ବ୍ୟକ୍ତିର ନୈତିକ ବିକାଶର ସ୍ତରରେ ଭିନ୍ନତା ଥାଏ । ଜଣେ ବୟସ୍କ ବ୍ୟକ୍ତି ନୈତିକ ବ୍ୟବହାର କହିଲେ ଯାହା ବୁଝେ, ଜଣେ ପିଲାର ଚିନ୍ତାଧାରାଠାରୁ ତାହା ଭିନ୍ନ ହୋଇଥିଲେ ଭାବ ଆଦାନ ପ୍ରଦାନରେ ବାଧା ସୃଷ୍ଟି ହେବା ସ୍ୱାଭାବିକ । ଏହି ଦୁଇ ଗୋଷ୍ଠୀ ମଧ୍ୟରେ ବୁଝାମଣା ବୃଦ୍ଧି କରିବାକୁ ହେଲେ ପିଲାମାନଙ୍କର ନୈତିକ ବିକାଶର ମନସ୍ତାତ୍ତ୍ୱିକ ଦିଗର ଆଲୋଚନା ଅପରିହାର୍ଯ୍ୟ ।

ପିଲାମାନଙ୍କର ନୈତିକ ବିକାଶର ମନସ୍ତାତ୍ତ୍ୱିକ ଦିଗ ସମ୍ପର୍କରେ ଯେଉଁ ସମସ୍ତ ଗବେଷଣା କରାଯାଇଛି ସେ କ୍ଷେତ୍ରରେ ପିଆଜେ ଅଗ୍ରଗଣ୍ୟ । ପିଲା ମନର ବିଭିନ୍ନ ଦିଗ ସମ୍ପର୍କରେ ପିଆଜେଙ୍କ ଗବେଷଣା ଆଧୁନିକ ଯୁଗର ଏକ ବିଶିଷ୍ଟ ଅବଦାନ । ଛୋଟ ପିଲାମାନଙ୍କୁ ପର୍ଯ୍ୟବେକ୍ଷଣ କରି ପିଲାମାନଙ୍କର ଜ୍ଞାନଗତ ବିକାଶର ବିଭିନ୍ନ ଦିଗ ଉପରେ ପିଆଜେ ଆଲୋକପାତ କରିଛନ୍ତି । ବହୁ ଗବେଷକ ତାଙ୍କ ମତକୁ ଅନେକାଂଶରେ ଗ୍ରହଣ କରିଛନ୍ତି । ଏ ଦୃଷ୍ଟିରୁ ପିଲାମାନଙ୍କର ନୈତିକ ବିକାଶ ସମ୍ପର୍କରେ ପିଆଜେଙ୍କ ତଥ୍ୟ ବେଶ ତାତ୍ପର୍ଯ୍ୟପୂର୍ଣ୍ଣ ।

ତାଙ୍କ ମତରେ ପିଲାର ନୈତିକ ବିକାଶର ଦୁଇଟି ମୁଖ୍ୟ ସ୍ତର ରହିଛି । ଏ ଦୁଇଟି ସ୍ତର କ୍ରମାନ୍ୱୟରେ ଆସିଥାଏ । ବିଶ୍ୱର ସବୁ ସମାଜ ଓ ସବୁ ସଂସ୍କୃତିରେ ଏ ଦୁଇଟି ସୋପାନ ପରିଲକ୍ଷିତ ହୁଏ ।

**ପାର୍ଥିବ ନୈତିକତା :**

ପ୍ରଥମ ସ୍ତରରେ ପିଲାମାନେ ଭଲମନ୍ଦ ସମ୍ପର୍କରେ ଯେଉଁ ଧାରଣାର ବଶବର୍ତ୍ତୀ ହୁଅନ୍ତି ତାହା ବସ୍ତୁଗତ ବା ପାର୍ଥିବ ଗୁଣ ଉପରେ ଆଧାରିତ । ଅନ୍ୟର ବ୍ୟବହାର ନୈତିକ କି ଅନୈତିକ ତାହା ବିଚାର କଲାବେଳେ ବ୍ୟକ୍ତିର ଉଦ୍ଦେଶ୍ୟ ବା ମନୋଭାବକୁ ବିଚାରକୁ ନିଅନ୍ତି ନାହିଁ । ବ୍ୟକ୍ତିଟିର ବ୍ୟବହାର ଫଳରେ ବସ୍ତୁଗତଭାବେ କେତେ ପରିମାଣରେ କ୍ଷତି ହୋଇଛି ତାହା ବିଚାରକୁ ନେଇ ତାକୁ ଭଲ ବା ମନ୍ଦ ଆଖ୍ୟା ଦିଅନ୍ତି । ଗଳ୍ପ ଛଳରେ ବିଭିନ୍ନ ପ୍ରଶ୍ନ ପଚାରି ପିଲାର ଏହି ନୈତିକ ବିକାଶର ଧାରାକୁ ସ୍ପଷ୍ଟ କରାଯାଇପାରେ ।

ହୁଏତ ଏପରି ଗୋଟିଏ ପ୍ରଶ୍ନ ପିଲାକୁ ପଚରା ଯାଇପାରେ ଜଣେ ଭଦ୍ରମହିଳା ଅତିଥି ସତ୍କାର ପାଇଁ ଟେବୁଲ ଉପରେ ଖାଦ୍ୟପେୟର ଆୟୋଜନ କରୁଥିଲେ । ତାଙ୍କର ଦୁଇଟିଯାକ ପୁଅ ତାଙ୍କୁ ସାହାଯ୍ୟ କରିବାକୁ ଗଲେ । ପ୍ରଥମ ପୁଅଟି ଗ୍ଲାସରେ ପାଣି ଆଣୁଥିବାବେଳେ ତାର ଗୋଡ଼ ଖସିଗଲା ଏବଂ ଆଠଟି ଗ୍ଲାସ ଭାଙ୍ଗିଗଲା । ଦ୍ୱିତୀୟ ପୁଅଟି ଏହା ଦେଖି ରାଗିଗଲା ଏବଂ ରାଗରେ ଗୋଟିଏ ଗ୍ଲାସ ପକାଇ ଭାଙ୍ଗି ଦେଲା । ଏମାନଙ୍କ ମଧ୍ୟରୁ ବେଶୀ ଦୁଷ୍ଟ କିଏ ?

ନିଃସନ୍ଦେହର କୁହାଯିବ ଯେ ଦ୍ୱିତୀୟ ପିଲାଟି ଅଧିକ ଦୁଷ୍ଟ, କାରଣ ମନର କ୍ରୋଧ ପ୍ରକାଶ କରିଛି । କିନ୍ତୁ ଅଳ୍ପ ବୟସର ପିଲାମାନେ କହିବେ ଯେ ପ୍ରଥମ ପିଲାଟି ଦୁଷ୍ଟ । କାରଣ ପଚାରିଲେ ସେମାନେ ଉତ୍ତର ଦେବେ—ଦ୍ୱିତୀୟ ପିଲାଟି ମାତ୍ର ଗୋଟିଏ ଗ୍ଲାସ ଭାଙ୍ଗିଛି, କିନ୍ତୁ ପ୍ରଥମ ପିଲାଟି ଆଠୋଟି ଗ୍ଲାସ ଭାଙ୍ଗିଛି । ଲକ୍ଷ୍ୟ କରିବାର କଥା ଯେ, ଅଳ୍ପ ବୟସର ପିଲାମାନେ ସଂପୃକ୍ତ ବ୍ୟକ୍ତିମାନଙ୍କର ଅନ୍ତର୍ନିହିତ ମନୋଭାବକୁ ବିଚାରକୁ ନ ନେଇ କ୍ଷତିର ପରିମାଣକୁ ଭିତ୍ତି କରି ଭଲ ମନ୍ଦର ବିଚାର କରନ୍ତି ।

ସେହିପରି ଆଉ ଗୋଟିଏ ପ୍ରଶ୍ନ ଗଳ୍ପ ଛଳରେ ପଚରା ଯାଇପାରେ । ଗୋଟିଏ ପରିବାରରେ ବାପା ଅଫିସ ଚାଲିଗଲା ପରେ ତାଙ୍କର ଦୁଇଟି ପିଲା ବାପାଙ୍କ ପଢ଼ା ଟେବୁଲ ପାଖରେ ଖେଳିବାକୁ ଲାଗିଲେ । ପ୍ରଥମ ପିଲାଟି ଦେଖିଲା ଯେ ବାପାଙ୍କ କଲମରେ କାଳି ନାହିଁ । ବାପାଙ୍କୁ ସାହାଯ୍ୟ କରିବ ବୋଲି କଲମରେ କାଳି ପୂରାଉ ପୂରାଉ ଢାଳି ହୋଇଗଲା ଏବଂ ସାରା ଟେବୁଲ କ୍ଲଥଟିରେ କାଳିର ଦାଗ ହୋଇଗଲା । ଦ୍ୱିତୀୟ ପିଲାଟି ଟେବୁଲ ଉପରେ ଥିବା ଅନ୍ୟାନ୍ୟ ଜିନିଷଗୁଡ଼ିକ ଓଲଟ ପାଲଟ କରି ଖେଳିବାକୁ ଆରମ୍ଭ କଲା ଏବଂ ଚେୟାରର କୁଶନ ଉପରେ ଛୋଟ ଦାଗଟିଏ କଲା । ଏ ଦୁଇଜଣ ପିଲାଙ୍କ ମଧ୍ୟରୁ କିଏ ଅଧିକ ଦୁଷ୍ଟ ? ଏଠାରେ ମଧ୍ୟ ଅଳ୍ପ ବୟସର ପିଲାମାନେ ଉତ୍ତର ଦେବେ ଯେ ପ୍ରଥମ ପିଲାଟି ଅଧିକ ଦୁଷ୍ଟ, କାରଣ ସେ ସାରା ଟେବୁଲକ୍ଲଥଟି ଦାଗ କରିଛି ମାତ ଦ୍ୱିତୀୟ ପିଲାଟି କୁଶନରେ ଛୋଟ ଦାଗଟିଏ କରିଛି । ଏଠାରେ ମଧ୍ୟ କ୍ଷତିର ପରିମାଣ ନେଇ ଭଲ ମନ୍ଦର ବିଚାର କରାଯାଇଛି ।

ଆଉ ଗୋଟିଏ କ୍ଷେତ୍ରରେ ମିଛ ସତ ସମ୍ପର୍କରେ ପିଲାର ଧାରଣାକୁ ପରୀକ୍ଷା କରାଯାଇପାରେ । ତାକୁ ଯଦି ପଚରାଯାଏ ସେ ସ୍କୁଲରୁ ଫେରି ଗୋଟିଏ ପିଲା କ୍ଲାସ ପରୀକ୍ଷାରେ କମ୍ ନମ୍ବର ରଖିଥିଲେ ମଧ୍ୟ ବେଶି ନମ୍ବର ରଖିଛି ବୋଲି ମା'କୁ କହିଲା । ଅନ୍ୟ ଗୋଟିଏ ପିଲା ସ୍କୁଲରୁ ଫେରୁଥିବା ସମୟରେ କୁକୁରଟିଏ ଦେଖି ବାଟରେ ହାତୀ ଦେଖିଛି ବୋଲି ମା'କୁ କହିଲା । ଏମାନଙ୍କ ମଧ୍ୟରୁ କିଏ

ବେଶି ମିଛ କହିଲା । ଅଳ୍ପ ବୟସର ପିଲାମାନେ ସାଧାରଣତଃ ଉତ୍ତର ଦିଅନ୍ତି ଯେ, ଦ୍ୱିତୀୟ ପିଲାଟି ବେଶି ମିଛ କହିଛି, କାରଣ କୁକୁର ଓ ହାତୀର ଶରୀର ଆକୃତିରେ ବେଶି ଫରକ ଅଛି । ମୂଳତଃ ଆରମ୍ଭରେ ପିଲାମାନଙ୍କର ଭଲ ମନ୍ଦର ଧାରଣା ବସ୍ତୁର ବାହ୍ୟିକ ପ୍ରକୃତି ଏବଂ ପରିମାଣ ଉପରେ ନିର୍ଭର କରିଥାଏ । ଅନ୍ୟର ମନୋଭାବ, ଉଦ୍ଦେଶ୍ୟ ଓ ଅଭିପ୍ରେରଣା ଇତ୍ୟାଦି ବୁଝିଲା ଭଳି ସାମର୍ଥ୍ୟ ଛୋଟ ପିଲାର ନଥାଏ । ବୟସର ବୃଦ୍ଧି ସଙ୍ଗେ ଅନ୍ୟର ଅଭିପ୍ରାୟକୁ ବୁଝେ ଏବଂ ନୈତିକ ବିକାଶର ଦ୍ୱିତୀୟ ସ୍ତରରେ ପାଦ ଦିଏ ।

ବ୍ୟକ୍ତିନିଷ୍ଠ ନୈତିକତା :

ନୈତିକ ବିକାଶର ପରବର୍ତ୍ତୀ ସ୍ତରଟି ହେଉଛି ବ୍ୟକ୍ତିନିଷ୍ଠ ନୈତିକତା । ବୟସ୍କମାନଙ୍କ ପରି ବଡ଼ ପିଲାମାନେ ସଂପୃକ୍ତ ବ୍ୟକ୍ତିର ମନୋଭାବ ଓ ଉଦ୍ଦେଶ୍ୟକୁ ବିଚାରକୁ ନେଇ ତା' ବ୍ୟବହାର ନୈତିକ କି ଅନୈତିକ ତାହା ସ୍ଥିର କରନ୍ତି । ଛୋଟ ବୟସର ପିଲାମାନଙ୍କ ପରି ବସ୍ତୁର ପରିମାଣ ଦ୍ୱାରା ପ୍ରଭାବିତ ହୁଅନ୍ତି ନାହିଁ । ଏ ବୟସର ପିଲାମାନଙ୍କୁ ଉପରୋକ୍ତ ଗଳ୍ପଗୁଡ଼ିକ ଦେଲେ ସେମାନେ କୁଅଭିପ୍ରାୟ ଥିବା ବ୍ୟକ୍ତିକୁ ଦୋଷ ଦେବେ । ପ୍ରଥମ ଓ ଦ୍ୱିତୀୟ ଗଳ୍ପର ଦ୍ୱିତୀୟ ପିଲାକୁ ଖରାପ କହିବେ, କାରଣ ଏମାନଙ୍କର ଉଦ୍ଦେଶ୍ୟ ଭଲ ନଥିଲା ।

ପିଆଜେଙ୍କ' ପରି କୋଲ୍‌ବର୍ଗ ନାମକ ଜଣେ ପ୍ରଖ୍ୟାତ ମନୋବିଜ୍ଞାନୀ ପିଲାଙ୍କର ଏ ଦିଗଟି ଉପରେ ଆଲୋକପାତ କରିଛନ୍ତି । ପିଲାମାନଙ୍କର ନୈତିକ ବିକାଶର ସ୍ତରକୁ ବୁଝାଇବାକୁ ଯାଇ ସେ ପୃଥକ ପରିଭାଷା ବ୍ୟବହାର କରିଥିଲେ ହେଁ, ପିଆଜେ ଓ କୋଲବର୍ଗଙ୍କ ଚିନ୍ତାଧାରାରେ ବହୁ ମେଳ ଦେଖାଯାଏ । କୋଲବର୍ଗ ପିଲାମାନଙ୍କ ନୈତିକ ବିକାଶକୁ ତିନୋଟି କ୍ରମବିକଶିତ ସ୍ତରରେ ବିଭକ୍ତ କରିଛନ୍ତି ।

ପ୍ରାକ୍ ଗତାନୁଗତିକତା ସ୍ତର :

ଏ ବୟସରେ ଖୁବ ଛୋଟ ବୟସର ପିଲାମାନେ ଭଲ ମନ୍ଦ ନୈତିକ ଅନୈତିକ ବିଚାର କଲାବେଳେ ଦେଖନ୍ତି କେଉଁ ବ୍ୟବହାର ଆଦୃତ ହେଉଛି ଓ କେଉଁ ବ୍ୟବହାର ତିରସ୍କୃତ ହେଉଛି । ଯେଉଁ ବ୍ୟବହାର ଦେଖାଇଲେ ପ୍ରଶଂସା ବା ପୁରସ୍କାର ମିଳେ ତାକୁ ସେମାନେ ଭଲ ବା ନୈତିକ ସ୍ତର ବୋଲି ଭାବନ୍ତି । ଯେଉଁ ବ୍ୟବହାର ଦେଖାଇଲେ ଗାଳି ବା ଦଣ୍ଡ ମିଳେ ତାକୁ ସେମାନେ ଖରାପ ଓ ଅନୈତିକ ବ୍ୟବହାର ବୋଲି ଭାବନ୍ତି । ଅନ୍ୟ ଭାଷାରେ କହିଲେ ବାହ୍ୟିକ ଲାଭ କ୍ଷତିର ପରିମାଣ ଦେଖି ସେମାନେ ଭଲମନ୍ଦର ଧାରଣା କରନ୍ତି । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ପିଲାମାନେ ଏହି ପ୍ରାକ୍ ଗତାନୁଗତିକ ସ୍ତର ଅତିକ୍ରମ କର ଗତାନୁଗତିକ ସ୍ତରରେ ପାଦ ଦିଅନ୍ତି ।

**ଗତାନୁଗତିକ ସ୍ତର :**

ଏ ସ୍ତରରେ ପିଲାମାନେ ସମାଜର ଭଲମନ୍ଦ ବିଚାର ଦ୍ୱାରା ପ୍ରଭାବିତ ହୁଅନ୍ତି । ନିଜର ଗୋଷ୍ଠୀ ବା ସମାଜ ଯାହା ଭଲ କହେ ତାକୁ ନୈତିକ ଓ ବାଞ୍ଛନୀୟ ବ୍ୟବହାର ବୋଲି ବିଚାର କରନ୍ତି । ଶୃଙ୍ଖଳା ରକ୍ଷା ଦିଗରେ ପିଲାର ଇଚ୍ଛା ଥାଏ । ଏହି ଗତାନୁଗତିକ ସ୍ତରରେ ସମାଜର ପ୍ରଚଳିତ ମାନଦଣ୍ଡ ନେଇ ନୈତିକତାର ବିଚାର କରାଯାଏ । କେତେକ ସ୍ଥଳରେ ବୟସ୍କ ବ୍ୟକ୍ତିମାନେ ମଧ୍ୟ ଏହି ସ୍ତରରେ ରହି ଯାଇଥାଆନ୍ତି ।

**ନୀତିବାଦୀ ସ୍ତର :**

ଏ ସ୍ତରରେ ନୈତିକ ମୂଲ୍ୟବୋଧର ବିକାଶ ଘଟେ । ନୈତିକ ଭାବଧାରା ଯେ ଦେଶ କାଳ ସୀମା ଗୋଷ୍ଠୀ ବିବେଚନାର ଊର୍ଦ୍ଧ୍ୱରେ ଏ ଚିନ୍ତା ଆସେ । ନୀତି ଅନୀତିର ବିବେଚନା କର୍ତ୍ତୃପକ୍ଷ ଓ ଉଚ୍ଚ କର୍ମକର୍ତ୍ତାଙ୍କ ବିଚାରଠାରୁ ମୁକ୍ତ, ଏ ଉପଲବ୍ଧି ଆସେ । ଏ ସ୍ତରରେ ସେଥିପାଇଁ କେତେକ ବଡ଼ ପିଲା ଓ ବୟସ୍କ ବ୍ୟକ୍ତି ଅନ୍ୟମାନଙ୍କଠାରୁ ନିଜକୁ ସାମାନ୍ୟ ଦୂରେଇ ନିଅନ୍ତି ଏବଂ ନିଜର ବ୍ୟକ୍ତିଗତ ଆଦର୍ଶ ତୋଳି ମଧ୍ୟ ସେ ଦିଗରେ ପରିଚାଳିତ ହୁଅନ୍ତି ।

ଗୋଟିଏ ଉଦାହରଣ ଦେଇ ତିନୋଟି ସ୍ତରକୁ ବୁଝାଯାଇପାରେ । ମନେ କରାଯାଉ ଯେ, ଗଳ୍ପ ଛଳରେ ପିଲାମାନଙ୍କୁ ଗୋଟିଏ ପ୍ରଶ୍ନ ପଚରାଗଲା— ଅଶୋକର ସ୍ତ୍ରୀ ରୋଗଗ୍ରସ୍ତା । ଅଶୋକ ନିଜ ସ୍ତ୍ରୀର ଚିକିତ୍ସା ପାଇଁ ଡାକ୍ତର ପାଖକୁ ଗଲା । ଡାକ୍ତର ଔଷଧ ଲେଖିଲା ପରେ ଔଷଧଟି କେଉଁଠି ମିଳିଲା ନାହିଁ । କେବଳ ଗୋଟିଏ ଦୋକାନରେ ସେ ଔଷଧ ଥିଲା । ଔଷଧର ପ୍ରକୃତ ଦାମ ଯେତିକି ଦୋକାନୀ ତା'ଠାରୁ ଦଶଗୁଣ ଅଧିକ ପଇସା ମାଗିଲା । ଅଶୋକ ପାଖରେ ପଇସା ନ ଥିଲା । ତେଣୁ ସେ ଫେରିଆସିଲା ଏବଂ ରାତିରେ ଯାଇ ଚୋରି କରି ସେ ଔଷଧ ଆଣିଲା । ପରଦିନ ପୋଲିସ ତାକୁ ଗିରଫ କରି କୋର୍ଟକୁ ପଠାଇଲା । ଅଶୋକ ଭଲ କଲା କି ଖରାପ କଲା ? ଏହା ପଚରା ଯାଇପାରେ । ପୁନଶ୍ଚ କାହିଁକି ଭଲ ବା କାହିଁକି ଖରାପ—ତାହା ପଚାରିବାକୁ ହେବ । ଦେଖାଯିବ ଯେ ବିଭିନ୍ନ ବୟସର ପିଲାମାନେ ଭିନ୍ନ ଉତ୍ତର ଦେଉଛନ୍ତି । ପିଲାମାନେ ଅଶୋକର କାର୍ଯ୍ୟକୁ ଭଲ କି ଖରାପ କହୁଛନ୍ତି, ତା'ଠାରୁ ବେଶି ତାତ୍ପର୍ଯ୍ୟପୂର୍ଣ୍ଣ ହେଉଛି ସେମାନେ ଯେଉଁ କାରଣ ଉଲ୍ଲେଖ କରୁଛନ୍ତି ।

ଅଳ୍ପ ବୟସର ପିଲାମାନେ ଉତ୍ତର ଦେବେ ଯେ ଅଶୋକ ଖରାପ କରିଛି, କାରଣ ସେ ଦଣ୍ଡ ପାଇଲା । ଏପରି ବାହ୍ୟିକ କ୍ଷତିର କାରଣ ଦେଇ ଏ ବୟସର

ପିଲାମାନେ ନୈତିକ ଅନୈତିକ କାର୍ଯ୍ୟର ବିଚାର କରନ୍ତି । ଏହା ପ୍ରାକ୍ ଗତାନୁଗତିକତାର ସ୍ତର । ପିଲାଟି ଟିକେ ବଡ଼ ହୋଇଥିଲେ ଉତ୍ତର ଦେବ ଯେ ଅଶୋକ ଖରାପ କାମ କରିଛି, କାରଣ ଚୋରି କିରବା ଏକ ସମାଜବିରୋଧୀ କାର୍ଯ୍ୟ । ଏହା ଗତାନୁଗତିକ ସ୍ତରର ଚିନ୍ତା । ମାନସିକ ପରିପକ୍ୱତା ଲାଭ କରିଥିବା କେତେକ ପିଲା ଓ ଅନେକ ବୟସ୍କ ବ୍ୟକ୍ତି ଅଶୋକର କାର୍ଯ୍ୟକୁ ଖରାପ କହିବେ ନୈତିକ ମାନଦଣ୍ଡର କାରଣ ଉଲ୍ଲେଖ କରି । ସେମାନେ କହିପାରନ୍ତି ଯେ ସ୍ଥାନ, କାଳ, ପାତ୍ର ନିର୍ବିଶେଷରେ ଚୋରି କାର୍ଯ୍ୟ ଅନୈତିକ । ଏହା ନୈତିକ ବିକାଶର ତୃତୀୟ ସ୍ତର । ଫଳତଃ ଏକ କ୍ରମ ବିକାଶର ସ୍ତର ଦେଇ ପିଲାର ଭଲ ମନ୍ଦର ବିଚାର ଗତି କରେ ।

ପିଆଜେ ଓ କୋଲବର୍ଗ ମତ ଦିଅନ୍ତି ଯେ, ଏହି କ୍ରମବିକାଶର ସ୍ତରଗୁଡ଼ିକ କ୍ରମାନ୍ୱୟରେ ଆସିଥାଏ । ପାର୍ଥିବ ସ୍ତର ପୂର୍ବରୁ ବ୍ୟକ୍ତିନିଷ୍ଠ ସ୍ତର କିମ୍ବା ଗତାନୁଗତିକ ସ୍ତର ପୂର୍ବରୁ ନୀତିବାଦୀ ସ୍ତର ଆସି ନଥାଏ । ଅବଶ୍ୟ ପିଲାର ପାରିପାର୍ଶ୍ୱିକ ଅବସ୍ଥା ଉପରେ ନିର୍ଭର କରି ସ୍ତରଗୁଡ଼ିକର ବିକାଶ ଦ୍ରୁତ ବା ମନ୍ଥର ଗତିରେ ଯାଇପାରେ । କିନ୍ତୁ କ୍ରମାନ୍ୱୟତା ଅତୁଟ ରହେ । କେତେକ ଗୋଷ୍ଠୀ ବା ସଂପ୍ରଦାୟର ବୟସ୍କମାନେ ଗତାନୁଗତିକ ସ୍ତର ଅତିକ୍ରମ କରି ନପାରି ଏ ସ୍ତରରେ ସବୁଦିନ ପାଇଁ ରହି ଯାଇଥାଆନ୍ତି । ମୋଟ ଉପରେ ପିଲାମାନଙ୍କର ନୈତିକ ବିକାଶ ଧାରାର ଯେଉଁ ବୈଶିଷ୍ଟ୍ୟ ରହିଛି ତାହା ବୁଝିବାକୁ ହେବ । ସେମାନଙ୍କ ମାନସିକ ଧାରା ନ ବୁଝିଲେ ଅନ୍ୟାନ୍ୟ ବିକାଶକୁ ତ୍ୱରାନ୍ୱିତ କରିବା ସମ୍ଭବ ହେବ ନାହିଁ । ଏ ଦୃଷ୍ଟିରୁ ମନସ୍ତାତ୍ତ୍ୱିକ ପର୍ଯ୍ୟାଲୋଚନା ଏକ ମହାର୍ଘ ସମ୍ପଦ ।

## କେଉଁ ବାଟରେ ଯିବେ ?

୧. ଶିଶୁମାନେ ଅନ୍ୟର ଅନ୍ତର୍ନିହିତ ଉଦ୍ଦେଶ୍ୟ ଓ ମନୋଭାବ ଜାଣି ଭଲମନ୍ଦର ଧାରଣା କରିବା ପୂର୍ବରୁ ବାହ୍ୟିକ ଲାଭକ୍ଷତିର ପରିମାଣ ଦେଖି ଭଲମନ୍ଦର ଧାରଣା କରନ୍ତି ।

୨. ଏ ଦୃଷ୍ଟିରୁ ଅଳ୍ପବୟସ ଶିଶୁର ତ୍ରୁଟିପୂର୍ଣ୍ଣ ଭଲମନ୍ଦ ବିଚାରପ୍ରତି ଅଯଥା କ୍ରୋଧପ୍ରକାଶ କରନ୍ତୁ ନାହିଁ ।



# କର୍ମଜୀବୀ ମହିଳା ଓ ଶିଶୁର ଯତ୍ନ

ମନୋବୈଜ୍ଞାନିକ ଗବେଷଣାରୁ ଜଣାଯାଇଛି ଯେ, କର୍ମଜୀବୀ ମହିଳା ଶିଶୁ ପାଇଁ କେତେ ବେଶୀ ସମୟ ଦେଉଛି ତାହା ଯେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ, ତାତ୍ପର୍ଯ୍ୟପୂର୍ଣ୍ଣ ହେଉଛି ସେ ସମୟରେ କରାଯାଉଥିବା କାର୍ଯ୍ୟ ଓ ତା'ର ଗୁଣାତ୍ମକ ଦିଗ । ଶିଶୁର ବିକାଶ ପାଇଁ ମା' ସବୁବେଳେ ଶିଶୁର ପାଖେ ପାଖେ ରହିବାର ଆବଶ୍ୟକତା ନାହିଁ । ମା' ଶିଶୁ ସହିତ ଯେଉଁ ସମୟ କାଟୁଛି, ସେ ସମୟ ଉପଯୁକ୍ତ ଭାବରେ ବିନିଯୁକ୍ତ ହେବା ଆବଶ୍ୟକ ।

ପ୍ରଥମତଃ, ମା' ହିସାବରେ ସେ ଶିଶୁର ମୁଖ୍ୟ ଚାହିଦା ସବୁ ଜାଣିଥିବେ, ପୁଣି ଦାୟିତ୍ୱଶୀଳ ଭାବରେ ଚାହିଦା ଉପରେ ପଦକ୍ଷେପ ନେଉଥିବେ । ଏହାର ଅର୍ଥ ନୁହେଁ ଯେ, ଶିଶୁଟି କାନ୍ଦିଲା ମାତ୍ରେ ତାକୁ ତା'ର ଦରକାରୀ ଜିନିଷ ଦେଇଦେବେ । ଶିଶୁ ନିଜର ଚାହିଦା ପ୍ରକାଶ କରିବା ପାଇଁ ବିଭିନ୍ନ ମାଧ୍ୟମ ପ୍ରୟୋଗ କରେ । କେତେବେଳେ ସେ କାନ୍ଦେ । କଥା କହିବା ଶିଖିବା ପରେ ଭାଷା ମାଧ୍ୟମରେ ଚାହିଦା ଜଣାଏ । ଶିଶୁର ସଂକେତ ସବୁ ଜନନୀ ବୁଝିପାରିବା ଆବଶ୍ୟକ । ସଂକେତଗୁଡ଼ିକ ବୁଝି ସମ୍ବେଦନଶୀଳ ଓ ବିଚାରଶୀଳ ହୋଇ ସେସବୁ ପୂରଣ କରିବେ । ମୋଟ ଉପରେ ଦାୟିତ୍ୱଶୀଳ ଚାହିଦା ପୂରଣ ମାଧ୍ୟମରେ ସେ ସମୟର ସଦୁପଯୋଗ କରିଥାଏ ।



(ଶିଶୁ ସହିତ ଏକ ଅନ୍ତରଙ୍ଗ ମୁହୂର୍ତ୍ତ)

ଦ୍ୱିତୀୟତଃ, କର୍ମଜୀବୀ ମହିଳା ଘରେ ଥିବା ସମୟରେ ସ୍ପଷ୍ଟ ଓ ନିର୍ଭୁଲ ଭାବରେ ସୂଚନା ଦେବେ ଯେ, ଶିଶୁର କାର୍ଯ୍ୟକଳାପରେ ତାଙ୍କର ଗଭୀର ଆଗ୍ରହ ରହିଛି । ମା' ନିଜର ଭାବଭଙ୍ଗୀ ମାଧ୍ୟମରେ ଏବଂ କଥୋପକଥନ ମାଧ୍ୟମରେ ନିଜର ଆଗ୍ରହ ଓ ଆନ୍ତରିକତା ଦର୍ଶାଇବେ । କର୍ମରୁ ଫେରିଲା ପରେ ଶିଶୁକୁ ପାଖକୁ ଡାକି ଏବଂ କୋଳେଇ ନେଇ ଏପରି ସବୁ ପ୍ରଶ୍ନ ପଚରାଯାଇ ପାରେ–"ଆଜି ଖାଇବା କେମିତି ଲାଗିଲା ? ଆଜି କେତେ ଖେଳିଲୁ ? ଆଉ କିଏ ସବୁ ସାଙ୍ଗ ତୋ ପାଖକୁ ଆସିଥିଲେ ?" ଏପରି ସବୁ ପ୍ରଶ୍ନ ପଚାରିଲା ବେଳେ ମନେ ରଖିବାକୁ ହେବ ଯେ, କେବଳ ଘଟଣା ଜାଣିବା ପାଇଁ ଶିଶୁକୁ ପ୍ରଶ୍ନ ପଚରା ଯାଇନାହିଁ । ଶିଶୁଟି କେତେ ମଜା କେତେ ଆନନ୍ଦ ପାଇଛି, ତାହା ମା' ଜାଣିବା ପାଇଁ ବ୍ୟଗ୍ର ବୋଲି ଶିଶୁ ଅନୁଭବ କରିବା ଉଚିତ । ସେହିପରି ଅବସର ସମୟରେ ଶିଶୁ ପାଖରେ ବସି ଗପ କହିବା ଏବଂ ଶିଶୁ ମୁଖରୁ ତା'ର କଥା ଶୁଣିବା ଖୁବ୍ ଭଲ ପ୍ରଭାବ ସୃଷ୍ଟି କରେ ।

ତୃତୀୟତଃ, କର୍ମଜୀବୀ ମହିଳା କର୍ମ ସଂସ୍ଥାରୁ ଫେରିବା ସମୟରେ କ୍ଳାନ୍ତିର ସମ୍ଭାବନା ଥାଏ । କାର୍ଯ୍ୟକ୍ଷେତ୍ରରେ କୌଣସି ଅପ୍ରୀତିକର ଘଟଣାର ଅବଶିଷ୍ଟାଂଶ ମଧ୍ୟ ମନରେ ରହିଥାଇପାରେ । ଏହାର କୁପ୍ରଭାବରେ ମହିଳାଙ୍କର ଧୈର୍ଯ୍ୟଚ୍ୟୁତିରୁ ଅସନ୍ତୋଷ, ଏପରିକି ଶିଶୁପ୍ରତି ଶାସ୍ତିବିଧାନ ମଧ୍ୟ ପ୍ରକାଶ ପାଇପାରେ । କର୍ମଜୀବୀ ମହିଳାଙ୍କୁ ଏ ଦିଗ ପ୍ରତି ସତର୍କ ଦୃଷ୍ଟି ଦେବାକୁ ହେବ । ନିଜର କର୍ତ୍ତୃପକ୍ଷଙ୍କ ପ୍ରତି ରାଗ କିମ୍ବା ନିଜର ସ୍ୱାମୀଙ୍କ ପ୍ରତି ରାଗକୁ ପ୍ରକାଶ କରି ନପାରି ସେ ହୁଏତ ଶିଶୁ ଉପରେ ରାଗ ଦେଖାଇ ପାରନ୍ତି । ଏହା ଏକ ମାନବୀୟ ଦୁର୍ବଳତା । ସଚେତନଶୀଳ ଭାବରେ ମହିଳାମାନେ ସତର୍କତା ଅବଲମ୍ବନ କରି ଏହା ଏଡ଼ାଇ ଦେଇପାରିବେ । ମୋଟ ଉପରେ ଶିଶୁ ସହିତ ପାରିସ୍ପରିକ କ୍ରିୟା ପ୍ରୀତିପ୍ରଦ, ସୁଖପ୍ରଦ ଓ ଶିକ୍ଷଣୀୟ ହୋଇପାରିଲେ ଅନୁପସ୍ଥିତିର କୁପ୍ରଭାବ ଏଡ଼ାଇ ଦିଆଯାଇପାରିବ ।

**ଅନୁପସ୍ଥିତିକାଳୀନ ପରିବେଶ :**

କର୍ମଜୀବୀ ମହିଳା ପରିବାରରେ ଅନୁପସ୍ଥିତ ଥିବା ସମୟରେ ଶିଶୁ କିପରି ପରିବେଶରେ ରହୁଛି, ତାହା ବେଶ୍ ଗୁରୁତ୍ୱପୂର୍ଣ୍ଣ । କର୍ମଜୀବୀ ମହିଳା ଜଣକ କର୍ମସଂସ୍ଥାକୁ ଚାଲିଗଲା ପରେ ଶିଶୁଟି ଜେଜେମା', ଜେଜେବାପା କିମ୍ବା ସେହିପରି ଦାୟିତ୍ୱସମ୍ପନ୍ନ ବ୍ୟକ୍ତିଙ୍କ ତତ୍ତ୍ୱାବଧାନରେ ରହୁଥିଲେ କ୍ଷତିର ସମ୍ଭାବନା ନାହିଁ । ମାଉସୀ ପିଉସୀ ଏବଂ ଅନ୍ୟ ସବୁ ବୟସ୍କମାନେ ମଧ୍ୟ ଶିଶୁ ସହିତ ସ୍ନେହଶୀଳ ସମ୍ପର୍କ ରଖିପାରିବେ । ଏପରି ସାମାଜିକ ସମ୍ପର୍କର ପ୍ରାଚୁର୍ଯ୍ୟ ଥିଲେ ଶିଶୁ ବିକାଶରେ ବିଶେଷ ବାଧା ସୃଷ୍ଟି ହେବ ନାହିଁ ।

ଆଧୁନିକ ଯୁଗରେ ପରିବାରରେ ରୂପରେଖ ପରିବର୍ତ୍ତିତ ହେଉଥିବାରୁ ବହୁ ସମୟରେ ଯତ୍ନକେନ୍ଦ୍ରରେ ଛାଡ଼ି ମା'ମାନେ କର୍ମସଂସ୍ଥାକୁ ଯାଉଛନ୍ତି । ଏହା ନିଶ୍ଚିତ ଯେ, ଏପରି ସବୁ କେନ୍ଦ୍ରମାନ ସୁପରିଚାଳିତ ହୋଇଥିବା ଆବଶ୍ୟକ । ଏହା ବ୍ୟତୀତ ଏହା ଗୁରୁତ୍ୱପୂର୍ଣ୍ଣ ଯେ, ଏପରି ସବୁ କେନ୍ଦ୍ରର ଯତ୍ନକାରୀମାନେ ଘନ ଘନ ବଦଳୁ ନଥିବେ । ପ୍ରତିଟି ଯତ୍ନକାରୀ ଅଳ୍ପ ସଂଖ୍ୟକ ଶିଶୁର ଯତ୍ନ ନେବ ଏବଂ ସେ ଦୀର୍ଘ ଦିନ କାର୍ଯ୍ୟ କରିବା ଫଳରେ ପୃଥକ୍ ପୃଥକ୍ ଭାବରେ ପ୍ରତିଟି ଶିଶୁର ସ୍ୱଭାବ ଚାହିଦା ଏବଂ ସ୍ୱତନ୍ତ୍ରତା ପ୍ରତି ଧ୍ୟାନଶୀଳ ହୋଇପାରିବ । ଏ ଦିଗଟି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ଦିଗ ।

ପରିବାର ବାହାରେ ଶିଶୁ ପାଇଁ ଭାବପୂର୍ଣ୍ଣ ଏକ ଛୋଟକାଟିଆ ପରିବାର ଯୋଗାଇବାର ସମ୍ଭାବନା ଏ ବ୍ୟବସ୍ଥାର ମୁଖ୍ୟ ଉଦ୍ଦେଶ୍ୟ । ଏପରି ଯତ୍ନକେନ୍ଦ୍ରରେ କେବଳ ଯତ୍ନକାରୀ ସ୍ଥାୟୀ ଓ ସମ୍ବେଦନଶୀଳ ହେଲେ ସବୁ ସମସ୍ୟା ସମାଧାନ ହେବ ନାହିଁ । ଏହି କେନ୍ଦ୍ର ସହିତ ମା'ର ମଧ୍ୟ ଏକ ପ୍ରତ୍ୟକ୍ଷ ଓ ନିବିଡ଼ ସମ୍ପର୍କ ରହିବା ଉଚିତ୍ । ଇଟାଲୀର ରେଗିଓ ନାମକ ସହରରେ ଶିଶୁମାନଙ୍କ ଉପରେ ଏ ଧରଣର ଗବେଷଣା କରାଯାଇ ପ୍ରମାଣ କରାଯାଇଛି ଯେ, ମା' ପୂର୍ଣ୍ଣମାତ୍ରାରେ କର୍ମଜୀବୀ ହୋଇଥିଲେ ଉନ୍ନତମାନର ବିକଳ୍ପ ବ୍ୟବସ୍ଥା ଶିଶୁ ବିକାଶରେ ସହାୟକ ହେବ । ଆଲୋଚନାରୁ ବୁଝିବାକୁ ହେବ ନାହିଁ ଯେ, କର୍ମଜୀବୀ ମହିଳାମାନଙ୍କର ଶିଶୁ ବିକାଶ ସମ୍ପର୍କୀୟ କୌଣସି ସମସ୍ୟା ନାହିଁ । ମହିଳାଙ୍କ ଅନୁପସ୍ଥିତି ନିଶ୍ଚିତ ଭାବରେ କିଛି ଜଟିଳତା ସୃଷ୍ଟି କରିବ । କିନ୍ତୁ କର୍ମଜୀବୀ ମହିଳା ଶିଶୁଙ୍କୁ ଜନ୍ମକାଳୀନ ଓ ଶୈଶବକାଳୀନ ସ୍ପର୍ଶାନୁଭୂତି ମିଶ୍ରିତ ଅନୁରାଗ ତା'ର କାର୍ଯ୍ୟ କଲା ପରେ ଆଗ୍ରହ ଓ ଆନ୍ତରିକତା ପ୍ରଦର୍ଶନ ଏବଂ ଅନୁପସ୍ଥିତ ସମୟରେ ଉନ୍ନତ ବିକଳ୍ପର ଉପଯୋଗ କରାଇ ସମସ୍ୟାର ସମାଧାନ କରିପାରିବେ । ଶିଶୁ ସହିତ ଏକାଠି ରହିବା ସମୟରେ ଗୁଣାତ୍ମକ ଅଭିବୃଦ୍ଧି ଦିଗରେ ଧ୍ୟାନଶୀଳ ହେବା ବେଶୀ ସହାୟକ ହେବ ।

**ଜନ୍ମକାଳୀନ ଓ ଶୈଶବକାଳୀନ ସ୍ପର୍ଶାନୁଭୂତି :**

ଅନେକଙ୍କ ଧାରଣା ଯେ, ଶିଶୁ ତା'ର ମା'କୁ ଭଲ ପାଇବା ମୂଳରେ ମା'ର ଖାଦ୍ୟଦାତ୍ରୀର ଭୂମିକା ନିବିଡ଼ । ଏହା ସତ୍ୟ ଯେ, ମା' ଶିଶୁର କ୍ଷୁଧା ସମୟରେ ଖାଦ୍ୟ ଦିଏ, ତୃଷା ସମୟରେ ପାନୀୟ ଦିଏ, ଶୀତବେଳେ ବସ୍ତ୍ର ଦିଏ । ଶିଶୁର ଅତ୍ୟାବଶ୍ୟକ ଚାହିଦା ସବୁ ଜନନୀ ପୂରଣ କରେ । ଏସବୁ ଚାହିଦା ପୂରଣ ଶିଶୁ ଓ ମା' ମଧ୍ୟରେ ବନ୍ଧନ ସୃଷ୍ଟି କରେ ଏବଂ ଦୃଢ଼ କରେ । ଅନ୍ୟ ଗୋଟିଏ ଆବଶ୍ୟକତା ସମ୍ପର୍କରେ ଅଧିକାଂଶ ସଚେତନ ନଥିଲେ ମଧ୍ୟ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ତାହା ବେଶ୍ ଗୁରୁତ୍ୱପୂର୍ଣ୍ଣ । ତାହା ହେଉଛି ମା'ର ସ୍ପର୍ଶ ।

ଜନ୍ମର ପରେ ପରେ ଶିଶୁ ମା'ର କୋମଳ ସ୍ପର୍ଶ ଚାହେଁ । ମାଙ୍କଡ଼ ଅନ୍ୟାନ୍ୟ ଜୀବଜନ୍ତୁ ଓ ମନୁଷ୍ୟ ଉପରେ ଗବେଷଣାଗାରରେ ନିୟନ୍ତ୍ରିତ ପରୀକ୍ଷା ମାଧ୍ୟମରେ ଏହା ପ୍ରମାଣ କରାଯାଇଛି । ଦେଖାଦେଇଛି ଯେ, ଶିଶୁ ଜନ୍ମ ସମୟରେ ଏବଂ ଶୈଶବ କାଳରେ ଖାଦ୍ୟଦାତ୍ରୀ ତୁଳନାରେ ସ୍ପର୍ଶଦାତ୍ରୀ ପ୍ରତି ଅଧିକ ନିବିଡ଼ତା ପ୍ରକାଶ କରେ । ଶୈଶବକାଳୀନ ସ୍ପର୍ଶ ସନ୍ତାନ ଓ ଜନନୀ ମଧ୍ୟରେ ଅନ୍ତରାୟ ସୃଷ୍ଟି କରେ ଏବଂ ଏପରି ଅବସ୍ଥା ତା'ର ପରବର୍ତ୍ତୀ ସମୟରେ ଶିଶୁର ସୁରକ୍ଷା ଭାବ ଓ ଆତ୍ମବିଶ୍ୱାସର ଭିତ୍ତିଭୂମି ରୂପେ କାର୍ଯ୍ୟ କରେ ।

ଏ ଉପାଦାନଟିର ଗୁରୁତ୍ୱ ଦର୍ଶାଇବାର ଉଦ୍ଦେଶ୍ୟ ହେଉଛି, ମହିଳାଜଣକ କର୍ମଜୀବୀ ହୁଅନ୍ତୁ ବା ନ ହୁଅନ୍ତୁ, ତାଙ୍କର ପ୍ରାରମ୍ଭିକ ଅନୁରାଗ ଏକ ଦୃଢ଼ ଆଧାର ରୂପେ କାର୍ଯ୍ୟ କରିବ । ଶିଶୁର ଜନ୍ମ ସମୟରେ ଏବଂ ପ୍ରାକ୍‌କାଳରେ ସେ ନିଜର ସ୍ପର୍ଶ ଦେଇ ଶିଶୁର ମନସ୍ତାତ୍ତ୍ୱିକ ଚାହିଦା ପୂରଣ କରିପାରିବେ । ସ୍ତନ୍ୟପାନ ସମୟରେ ନିବିଡ଼ ଆଲିଙ୍ଗନ ମାଧ୍ୟମରେ ଶିଶୁକୁ କୋମଳ ସ୍ପର୍ଶ ଦେଇପାରିବେ । ଶିଶୁକୁ ଏପରି ଅନୁଭୂତି ଦେବାରେ ସମ୍ଭବତଃ କର୍ମଜୀବୀ ମହିଳାଙ୍କର କୌଣସି ଅସୁବିଧା ରହିବ ନାହିଁ ଏବଂ ଶିଶୁର ଏକ ବିଶେଷ ଧରଣର ଅଭାବବୋଧ ଦୂର ହୋଇପାରିବ ।

**କେଉଁ ବାଟରେ ଯିବେ ?**

ଆପଣ କର୍ମଜୀବୀ ମହିଳା ହୋଇଥିଲେ ଶିଶୁ ସହିତ କେତେ ସମୟ ବିତାଉଛନ୍ତି, ତାହାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି କିପରି ସମୟ ବିତାଉଛନ୍ତି । ବିତାଉଥିବା ସମୟର ଗୁଣାତ୍ମକ ଦିଗପ୍ରତି ଧ୍ୟାନ ଦିଅନ୍ତୁ ।



# ପ୍ରାକ୍-ବିଦ୍ୟାଳୟ ସ୍ତରରେ ଶିଶୁର ମାନସିକ ବିକାଶର ଧାରା

ପ୍ରାକ-ବିଦ୍ୟାଳୟ ଜୀବନ ପିଲାମାନଙ୍କର ହର୍ଷ ଉଲ୍ଲାସର ସମୟ । ସମ୍ଭବତଃ ଆମ୍ଭମାନଙ୍କର ମଧ୍ୟରୁ ଅଧିକାଂଶ ଏ ସମୟର କଥା ବେଶି ମନେରଖି ନଥିବେ । ମାତ୍ର ପିତାମାତା ସେମାନଙ୍କ ପୁତ୍ର କନ୍ୟାଙ୍କ ପାଇଁ ଏ ସମୟକୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ମନେ କରନ୍ତି । ଏହାର ମୁଖ୍ୟ କାରଣ ହେଲା ଏହି ସମୟରୁ ପିଲାମାନେ ପରିବାରର କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରନ୍ତି । ପୂର୍ବରୁ ଶୈଶବ ଅବସ୍ଥାରେ ସେମାନଙ୍କର ପାରିବାରିକ କାର୍ଯ୍ୟକ୍ରମ ପ୍ରାୟ ନଥାଏ । ମାତ୍ର ବିଦ୍ୟାଳୟକୁ ଯିବା ବୟସରେ ପାଦଦେବା ପୂର୍ବରୁ ସେମାନେ ବାପା ମା' ଙ୍କ 'ସହିତ ଖେଳକୁଦ ଆରମ୍ଭ କରିଦିଅନ୍ତି । ବାପା ମା' ଓ ନିଜର ଅନ୍ୟ ଭାଇଭଉଣୀଙ୍କ ସହିତ କଥାବାର୍ତ୍ତା କରନ୍ତି । ଏପରି ଅଂଶଗ୍ରହଣ ସେମାନଙ୍କ ଭୂମିକାକୁ ଏକ ନୂତନ ପର୍ଯ୍ୟାୟକୁ ନିଏ । ଦୁଇ ବର୍ଷରୁ ପାଞ୍ଚବର୍ଷ ବୟସର ସୀମାରେଖା ମଧ୍ୟରେ ପ୍ରାକ୍-ବିଦ୍ୟାଳୟ ଜୀବନର ଏହି ବିକାଶଧାରାର ଏକ ସ୍ୱତନ୍ତ୍ର ରୂପରେଖ ରହିଛି ।



(ପ୍ରାକ୍-ବିଦ୍ୟାଳୟ ସହଯୋଗର ଏକ ରୂପରେଖ)

**ଶାରୀରିକ ବିକାଶ :**

ଦୁଇବର୍ଷରୁ ପାଞ୍ଚବର୍ଷ ବୟସର ପିଲାମାନଙ୍କର ଶାରୀରିକ ବିକାଶକୁ କେବଳ ଏକ ଶରୀରଭିତ୍ତିକ ଦୃଷ୍ଟିକୋଣରୁ ବିଚାର କରାଯିବା ଅନୁଚିତ । ଶରୀର ବିକାଶରେ ତ୍ରୁଟି ସାଧାରଣ ବିକାଶ ଓ ଉତ୍ତମ ବିକାଶରେ ଭିନ୍ନ ଭିନ୍ନ ପ୍ରଭାବ ସୃଷ୍ଟି

କରିଥାଏ । ଧରାଯାଉ ସୁନୀତା ତା'ର ଛୋଟ ସାଇକେଲ୍‌ଟି ଖୁବ୍ ଭଲ ଚଳାଇ ପାରୁଥିବା ସ୍ଥଳେ ପୁଷ୍ପା ଭଲରୂପେ ଚଳାଇ ପାରେନାହିଁ । ଲକ୍ଷ୍ୟ କଲେ ହୁଏତ ଦେଖାଯିବ ଯେ, ସୁନୀତାର ଗୋଡ଼ ଦୁଇଟି ଶକ୍ତ ଥିବାରୁ ସେ ସହଜରେ ପେଡ଼ାଲ ମାରିପାରେ । ଅଥଚ ପୁଷ୍ପା ଅପେକ୍ଷାକୃତ ଦୁର୍ବଳ ହୋଇଥିବାରୁ ଏପରି କାର୍ଯ୍ୟ ପାରେନାହିଁ । ପୁଣି ସୁନୀତାର ପିତାମାତାଙ୍କର ଆଗ୍ରହ ଅଧିକ । ସେମାନେ ସମୟ ଦେଇ ସୁନୀତାକୁ ସାଇକେଲ୍ ଚଳାଇବା ଶିଖାନ୍ତି ଏବଂ ଅଭ୍ୟାସ କରିବା ପାଇଁ ଉତ୍ସାହ ଦିଅନ୍ତି । ସୁନୀତା ଭଲରୂପେ ସାଇକେଲ୍ ଚଳାଇ ପାରୁଥିବାରୁ ନିଜ ସମ୍ପର୍କରେ ଭଲ ଧାରଣା ପୋଷଣ କରେ । ଅନ୍ୟ ପକ୍ଷରେ ପୁଷ୍ପାର ଧାରଣ ନିଜର ସ୍ୱାସ୍ଥ୍ୟ ସମ୍ପର୍କରେ ଅନୁକୂଳ ହୋଇନଥାଏ ।

ଶାରୀରିକ ବିକାଶର କେତେକ ଦିଗ ଖୁବ୍ ସ୍ପଷ୍ଟ । ସାଧାରଣ ଭାବେ ପିଲାର ବୟସ ଏବଂ ତା'ର ଉଚ୍ଚତା ଓ ଓଜନ ମଧ୍ୟରେ ସମ୍ବନ୍ଧ ରହିଥାଏ । ପୁଣି ସାଧାରଣ ଭାବେ ଦେଖିଲେ ଜଣାଯାଏ ଯେ ପ୍ରାକ୍-ବିଦ୍ୟାଳୟ କାଳୀନ ଉଚ୍ଚତା ଭବିଷ୍ୟତ ସମ୍ପର୍କରେ ମଧ୍ୟ ସୂଚନା ଦେଇଥାଏ । ଦୀର୍ଘକାୟ ପିଲା ଭବିଷ୍ୟତରେ ଦୀର୍ଘକାୟ ଯୁବକ ବା ଯୁବତୀ ଏବଂ ଖର୍ବାକୃତିର ପିଲା ଭବିଷ୍ୟତରେ ଖର୍ବାକୃତିର ଯୁବକ ବା ଯୁବତୀ ହେବାର ଅଧିକ ସମ୍ଭାବନା ଥାଏ ।

ଜନ୍ମ ହେବାର ପ୍ରଥମ ୩ମାସ ମଧ୍ୟରେ ଶିଶୁଟିର ପ୍ରତି ମାସରେ ଅତି କମ୍‌ରେ ୫୦୦ ଗ୍ରାମ ଓଜନ ବୃଦ୍ଧି ପାଇବା ଆବଶ୍ୟକ । ଏହାଠାରୁ କମ୍ ହେଲେ ଶିଶୁଟି ପୁଷ୍ଟିସାର ଅଭାବଜନିତ ରୋଗ ଭୋଗୁଛି ବୋଲି ଜଣାଯିବ । ସାଧାରଣତଃ ପ୍ରଥମ ୩ ମାସ ମଧ୍ୟରେ ଶିଶୁର ପ୍ରତି ମାସରେ ୧ କେଜି ଓଜନ ବୃଦ୍ଧି ହୋଇଥାଏ । ସୁସ୍ଥ ସବଳ ଶିଶୁଟିଏର ଓଜନ ୫ମାସ ବେଳକୁ ଜନ୍ମ ଓଜନ ଠାରୁ ଦୁଇଗୁଣ, ୧ ବର୍ଷ ବେଳକୁ ତିନିଗୁଣ ଏବଂ ୨ ବର୍ଷ ବେଳକୁ ଚାରିଗୁଣ ହୋଇଯାଇଥାଏ । ଆମ ଦେଶରେ ବୟସ କାଳୀନ ଉଚ୍ଚତା ଓ ଓଜନକୁ ନିମ୍ନମତେ ପ୍ରକାଶ କରାଯାଇପାରେ ।

| ବୟସ | ଉଚ୍ଚତା | ଓଜନ |
|---|---|---|
| ୧ ବର୍ଷ | ଜନ୍ମ ଉଚ୍ଚତା+ ୨୫ cm | ୭ Kg |
| ୨ ବର୍ଷ | ଜନ୍ମ ଉଚ୍ଚତା+ ୩୭ cm | ୯.୫ Kg |
| ୩ ବର୍ଷ | ଜନ୍ମ ଉଚ୍ଚତା+ ୪୬ cm | ୧୧.୫ Kg |
| ୪ ବର୍ଷ | ଜନ୍ମ ଉଚ୍ଚତା+ ୫୩ cm | ୧୧.୫ Kg |
| ୫ ବର୍ଷ | ଜନ୍ମ ଉଚ୍ଚତା+ ୫୯ cm | ୧୧.୫ Kg |

ପିଲାମାନଙ୍କର ଉଚ୍ଚତା ସମ୍ପର୍କରେ ଅନେକଙ୍କର ଭ୍ରମ ଧାରଣା ରହିଛି ଯେ ପିତା ମୁଖ୍ୟତଃ ପୁତ୍ରର ଉଚ୍ଚତା ନିୟନ୍ତ୍ରଣ କରୁଥିବା ସ୍ଥଳେ ମାତାଙ୍କ ଉଚ୍ଚତା

ଅନୁଯାୟୀ କନ୍ୟାର ଉଚ୍ଚତା ନିର୍ଦ୍ଧାରିତ ହୁଏ । ମାତ୍ର ପ୍ରକୃତରେ ପିତା ଓ ମାତା ସମାନ ପରିମାଣରେ ସନ୍ତାନର ଉଚ୍ଚତା ନିର୍ଦ୍ଧାରଣ ପାଇଁ ଦାୟୀ ରହନ୍ତି । ପିତାମାତା ଉଭୟେ ଦୀର୍ଘକାୟ ହୋଇଥିଲେ ସେମାନଙ୍କ ସନ୍ତାନ ସନ୍ତତି ଦୀର୍ଘକାୟ ହେବାର ସମ୍ଭାବନା ଖୁବ୍ ବେଶି । ସେହିପରି ପିତାମାତା ଉଭୟେ ଖର୍ବାକୃତି ହୋଇଥିଲେ ସେମାନଙ୍କ ପୁତ୍ରକନ୍ୟାଙ୍କ ଉଚ୍ଚତା କମ୍ ହେବାର ସମ୍ଭାବନା ଅଧିକ ।

ଅନୁନ୍ନତ ଦେଶ ସମୂହକୁ ବାଦଦେଲେ ବିକଶିତ ଓ ବିକାଶଶୀଳ ଦେଶମାନଙ୍କରେ ପ୍ରତିବର୍ଷ ଶରୀର ଉଚ୍ଚତା ସାମାନ୍ୟ ବୃଦ୍ଧି ପାଇବାର ଲକ୍ଷ୍ୟ କରାଯାଏ । ସର୍ବେକ୍ଷଣରୁ ଦେଖାଯାଇଛି ଯେ ବିକଶିତ ଶିକ୍ଷୋନ୍ନତ ଦେଶମାନଙ୍କରେ ପାଞ୍ଚବର୍ଷ ବୟସର ପିଲାମାନଙ୍କର ଉଚ୍ଚତା ୧୯୦୦ ମସିହାରୁ ଆରମ୍ଭ କରି ପ୍ରତି ଦଶବର୍ଷପରେ ପ୍ରାୟ ଏକରୁ ଦୁଇ ସେଣ୍ଟିମିଟର ପର୍ଯ୍ୟନ୍ତ ଅଧିକ ଡେଙ୍ଗା ହୋଇଛି । ୧୯୩୦ ମସିହାରୁ ଆରମ୍ଭ କରି ପାଞ୍ଚବର୍ଷରୁ ଜାପାନୀ ପିଲାମାନେ ପ୍ରତି ଦଶ ବର୍ଷରେ ପ୍ରାୟ ତିନି ସେଣ୍ଟିମିଟର ଅଧିକ ଡେଙ୍ଗା ହେଉଛନ୍ତି । ଅଧିକ ପୁଷ୍ଟିକର ଖାଦ୍ୟ ଓ ରୋଗସବୁର ନିୟନ୍ତ୍ରଣ ହିଁ ଏହାର ମୁଖ୍ୟ କାରଣ ହେଲେ ମଧ୍ୟ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ବିକାଶୀଳ ଓ ବିକଶିତ ଦେଶମାନଙ୍କରେ ଏପରି ସ୍ପଷ୍ଟ ରୂପରେଖ ସୂଚିତ ହେଉଛି । ସେହିପରି ବିଂଶ ଶତାବ୍ଦୀର ଆରମ୍ଭରେ ବାଳିକାମାନେ ଯେଉଁ ବୟସରେ ଗର୍ଭଧାରଣର ସାମର୍ଥ୍ୟ ସୂଚାଉଥିଲେ ସେ ତୁଳନାରେ ବର୍ତ୍ତମାନ ବୟସ ସୀମାରୁ ପ୍ରାୟ ତିରିଶ ଚାଳିଶ ମାସ ହ୍ରାସ ପାଇଛି । ବିଗତ ଶତାବ୍ଦୀ ତୁଳନାରେ ଅଧିକ ଉନ୍ନତ ଶାରୀରିକ ବିକାଶର ଅନ୍ୟତମ କାରଣ ହେଉଛି ସମ୍ମିଳିତ ତେଜ (Hybrid vigour) । ପୂର୍ବେ ଗୋଟିଏ ସମ୍ପ୍ରଦାୟର ପରିସୀମା ମଧ୍ୟରେ ପୁରୁଷ ଓ ନାରୀ ପରସ୍ପରକୁ ବିବାହ କରୁଥିଲେ । ସମୟକ୍ରମେ ଏପରି ଗତାନୁଗତିକ ଧର୍ମର ପରିବର୍ତ୍ତନ ଘଟିଛି । ଗୋଟିଏ ସମ୍ପ୍ରଦାୟର ପୁରୁଷ ବା ନାରୀ ନିଜ ସମ୍ପ୍ରଦାୟର ବାହାରେ ବିବାହ କରିବାର ଉଦାହରଣ କ୍ରମଶଃ ବଢ଼ିବାରେ ଲାଗିଛି । ଭିନ୍ନ ଭିନ୍ନ ଜାତି, ଧର୍ମ ଓ ରାଷ୍ଟ୍ରର ଲୋକମାନଙ୍କ ମଧ୍ୟରେ ବୈବାହିକ ସମ୍ପର୍କ ଫଳରେ ସନ୍ତାନ ସନ୍ତତିମାନେ ଦୁଇ ସମ୍ପ୍ରଦାୟର ସମ୍ମିଳିତ ଉନ୍ନତ ବୈଶିଷ୍ଟ୍ୟ ସବୁ ଗ୍ରହଣ କରିବା ଫଳରେ ଶିଶୁମାନେ ଅଧିକ ସତେଜ ହେଉଛନ୍ତି ।

ଅଧିକନ୍ତୁ ଏହା ସର୍ବ ସ୍ୱୀକୃତ ଯେ ବାଲ୍ୟକାଳୀନ ରୋଗ ଶିଶୁର ଶାରୀରିକ ବିକାଶକୁ ବିପର୍ଯ୍ୟସ୍ତ କରିଥାଏ । ମାତ୍ର ଅଳ୍ପ ବୟସରେ ଘଟି ଯାଇଥିବା କେତେକ କ୍ଷତି ପୂରଣ ହୋଇଯାଇପାରେ । ରୋଗ ପ୍ରତିକାର ବ୍ୟବସ୍ଥା ଓ ପୁଷ୍ଟିକର ଖାଦ୍ୟ ସୁ ବନ୍ଦୋବସ୍ତ କରାଗଲେ ପିଲାଟି ଅଟକି ଯାଇଥିବା ବିକାଶ ସୋପାନରୁ ଅପେକ୍ଷାକୃତ ଦ୍ରୁତଗତିରେ ଅଗ୍ରସର ହୁଏ । ତା'ର ସମବୟସୀ ପିଲାମାନଙ୍କର ବିକାଶ ସ୍ତରର ସମାନ ପର୍ଯ୍ୟାୟରେ ପହଞ୍ଚିବା ପରେ ସେ ପୁନଶ୍ଚ ସ୍ୱାଭାବିକ ଗତିରେ ଆଗେଇ ଚାଲେ ।

ପ୍ରାକ୍-ବିଦ୍ୟାଳୟ ବୟସର ପିଲାମାନଙ୍କର ଶାରୀରିକ ବିକାଶ କ୍ଷେତ୍ରରେ ଭାବଗତ ଉପାଦାନ ସକ୍ରିୟ ଭୂମିକା ନେଇଥାଏ । ପାରିବାରିକ ଦାରିଦ୍ର୍ୟ, ଅଶାନ୍ତି ଓ ଉଦ୍‌ବେଗ ପିଲାପାଇଁ ମନସ୍ତାତ୍ତ୍ୱିକ ପ୍ରତିବନ୍ଧକ ସୃଷ୍ଟିକରେ । ପିଲାଟିର କ୍ରିୟା ପ୍ରତିକ୍ରିୟା ଖୁବ୍ ଶିଥିଳ ହୋଇଯାଏ । ପିଲାଟିର ମାନସିକ ବିକାଶ ଲାଗି ଆବଶ୍ୟକ ସ୍ନେହ ଅନୁରାଗର ଅଭାବ ଏକ ପ୍ରକାର ମନସ୍ତାତ୍ତ୍ୱିକ ବାମନତ୍ୱ (Psycho-logi-cal Dwarfism) ସୃଷ୍ଟିକରେ ।

ନର୍ଦ୍ଦିଷ୍ଟ ଭାବରେ କେଉଁ ଉପାଦାନଟି ଏପରି ବିକାଶହୀନତା ବା ବାମନତ୍ୱ ସୃଷ୍ଟିକରେ, ସେ ସମ୍ପର୍କରେ ଗବେଷଣା କରାଯାଇଛି । ଦେଖାଦେଇଛି ଯେ ପିତା ମାତାଙ୍କର ପ୍ରତ୍ୟାଶା (Expectation) ଏବଂ ପିଲାଟିର କ୍ରିୟାଶୀଳତା ମଧ୍ୟରେ ଅଧିକ ଅମେଳ ସୃଷ୍ଟି ହେଲେ ଏପରି ସମସ୍ୟା ଉପୁଜେ । ପିତା ଓ ମାତାଙ୍କ ମଧ୍ୟରେ ମତାନୈକ୍ୟ, ପିତା ମାତା ଓ ଜେଜେମା' ଜେଜେବାପାଙ୍କ ମଧ୍ୟରେ ମତବିରୋଧ ଏବଂ ଏପରି ଅନ୍ୟସବୁ ସମସ୍ୟା ଶିଶୁର ବିକାଶ କ୍ଷେତ୍ରରେ ଜଟିଳତା ସୃଷ୍ଟିକରେ । ପିତା ମାତା ଆଶା କରୁଥିବା ସ୍ୱପ୍ନସବୁକୁ ପିଲାଟି ସାକାର ରୂପ ଦେଇପାରୁ ନଥିଲେ ପିତାମାତା କ୍ଷୁବ୍ଧ ହୋଇ ରୁକ୍ଷ ବ୍ୟବହାର କରନ୍ତି । ପିଲା ମଧ୍ୟ ନିସ୍ପୃହ ହେବା, ନିଜର ମନୋଭାବ ଲୁଚାଇବା ଏବଂ ବିରୋଧାତ୍ମକ ଆଚରଣ ଦର୍ଶାଇପାରେ । ମୁଖ୍ୟତଃ ପିଲାଟିର ବିକାଶ ପାଇଁ ଏବଂ ଭାବ ଯୋଗାଯୋଗ ପାଇଁ ପାରିବାରିକ ପରିବେଶର ଆବଶ୍ୟକତା ରହିଛି ।

**ମସ୍ତିଷ୍କ ଓ ବ୍ୟବହାର :**

ଚାରିପାଞ୍ଚ ବର୍ଷର ପିଲାର ଶାରୀରିକ ବିକାଶର ଏକ ମୁଖ୍ୟ ସୂଚକ ହେଉଛି ମସ୍ତିଷ୍କର ବିକାଶ । ଏହି ସମୟରେ ମସ୍ତିଷ୍କର ବିକାଶ ଦ୍ରୁତଗତିରେ ହୋଇଥାଏ । ଦୁଇ ବର୍ଷର ଶିଶୁର ମସ୍ତିଷ୍କର ଆକାର ତା'ର ଭାବୀ ଯୁବକ ମସ୍ତିଷ୍କର ପ୍ରାୟ ୭୫ ଶତାଂଶ । ପୁଣି ପାଞ୍ଚବର୍ଷ ବେଳକୁ ଏହି ମସ୍ତିଷ୍କର ଆକାର ଯୁବକ ମସ୍ତିଷ୍କ ଆକାରର ପ୍ରାୟ ୯୦ ଶତାଂଶ ହୋଇଥାଏ ।

ପ୍ରାକ୍-ବିଦ୍ୟାଳୟ ଜୀବନ କାଳ ମଧ୍ୟରେ ମସ୍ତିଷ୍କର ଯେଉଁ ବିକାଶ ଘଟେ ଏବଂ ଏପରି ବିକାଶ ପିଲାର ବ୍ୟବହାରରେ ଯେପରି ପ୍ରତିଫଳିତ ହୁଏ ତାହା ବୁଝିବା ପାଇଁ ମସ୍ତିଷ୍କର ଦୁଇଟି ବୈଶିଷ୍ଟ୍ୟ ଜାଣିବାକୁ ହେବ । ପ୍ରଥମତଃ ସମଗ୍ର ମସ୍ତିଷ୍କଟି ସଙ୍ଗଠିତ ରୂପେ କାର୍ଯ୍ୟ କଲେ ମଧ୍ୟ ବିଭିନ୍ନ କାର୍ଯ୍ୟପାଇଁ ମୁଖ୍ୟ ମସ୍ତିଷ୍କର ଭିନ୍ନ ଭିନ୍ନ କେନ୍ଦ୍ର ରହିଥାଏ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ କୌଣସି ପିଲା ବା ବ୍ୟକ୍ତି କିଛି ଦେଖୁ ଥିଲାବେଳେ ମସ୍ତିଷ୍କର ଏକ ନିର୍ଦ୍ଦିଷ୍ଟ କେନ୍ଦ୍ର ସକ୍ରିୟ ଥିବା ସ୍ଥଳେ ଶୁଣିବା ସମୟରେ ଅନ୍ୟ କେନ୍ଦ୍ରଟି ସକ୍ରିୟ ଥାଏ । ସେହିପରି ଗୋଡ଼

ହାତର ଚାଳନା, ସ୍ୱାଦାନୁଭୂତି, ସ୍ପର୍ଶାନୁଭୂତି ଓ ସୁଗନ୍ଧ ଦୁର୍ଗନ୍ଧ ଅନୁଭବ କରିବା ସମୟରେ ମସ୍ତିଷ୍କର ଭିନ୍ନ ଭିନ୍ନ କେନ୍ଦ୍ର ସକ୍ରିୟତା ଦର୍ଶାଏ । ବିଶେଷଜ୍ଞମାନେ ମନୁଷ୍ୟ ମସ୍ତିଷ୍କରେ ଇଲେକ୍‌ଟ୍ରୋଡ୍ ଖଞ୍ଜିଦେଇ ମନୁଷ୍ୟକୁ ପୃଥକ୍ ପୃଥକ୍ ଅନୁଭୂତି ଦେବାର ବ୍ୟବସ୍ଥା କରି ଏହାର ସ୍ପଷ୍ଟ ଚିତ୍ର ପାଇଥାନ୍ତି । ବ୍ୟକ୍ତିଟି ଗୋଟିଏ ଦୃଶ୍ୟ ଦେଖୁଥିବାବେଳେ ମସ୍ତିଷ୍କର କେଉଁ ଅଂଶ ସକ୍ରିୟ ତାହା ନିର୍ଦ୍ଦିଷ୍ଟ ସ୍ଥାନର ଇଲେକ୍‌ଟ୍ରୋଡ୍‌ଟି ଆଲୋକିତ ହୋଇ ସୂଚନା ପ୍ରଦାନ କରିଥାଏ ।

ଏବେ ଆଉ ଗୋଟିଏ ପଦ୍ଧତିରେ ଅଧିକ ସ୍ପଷ୍ଟ ଭାବେ ମସ୍ତିଷ୍କର ଏହି ସ୍ଥାନୀୟକରଣ (Localization) ଜାଣି ହେଉଛି । ଶରୀରକୁ କ୍ଷତିଗ୍ରସ୍ତ କରୁନଥିବା ଅତି କ୍ଷୁଦ୍ର ରାସାୟନିକ ପଦାର୍ଥ ପ୍ରବାହିତ ରକ୍ତରେ ଛାଡ଼ି ଦିଆଯାଉଛି । ମସ୍ତିଷ୍କ କୌଣସି କାର୍ଯ୍ୟ କଲାବେଳେ ଶରୀରକୁ ରକ୍ତ ସେଠାକୁ ପ୍ରବାହିତ ହୁଏ । ପୁଣି ମସ୍ତିଷ୍କର ଯେଉଁ ଅଂଶ ଗୋଟିଏ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ଯେତେ ବେଶୀ ସକ୍ରିୟ ସେ ସ୍ଥାନକୁ ସେତେ ବେଶୀ ରକ୍ତ ପ୍ରବାହିତ ହୁଏ । ରକ୍ତ ପ୍ରବାହରେ ଛାଡ଼ି ଦିଆଯାଇଥିବା ସୂକ୍ଷ୍ମାତିସୂକ୍ଷ୍ମ ବସ୍ତୁର ଗତିକୁ ଲକ୍ଷ୍ୟ କରି ବିଶେଷଜ୍ଞମାନେ କେଉଁ କାର୍ଯ୍ୟ ସହ ମସ୍ତିଷ୍କର କେଉଁ ଅଂଶ ଜଡ଼ିତ, ତାହା ସହଜରେ ଜାଣିପାରନ୍ତି । ଏହାକୁ ମସ୍ତିଷ୍କର ସ୍ଥାନୀୟକରଣ ନୀତି (Localization Principle) କୁହାଯାଏ । ଚାରିପାଞ୍ଚ ବର୍ଷ ବୟସର ପିଲାମାନଙ୍କ ମସ୍ତିଷ୍କରେ ଏହା ସ୍ପଷ୍ଟ ପ୍ରତିଫଳିତ ହୁଏ ।

ମସ୍ତିଷ୍କର ଅନ୍ୟତମ ବୈଶିଷ୍ଟ୍ୟ ହେଉଛି ପାର୍ଶ୍ୱିକତା (Lateralization) । ମସ୍ତିଷ୍କର କାର୍ଯ୍ୟକଳାପରୁ ଲକ୍ଷ୍ୟ କରାଯାଇଛି ଯେ ମସ୍ତିଷ୍କର ବାମ ଓ ଦକ୍ଷିଣ ପାର୍ଶ୍ୱ ମଧ୍ୟରେ କିଛିଟା ପାର୍ଥକ୍ୟ ରହିଛି । ଗୋଟିଏ ପରେ ଗୋଟିଏ ସୂଚନାକୁ ଗ୍ରହଣ କରି ସେ ସବୁକୁ ଏକାଠି କରି ସିଦ୍ଧାନ୍ତ ଦେବାରେ ବାମ ଭାଗ ମସ୍ତିଷ୍କ ସକ୍ରିୟ ଭୂମିକା ନିଏ । ମାତ୍ର ମୋଟାମୋଟି ଭାବରେ ଗୋଟିଏ ଫର୍ମ ବା ଡାଞ୍ଚା (Pattern) ର ପ୍ରତ୍ୟକ୍ଷ ଅନୁଭବ କ୍ଷେତ୍ରରେ ଦକ୍ଷିଣ ଭାଗର ମସ୍ତିଷ୍କ ମୁଖ୍ୟ ଭୂମିକା ନିଏ । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଇପାରେ ଯେ ଟେଲିଫୋନର ନମ୍ବରଟି ଦେଖି ସେଥିରେ ଥିବା ପ୍ରଥମ ସଂଖ୍ୟା, ଦ୍ୱିତୀୟ ସଂଖ୍ୟା ଇତ୍ୟାଦିକୁ ମନେ ରଖିବାବେଳେ ବାମ ମସ୍ତିଷ୍କ ସକ୍ରିୟ ହୁଏ । ସେହିପରି କ୍ରମାଗତ ଭାବରେ ଉଚ୍ଚାରଣ କରାଯାଉଥିବା ନାମ ସବୁକୁ ଶୁଣିବା ସମୟରେ ବାମ ମସ୍ତିଷ୍କ ସକ୍ରିୟ ଥିବାବେଳେ ଗୋଟିଏ ଗୀତ ଶୁଣିବା ସମୟରେ ଦକ୍ଷିଣ ମସ୍ତିଷ୍କ ସକ୍ରିୟ ଥାଏ । ବିଶେଷଜ୍ଞମାନେ ମସ୍ତିଷ୍କରେ ଖଞ୍ଜିଥିବା ଇଲେକ୍‌ଟ୍ରୋଡ୍‌ର ଆଲୋକ ଦେଖି କିମ୍ବା ରାସାୟନିକ ପଦାର୍ଥ ମିଶ୍ରିତ ରକ୍ତ ପ୍ରବାହକୁ ଲକ୍ଷ୍ୟ କରି ଏପରି ସବୁ ସିଦ୍ଧାନ୍ତ ସଠିକ୍ ବୋଲି ଜାଣିପାରିଛନ୍ତି ।

ମସ୍ତିଷ୍କର ଏପରି ପାର୍ଶ୍ୱିକତା ବିଚାର କଲାବେଳେ ଆଉ ଗୋଟିଏ କଥା ଜାଣିବା ନିତାନ୍ତ ଆବଶ୍ୟକ । ତାହା ହେଉଛି ଯେ ଆମ ଶରୀରର ବାମଭାଗର

ଅଂଶସବୁ (ଯଥା ବାମ କାନ ଓ ବାମ ଚକ୍ଷୁ) ଦକ୍ଷିଣ ଭାଗର ମସ୍ତିଷ ସହ ସ୍ନାୟୁ ଦ୍ୱାରା ସଂଯୁକ୍ତ ହେବା ସ୍ଥଳେ ଶରୀରର ଦକ୍ଷିଣ ଭାଗର ଅଂଶସବୁ ବାମ ମସ୍ତିଷ ସହିତ ସଂଯୁକ୍ତ ହୋଇଛି । ସୁତରାଂ ବାମ ମସ୍ତିଷର ସକ୍ରିୟତା ଦକ୍ଷିଣ ପାର୍ଶ୍ୱର ଅଙ୍ଗପ୍ରତ୍ୟଙ୍ଗର ସକ୍ରିୟତା ଦ୍ୱାରା ବୃଦ୍ଧି ପାଏ । ସେହିପରି ଦକ୍ଷିଣ ପାର୍ଶ୍ୱର ମସ୍ତିଷର ସକ୍ରିୟତା ଶରୀରର ବାମଭାଗର ଅଙ୍ଗପ୍ରତ୍ୟଙ୍ଗର କ୍ରିୟାକଳାପ ଫଳରେ ବୃଦ୍ଧିପାଇଥାଏ ।

ଗୋଟିଏ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ମସ୍ତିଷ କାର୍ଯ୍ୟକଳାପର ଏହି ବୈଶିଷ୍ଟ୍ୟକୁ ବୁଝିହୁଏ । ଧରାଯାଉ ଗୋଟିଏ Ear Phone ସାହାଯ୍ୟରେ ଦୁଇ କାନ ମଧ୍ୟକୁ କିଛି ଶ୍ରବଣଯୋଗ୍ୟ ଶବ୍ଦ ପ୍ରବେଶ କରାଯାଉଛି । ଏପରି ଶବ୍ଦ କ୍ରମାନ୍ୱୟରେ ଦିଆଯାଉଥିବା କିଛି ସଂଖ୍ୟା ହୋଇପାରେ କିମ୍ୱା କିଛି ଲୋକଙ୍କର ନାମ ମଧ୍ୟ ହୋଇପାରେ । ଏପରି ସ୍ଥଳେ ବୈଦ୍ୟୁତିକ ପଦ୍ଧତିରେ ସ୍ପଷ୍ଟ ଦେଖାଯିବ ଯେ ଶବ୍ଦସବୁ ଦୁଇଟି ଯାକ କାନଦେଇ ପ୍ରବେଶ କରୁଥିଲେ ମଧ୍ୟ ଦକ୍ଷିଣ କାନ ଦେଇ ପ୍ରବେଶ କରୁଥିବା ଶବ୍ଦସବୁ ବାମ ମସ୍ତିଷରେ ଅଧିକ ପରିମାଣରେ ଗୃହୀତ ଓ ସଂଗଠିତ ହେଉଛି । ପୂର୍ବରୁ ସୂଚିତ କରାଯାଇଛି ଯେ ଦକ୍ଷିଣ କାନଟି ବାମ ମସ୍ତିଷ ସହିତ ସଂଯୁକ୍ତ । ଅନ୍ୟ ପକ୍ଷରେ ଦୁଇ କାନରେ ପ୍ରବେଶ କରୁଥିବା ସଙ୍ଗୀତ ବାମ କାନଦେଇ ଦକ୍ଷିଣ ମସ୍ତିଷରେ ଅଧିକ ଗୃହୀତ, ସଙ୍ଗଠିତ ଓ ଅନୁଭବ କରାଯାଉଛି । ବାମ ମସ୍ତିଷ ବିଶ୍ଳେଷଣ ଓ ଦକ୍ଷିଣ ମସ୍ତିଷ ସଂଶ୍ଳେଷଣ କରୁଥିବାରୁ ଏପରି ଘଟୁଛି ।

ପିଲାର ବୟସ ପାଞ୍ଚବର୍ଷ ହେଲା ବେଳକୁ ଏପରି ପାର୍ଶ୍ୱିକରଣ ସ୍ପଷ୍ଟ ରୂପରେଖ ନିଏ, ବ୍ୟବହାରିକ ଜୀବନରେ ଏହାର ପ୍ରତିଫଳନ ଦେଖାଯାଏ । ମନେ କରାଯାଉ ପିଲାଟିକୁ ନଦେଖାଇ ଗୋଟିଏ ଥଳୀରେ ଗୋଟିଏ ଘନ ପଦାର୍ଥ ପୂରାଇ ଦିଆଗଲା, ତାହା ପରେ ପିଲାଟି ନିଜର ଗୋଟିଏ ହାତ ଏହି ଥଳୀ ମଧ୍ୟରେ ପୂରାଇ ଏହି ବସ୍ତୁଟିକୁ ବାହାରକୁ ନଆଣି ବସ୍ତୁରେ ଥିବା କୋଣଗୁଡ଼ିକର ସଂଖ୍ୟା କହିବାକୁ ନିର୍ଦ୍ଦେଶ ଦିଆଗଲା । ଦେଖାଯିବ ଯେ ପିଲାଟି ନିଜର ଦକ୍ଷିଣ ହସ୍ତ ଥଳୀ ମଧ୍ୟରେ ପୂରାଇ ଏହାର ସମାଧାନ କରିବାକୁ ଅଧିକ କୃତକାର୍ଯ୍ୟ ହେବ । ଘନବସ୍ତୁର କୋଣସବୁ ଗଣିବା ପରି କାର୍ଯ୍ୟ ବିଶ୍ଳେଷଣମୁଖୀ ହୋଇଥିବାରୁ ଏହି କାର୍ଯ୍ୟ ବାମ ମସ୍ତିଷ ଦକ୍ଷିଣ ହସ୍ତ ସାହଯ୍ୟରେ ଭଲରୂପେ କରିପାରିବ । ମାତ୍ର ପିଲାଟିକୁ ଥଳୀରେ ହାତ ପୂରାଇ ବସ୍ତୁର ଆକାର କହିବାକୁ କୁହାଗଲେ ସେ ନିଜର ବାମ ହସ୍ତର ପ୍ରୟୋଗ ଓ ଦକ୍ଷିଣଭାଗ ମସ୍ତିଷର ସକ୍ରିୟତା ଫଳରେ ଅଧିକ କୃତକାର୍ଯ୍ୟ ହେବ ।

ଦର୍ଶନେନ୍ଦ୍ରିୟର ପ୍ରୟୋଗରେ ମଧ୍ୟ ଏହିପରି ଦୃଷ୍ଟାନ୍ତ ଦେଖାଯାଏ । ପିଲାଟିକୁ ଗୋଟିଏ ଚିତ୍ର ଦେଇ ତାହା ଅନୁସାରେ ରେଖାସବୁ ଟାଣି ଛବିଟିକୁ ନକଲ କରିବାକୁ କୁହାଗଲେ ଦକ୍ଷିଣ ଚକ୍ଷୁର ବ୍ୟବହାର (ପ୍ରକାରାନ୍ତରେ ବାମ ମସ୍ତିଷର ବ୍ୟବହାର)

ଅଧିକ ସଫଳତାର ସହ କାର୍ଯ୍ୟ କରେ । ମାତ୍ର ଛବିଟିର ଫର୍ମ ବା ଢାଞ୍ଚାକୁ ଚିହ୍ନଟ କରିବାର କାର୍ଯ୍ୟ ବାମଚକ୍ଷୁର ପ୍ରୟୋଗ (ପ୍ରକାରାନ୍ତରେ ଦକ୍ଷିଣ ମସ୍ତିଷ୍କର ପ୍ରୟୋଗ) ଦ୍ୱାରା ଅଧିକ ସଫଳ ରୂପରେଖ ନିଏ । ସ୍ଥୂଳତଃ ଦୈନନ୍ଦିନ ଜୀବନରେ ଶରୀରର ଉଭୟ ପାର୍ଶ୍ୱର ଅଙ୍ଗପ୍ରତ୍ୟଙ୍ଗ ଓ ମସ୍ତିଷ୍କର ଦୁଇଟିଯାକ ପାର୍ଶ୍ୱ କାର୍ଯ୍ୟ କରୁଥିଲେ ମଧ କାର୍ଯ୍ୟକୁ ଚାହିଁ କୁଶଳତା ପୃଥକ୍ ପୃଥକ୍ ହୋଇଥାଏ ।

ମସ୍ତିଷ୍କର ପାର୍ଶ୍ୱାଭିମୁଖିତା (Lateralization) ନିୟମର ବଶବର୍ତ୍ତି ହୋଇ ମସ୍ତିଷ୍କ ଓ ଶରୀରର ଅଙ୍ଗପ୍ରତ୍ୟଙ୍ଗ କେତେକ ନିର୍ଦ୍ଦିଷ୍ଟ ବୈଶିଷ୍ଟ୍ୟ ଦେଖାନ୍ତି । କିନ୍ତୁ ପିଲାଟି ନିଜ ପରିବାର, ବିଦ୍ୟାଳୟ ଓ ନିକଟସ୍ଥ ପରିବେଶରେ ପାଉଥିବା ଶିକ୍ଷା ଓ ପ୍ରୋତ୍ସାହନ ଫଳରେ ଦୈନନ୍ଦିନ ଜୀବନରେ କେତେକ ବ୍ୟବହାର ଦର୍ଶାଇଥାଏ । ପିଲାଟିକୁ ଲଜେନ୍ସଟିଏ ଦେଲାବେଳେ ସାଧାରଣତଃ ତାହାର ଦକ୍ଷିଣ ହସ୍ତ ଆଗକୁ ପ୍ରସାରିତ ହୁଏ । ସେହିପରି ଗୋଟିଏ କ୍ୟାମେରାର ଛୋଟ ଛିଦ୍ର ଦେଇ କିଛି ଦେଖିବାକୁ କହିଲେ ସେ ଦକ୍ଷିଣ ଚକ୍ଷୁଟି ବ୍ୟବହାର କରେ । ଦୈନନ୍ଦିନ ଜୀବନରେ ବାମହାତ ତୁଳନାରେ ଦକ୍ଷିଣ ହସ୍ତର ବ୍ୟବହାର ଅଧିକ ଦେଖାଯାଏ । ଏହାର ଏକ ମୁଖ୍ୟ କାରଣ ହେଉଛି ପିଲାଟିର ଶିକ୍ଷାଦୀକ୍ଷା, ବାପ ମା' ଓ ଅନ୍ୟମାନେ ପିଲାଟିକୁ ଦକ୍ଷିଣ ହସ୍ତରେ ଖାଇବା ଓ ଅନ୍ୟ କେତେକ କାର୍ଯ୍ୟ କରିବାର ଶିକ୍ଷା ଦିଅନ୍ତି । ଫଳତଃ ଏହି ହାତଟି ଅଧିକ ପ୍ରୟୋଗ କରିବାର ମନୋବୃତ୍ତି ଗଠିତ ହୁଏ । ପୁଣି କେତେକ ଦେଶରେ ଦୁଇ ହାତରେ ଭଲରୂପେ ଲେଖିବାର ଅଭ୍ୟାସ ଶିକ୍ଷା ଦିଆ ଯାଉଥିବାରୁ ସେ ଦେଶର ପିଲାମାନେ ବାମ ହାତର ପ୍ରୟୋଗ କରି ବେଶ୍ କିଛି କାର୍ଯ୍ୟ କରିପାରନ୍ତି । ମୋଟ୍ ଉପରେ ଗୋଟିଏ ପାର୍ଶ୍ୱର ଅଙ୍ଗପ୍ରତ୍ୟଙ୍ଗକୁ ଅଧିକ ବ୍ୟବହାର କରିବାର ସମ୍ଭାବନା ଅନେକାଂଶରେ ଶିକ୍ଷାକୃତ ।

ମସ୍ତିଷ୍କ ବିକାଶ ପ୍ରାକ୍-ବିଦ୍ୟାଳୟ ଜୀବନରେ ପିଲାଟିର ଦୃଷ୍ଟିଶକ୍ତି ଓ ଶ୍ରବଣଶକ୍ତିର ସାମର୍ଥ୍ୟ ବୃଦ୍ଧିପାଏ । ଶୌଚାଳୟର ବ୍ୟବହାର ଶିକ୍ଷା ଦିଆଯାଉଥିବାରୁ ପିଲା ଦିନ ସମୟରେ ନିଜର ମଳମୂତ୍ର ତ୍ୟାଗ ଉପରେ ଅଧିକରୁ ଅଧିକ ନିୟନ୍ତ୍ରଣ କ୍ଷମତା ଲାଭକରେ । ସେହିପରି ରାତିରେ ମଧ ଯଥାସ୍ଥାନରେ ଓ ଯଥା ସମୟରେ ପରିସ୍ରା କରିବାର ଅଭ୍ୟାସ ଶିଖେ । ପ୍ରାକ୍-ବିଦ୍ୟାଳୟ କାଳୀନ ଶାରୀରିକ ବିକାଶର ଧାରା ବିଦ୍ୟାଳୟରେ ଏକ ନୂତନ ଭୂମିକା ଗ୍ରହଣ କରିବାର ପ୍ରସ୍ତୁତି ପର୍ବ । ଏ ସମୟରେ ଶାରୀରିକ ଓ ମସ୍ତିଷ୍କଗତ ବିକାଶ ଅନ୍ୟ କେତେକ କୌଶଳ ଶିକ୍ଷାର ମୂଳ ଉପାଦାନ ଯୋଗାଇଥାଏ ।



# ଶିଶୁମାନଙ୍କର ଭାବନା ଶୈଳୀ

ବୟସ୍କମାନଙ୍କ ପରି ଶିଶୁମାନେ ମଧ୍ୟ ନିଜର ପରିବେଶକୁ ବୁଝିବାକୁ ଚେଷ୍ଟା କରନ୍ତି । ବୁଦ୍ଧିମତ୍ତା ଓ ପରିପକ୍ୱତା ଅନୁସାରେ ଶିଶୁ ନିଜର ପରିବେଶକୁ ବୁଝିବା ସଙ୍ଗେ ସଙ୍ଗେ ତାହା ସହିତ ସମନ୍ୱୟ ରକ୍ଷାକରେ । ବୁଝିବା ପ୍ରକ୍ରିୟାରେ ସବୁ ଶିଶୁ ଏକପ୍ରକାର ପ୍ରଣାଳୀ ଅନୁସରଣ କରନ୍ତି ନାହିଁ । ଶିଶୁ ଭାବନାର ଶୈଳୀ ଭିନ୍ନ ଭିନ୍ନ ହୋଇଥାଏ । ଉଦାହରଣସ୍ୱରୂପ କୁହାଯାଇପାରେ ଯେ, ସମସ୍ୟା ସମାଧାନ କଲାବେଳେ କେତେକ ଶିଶୁ ନିର୍ଭୁଲ ସମାଧାନ ଉପରେ ଗୁରୁତ୍ୱ ଦେଇ ସମସ୍ୟା ସମାଧାନରେ ଅଧିକ ସମୟ ନେଇଥାନ୍ତି । ଅନ୍ୟପକ୍ଷରେ କେତେକ ଶିଶୁ ସମୟ ବା କ୍ଷୀପ୍ରତା ଉପରେ ପ୍ରାଧାନ୍ୟ ଦେଇ ତରବରିଆ ଭାବରେ ସମସ୍ୟା ସମାଧାନର ଚେଷ୍ଟା କରନ୍ତି ।

ଭିନ୍ନ ଭିନ୍ନ ଦୃଷ୍ଟିକୋଣରୁ ବିଭିନ୍ନ ଶୈଳୀର ସୂଚନା ଦିଆଯାଇପାରେ । ମାତ୍ର ପିଲାମାନଙ୍କର ଚିନ୍ତନକୁ ଲକ୍ଷ୍ୟ କଲେ ଦୁଇଟି ଭାବନା ଶୈଳୀ ସ୍ପଷ୍ଟ ଭାବରେ ପରିଦୃଷ୍ଟ ହୁଏ । ଏହାକୁ ଏକାମୁଖୀ ଏବଂ ବହୁମୁଖୀ ଭାବନା ଶୈଳୀ କୁହାଯାଇପାରେ । ଗୋଟିଏ ଉଦାହରଣ ଦ୍ୱାରା ଏକମୁଖୀ ଓ ବହୁମୁଖୀ ଭାବନା ଶୈଳୀର ଦୃଷ୍ଟାନ୍ତ ଦିଆଯାଇପାରେ । ମନେକରାଯାଉ ଇଟା ଖଣ୍ଡକୁ କେଉଁ ପ୍ରକାରରେ ବ୍ୟବହାର କରାଯାଇ ପାରିବ ବୋଲି ଗୋଟିଏ ପିଲାକୁ ପଚରା ଗଲା । ପିଲାଟି ହୁଏତ କହିବ ଯେ, ଇଟା ଖଣ୍ଡକ ବ୍ୟବହାର କରି ସ୍କୁଲଗୃହ, ଅଫିସ, ବାସଗୃହ, ଗୋଦାମ ଘର, ସ୍କୁଲ ଓ ଅତିଥିଶାଳା ନିର୍ମାଣ କରାଯାଇପାରେ । ଏପରି ଉତ୍ତର ଏକମୁଖୀ ଚିନ୍ତାଧାରାର ସୂଚକ । ଲକ୍ଷ୍ୟ କରିବାର କଥା ଯେ ପ୍ରତିଟି ଉତ୍ତର ମୂଳରେ କିଛି ନିର୍ମାଣ କରିବାର ଭାବଧାରା ରହିଛି । ସବୁ ଉତ୍ତରର କେନ୍ଦ୍ରବିନ୍ଦୁ 'ନିର୍ମାଣ' ବିଚାର କରାଯାଇଛି ।

ଏକା ପ୍ରଶ୍ନରେ ଉତ୍ତର ଦେବାକୁ ଯାଇ ଅନ୍ୟ ଗୋଟିଏ ପିଲା ଭିନ୍ନ ଧରଣର ଉତ୍ତର ଦେଇପାରେ । ଇଟାକୁ ବ୍ୟବହାର କରି ଘର ନିର୍ମାଣ କରିବା, କାନ୍ଥରେ କିଛି ଲେଖିବା, ଟେବୁଲ ଉପରେ ଥୁଆ ହୋଇଥିବା କାଗଜ ଉଡ଼ିନଯିବା ପାଇଁ ତାହା ଉପରେ ଚାପଦେବା, ବିରାଡ଼ିକୁ ଘଉଡ଼ାଇବା, ଇଟା ଉପରେ ଠିଆ ହୋଇ ଉଚ୍ଚ ସ୍ଥାନକୁ କିଛି ଜିନିଷ କାଢ଼ିବା ଏବଂ ପବନରେ ବନ୍ଦ ହୋଇଯାଉଥିବା କବାଟକୁ ଖୋଲା ରଖିବା ପାଇଁ ଇଟାର ବ୍ୟବହାର କରାଯାଇପାରେ ବୋଲି ଦ୍ୱିତୀୟ ପିଲାଟି କହିପାରେ । ଲକ୍ଷ୍ୟ କରିବାର କଥା ଦ୍ୱିତୀୟ ପିଲାଟିର ଉତ୍ତରରେ ଭିନ୍ନ ଭିନ୍ନ ଧରଣର ଚିନ୍ତା ସ୍ଥାନ ପାଇଛି । ଏହା ବହୁମୁଖୀ ଚିନ୍ତନ ଶୈଳୀର

ପରିଚାୟକ । ଅବଶ୍ୟ ଗୋଟିଏ ପିଲା ନିର୍ଦ୍ଦିଷ୍ଟ ସମୟରେ ଏକମୁଖୀ ଭାବନା ଶୈଳୀ ଦର୍ଶାଇବା ସ୍ଥଳେ ଅନ୍ୟ ସମୟରେ ବହୁମୁଖୀ ଭାବନାଶୈଳୀ ପ୍ରଦର୍ଶନ କରିପାରେ । ମାତ୍ର ନିର୍ଦ୍ଦିଷ୍ଟ ପିଲାଟିକୁ ବହୁତ ଗୁଡ଼ିଏ ପରିସ୍ଥିତିରେ ଲକ୍ଷ୍ୟ କଲେ ଏକ ନିର୍ଦ୍ଦିଷ୍ଟ ଶୈଳୀର ବହୁଳ ବ୍ୟବହାର ଘଟୁଥିବାର ଦୃଷ୍ଟିଗୋଚର ହୁଏ । କେଉଁ ପ୍ରକାର ଶୈଳୀ ଅଧିକ ଉପଯୋଗୀ, ଏ ବିଷୟରେ ପ୍ରଶ୍ନ ଉଠିପାରେ । ଅନୁଧ୍ୟାନ କଲେ ଅନୁଭୂତ ହେବ ଯେ, ଏକମୁଖୀ ଭାବନା ଶୈଳୀ କେତେକ ପରିସ୍ଥିତିରେ ଉପଯୋଗୀ ହେବାସ୍ଥଳେ ବହୁମୁଖୀ ଭାବନା ଶୈଳୀ ଅନ୍ୟ ଅବସ୍ଥାରେ ଉପାଦେୟ ହୋଇଥାଏ । କେତେକ ଅବସ୍ଥାରେ ଏକ ନିର୍ଦ୍ଦିଷ୍ଟ ସମାଧାନ ବା ଉତ୍ତର ନିର୍ଭୁଲ ହୋଇଥିଲେ ଏକମୁଖୀ ଭାବନା ଉପଯୋଗୀ ହୁଏ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ସ୍କୁଲରେ ପିଲାଟି କଷୁଥିବା ଅଙ୍କର ଏକ ନିର୍ଦ୍ଦିଷ୍ଟ ଉତ୍ତର ଥାଏ । ଏକ ନିର୍ଦ୍ଦିଷ୍ଟ ପଦ୍ଧତିରେ ଗତି କରି ସମସ୍ୟାର ସମାଧାନ କରିବାକୁ ହୁଏ । ଏପରି କ୍ଷେତ୍ରରେ ଏକମୁଖୀ ଚିନ୍ତନ ଭଲ କାମ କରେ । କିନ୍ତୁ କେତେକ ପରିସ୍ଥିତିରେ ଏକ ନିର୍ଦ୍ଦିଷ୍ଟ ନିର୍ଭୁଲ ଉତ୍ତର ନଥାଏ । ଭଲ ଗପ ବା କବିତାଟିଏ ଲେଖିବାର ସମସ୍ୟା ଏ ଧରଣର । ଏ କ୍ଷେତ୍ରରେ ନିର୍ଦ୍ଦିଷ୍ଟ ନିର୍ଭୁଲ ଉତ୍ତର ନାହିଁ । ସୁତରାଂ ବହୁମୁଖୀ ଚିନ୍ତାର ପ୍ରୟୋଗ କରି ସମାଧାନ କରିବାର ଉଦ୍ୟମ କଲେ ଫଳାଫଳ ସୃଜନାତ୍ମକ ହୁଏ । ପ୍ରକାରାନ୍ତରେ କହିଲେ ବୁଝିବାକୁ ହେବ ଯେ, ସୃଜନାତ୍ମକ କ୍ରିୟାକଳାପ ପାଇଁ ବହୁମୁଖୀ ଚିନ୍ତନ ଉପଯୋଗୀ ଭୂମିକା ନେଇଥାଏ । ବହୁମୁଖୀ ଭାବନା ଫଳରେ ଭିନ୍ନ ଭିନ୍ନ ଦିଗ ଦେଖିବା, ପରୀକ୍ଷା ନିରୀକ୍ଷା କରିବା ଓ ଗତାନୁଗତିକ ଚିନ୍ତାଧାରାର ବାହାରକୁ ଯାଇ ସମସ୍ୟା ସମାଧାନ କରିବାର ଶୈଳୀ ସୁନ୍ଦର ପରିଣତି ସୃଷ୍ଟିକରେ । ସାଧାରଣତଃ ଆମ ସମାଜରେ ପିଲାମାନଙ୍କର ଏକମୁଖୀ ଚିନ୍ତାଧାରାକୁ ଉତ୍ସାହିତ କରାଯାଇଥାଏ । ସ୍କୁଲ ପାଠରେ ସଫଳତା ପାଇଁ ଏହା ସହାୟକ ହୋଇଥିବାରୁ ପିତାମାତା ଓ ଅଭିଭାବକ ଏପରି କରିଥାନ୍ତି । ମାତ୍ର ଅନେକ ସମୟରେ ଶିଶୁ ଓ ପିଲାମାନଙ୍କର ବହୁମୁଖୀ ଚିନ୍ତାଧାରା ପ୍ରୋତ୍ସାହନ ପାଇନଥାଏ । କିନ୍ତୁ ସମାଜକୁ ବୁଦ୍ଧିମନ୍ତ କରିବାକୁ ହେଲେ କଳା, ସାହିତ୍ୟ, ସଙ୍ଗୀତ ଓ ସ୍ଥାପତ୍ୟ ପରି ଲଳିତକଳାରେ ମଧ୍ୟ ବିକାଶ ଆବଶ୍ୟକ । ଏପରି ବିକାଶକୁ ତ୍ୱରାନ୍ୱିତ କରିବାପାଇଁ ବହୁମୁଖୀ ଚିନ୍ତନ ଶୈଳୀ ବେଶ ପ୍ରୟୋଜନ । ଶିଶୁର ଉତ୍ତରକୁ ହାସ୍ୟାସ୍ପଦ ଭାବେ ଏଡ଼ାଇ ଦେବା, ଶିଶୁ ପ୍ରଶ୍ନର ଉତ୍ତର ନଦେବା ଏବଂ ଶିଶୁର ସ୍ୱାଧୀନ ଚିନ୍ତାକୁ ଉତ୍ସାହ ନଦେବା ଫଳରେ ବହୁମୁଖୀ ଚିନ୍ତା ବ୍ୟାହତ ହୁଏ । ସୁତରାଂ ବହୁମୁଖୀ ଚିନ୍ତନ ଶୈଳୀକୁ ଯଥେଷ୍ଟ ପ୍ରୋତ୍ସାହନ ଦେଇ ସୃଜନଶୀଳତାକୁ ତ୍ୱରାନ୍ୱିତ କରିବାର ସାମାଜିକ ଦାୟିତ୍ୱକୁ ବୟସ୍କମାନେ ଗ୍ରହଣ କରିବା ନିତାନ୍ତ ପ୍ରୟୋଜନ ।

## କେଉଁ ବାଟରେ ଯିବେ

୧. ବହୁମୁଖୀ ଚିନ୍ତାର ବିକାଶ ପାଇଁ ଶିଶୁର କୌତୂହଳ ଓ ଅନ୍ୱେଷଣକୁ ଉତ୍ସାହ ଦିଅନ୍ତୁ ।

୨. ଶିଶୁର କେତେକ ପ୍ରଶ୍ନ ଅବାନ୍ତର ହେଲେ ମଧ୍ୟ ସେଥିପ୍ରତି କ୍ରୋଧ ପ୍ରକାଶ ନ କରି ସମ୍ବେଦନଶୀଳ ମନୋଭାବ ନେଇ ବୁଝାଇବାର ଚେଷ୍ଟା କରନ୍ତୁ ।

୩. ଶିଶୁର ପ୍ରତିଟି ପ୍ରଶ୍ନ ଏବଂ ଉତ୍ତରରେ କିଛି ନା କିଛି ସକାରାତ୍ମକ (Positive) ଦିଗ ରହିଛି, ଏପରି ସୂଚନା ବ୍ୟକ୍ତ କରନ୍ତୁ ।



# ଶିଶୁ ଅନ୍ୟର ବ୍ୟବହାର ବୁଝେ କିପରି ?

ଏହା ସର୍ବସ୍ୱୀକୃତ ଯେ ମନୁଷ୍ୟର ବ୍ୟବହାରକୁ ବୁଝିବା ଏବଂ ବୁଝାଇବା ପାଇଁ ମନୋବିଜ୍ଞାନୀମାନେ ଅନେକ ଗୁଡ଼ିଏ ଜଟିଳ ତତ୍ତ୍ୱର ପ୍ରୟୋଗ କରିଛନ୍ତି । ପୁଣି ସାଧାରଣ ଲୋକେ ମଧ୍ୟ ଅନ୍ୟର ବ୍ୟବହାରକୁ ବୁଝିବା ପାଇଁ ନିଜସ୍ୱ ଶୈଳୀରେ କେତେକ ଧାରଣାର ଉପଯୋଗ କରିଛନ୍ତି । ଆପଣଙ୍କର ପଡ଼ୋଶୀ କାହିଁକି ଆପଣଙ୍କ ପ୍ରତି ଏପରି ବ୍ୟବହାର କଲେ ? ଆପଣଙ୍କ ବନ୍ଧୁ କାହିଁକି ଏପରି ବ୍ୟବହାର କଲେ ? ଏପରି ପ୍ରଶ୍ନ ପଚରାଗଲେ ଆମେ ହୁଏତ ଉତ୍ତର ଦେଇପାରିବା ନାହିଁ । କିନ୍ତୁ ଅନ୍ୟ ସମୟରେ ଉତ୍ତର ମଧ୍ୟ ଦେଇପାରିବା । ଏ ଉତ୍ତରଗୁଡ଼ିକ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଠିକ୍ ହୋଇନପାରେ । ତଥାପି ଆପଣ ନିଜେ ଅନ୍ୟ ବ୍ୟବହାରର କାରଣ ସମ୍ପର୍କରେ କିଛି ଚିନ୍ତା କରିଥାନ୍ତି ।

ବର୍ତ୍ତମାନ ଶିଶୁଙ୍କ କଥା ବିଚାର କରିବା । ପ୍ରଶ୍ନଟି ହେଉଛି ଶିଶୁ କ'ଣ ଅନ୍ୟର ବ୍ୟବହାର ଗୁଡ଼ିକର କାରଣ ବୁଝିପାରେ ? ଯଦି ଶିଶୁ ଏପରି କରୁଥାଏ ତେବେ କେଉଁ କେଉଁ ଉପାଦାନ ଉପରେ ଭିତ୍ତି କରି ଶିଶୁ ଅନ୍ୟର ବ୍ୟବହାର



(ପ୍ରିୟଜନଙ୍କ ପ୍ରୋତ୍ସାହନ)

ବୁଝେ । ମନସ୍ତତ୍ତ୍ୱବିଦ୍‌ମାନଙ୍କ ମତରେ ଶିଶୁ ଅନ୍ୟର ବ୍ୟବହାର ବୁଝିବାର ପ୍ରଯତ୍ନ କରେ । ଅନ୍ୟ ବ୍ୟକ୍ତିଟି କାହିଁକି ଏପରି କରୁଛି, ତାହା ସମ୍ପର୍କରେ ଶିଶୁର ଏକ ନିଜସ୍ୱ ତତ୍ତ୍ୱ ରହିଥାଏ । ଏପରି 'ମନସ୍ତତ୍ତ୍ୱ' ବୟସ୍କମାନଙ୍କର ତତ୍ତ୍ୱ ଠାରୁ ଭିନ୍ନ । ଏପରି ତତ୍ତ୍ୱ ମନୋବିଜ୍ଞାନୀର ତତ୍ତ୍ୱଠାରୁ ଭିନ୍ନ । ତଥାପି କିଛି ନିଜସ୍ୱ ରୀତିରେ ଅନ୍ୟର ବ୍ୟକ୍ତିତ୍ୱର କାରଣ ଚିନ୍ତା କରେ ।

ଶିଶୁର ଚାରିବର୍ଷ ବେଳକୁ ସେ ଏପରି କାର୍ଯ୍ୟ କାରଣ ଚିନ୍ତନ ପ୍ରକାଶ କରେ । ଏଥିରେ ତିନୋଟି ଉପାଦାନ ମୁଖ୍ୟ । ସେଗୁଡ଼ିକ ହେଉଛି ବିଶ୍ୱାସ, ଇଚ୍ଛା ଓ ଏବଂ କାର୍ଯ୍ୟ । ଶିଶୁ ଅନୁଭବ କରେ ଯେ, ଅନ୍ୟର କିଛି ଧାରଣା ବା ବିଶ୍ୱାସ ରହିଛି । ଅନ୍ୟ ବ୍ୟକ୍ତି କିଛି କରିବା ପାଇଁ ଇଚ୍ଛା କରୁଛି ଏବଂ ଏପରି ଇଚ୍ଛା ଫଳରେ ସେ କିଛି କାର୍ଯ୍ୟ କରୁଛି । ଧାରଣା (ବିଶ୍ୱାସ) ଓ ଇଚ୍ଛା ଦେଖିହେବନି ମାତ୍ର କାର୍ଯ୍ୟଟି ଦେଖିହେବ । ଉଦାହରଣ ସ୍ୱରୂପ ଅନ୍ୟ ଗୋଟିଏ ବ୍ୟକ୍ତି ବା ଅନ୍ୟ ଗୋଟିଏ ଶିଶୁର ବିରାଡ଼ି ସମ୍ପର୍କରେ ଧାରଣା ଓ ଇଚ୍ଛା ଥିବାରୁ ସେ ପ୍ରକୃତ ବିରାଡ଼ିଟିକୁ ଖୋଜୁଛି । ବିଦ୍ୟାଳୟର ପ୍ରାରମ୍ଭିକ ସ୍ତରରେ (ଚାରିବର୍ଷ ବୟସ ବେଳକୁ) ଶିଶୁ ଏପରି ବିଚାରଧାରା ଦର୍ଶାଏ ।

ମନେକରାଯାଉ ଶିଶୁକୁ ଗୋଟିଏ ପ୍ରଶ୍ନ ପଚରାଗଲା–'ଶ୍ୟାମ ଭାବୁଛି ଯେ, ବିରାଡ଼ିଟି ଖଟ ତଳେ ଶୋଇଛି । ମାତ୍ର ପ୍ରକୃତରେ ବିରାଡ଼ିଟି ବଗିଚାରେ ବୁଲୁଛି । ଶ୍ୟାମ ବିରାଡ଼ିଟିକୁ କେଉଁଠାରେ ଖୋଜିବ' ? ଏପରି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଶିଶୁଟି ଉତ୍ତର ଦେବ ସେ ଶ୍ୟାମ ବିରାଡ଼ିଟିକୁ ଖଟତଳେ ଖୋଜିବ । ବିରାଡ଼ିଟି ଖଟତଳେ ଖୋଜିବ । ବିରାଡ଼ିଟି ଖଟତଳେ ଥିବାର ବିଶ୍ୱାସ ଶ୍ୟାମକୁ ଖଟତଳେ ଖୋଜିବା କାମରେ ଲଗାଇବା ବୋଲି କିଛି ଅନୁଭବ କରିବ ।

ଏହିପରି ପ୍ରଶ୍ନର ଅନ୍ୟସବୁ ରୂପାନ୍ତର ଘଟାଇ ଶିଶୁକୁ ପ୍ରଶ୍ନ ପଚରାଯାଇପାରେ । ମୁଖ୍ୟତଃ ଦେଖାଯିବ ଯେ, ଶିଶୁ ଉତ୍ତର ଦେବା ସମୟରେ ଶିଶୁ ଅନ୍ୟର କାର୍ଯ୍ୟର କାରଣ ସୂଚିତ କରିବା ସମୟରେ ତାଙ୍କର ଧାରଣା (ଭାବନା ବା ବିଶ୍ୱାସ)କୁ କାର୍ଯ୍ୟର କାରଣ ବୋଲି ଉଲ୍ଲେଖ କରିବ ।

ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରଶ୍ନକୁ ଜଟିଳ କରାଯାଇପାରେ । ମନେକରାଯାଉ ପ୍ରଶ୍ନଟି ହେଉଛି 'ବିରାଡ଼ି ଖଟ ତଳେ ଅଛି ବୋଲି ଶ୍ୟାମ ଭାବୁଛି । ଶ୍ୟାମର ମା' ବିରାଡ଼ିକୁ ବଗିଚାରେ ବୁଲୁଥିବାର ଦେଖିଲେ । ପ୍ରକୃତରେ ବିରାଡ଼ି କେଉଁଠାରେ ଅଛି' ? ଏ କ୍ଷେତ୍ରରେ ଚାରିବର୍ଷର ଶିଶୁଟି ଅଡୁଆରେ ପଡ଼ିବ । ଶ୍ୟାମ କେଉଁଠାରେ ଖୋଜିବ ?

ଏ ପ୍ରଶ୍ନର ସିଧାସଳଖ ଉତ୍ତର ଦେଇପାରିବ । ମାତ୍ର ବିରାଡ଼ିଟି କେଉଁଠାରେ ଅଛି ? ଏପରି ପ୍ରଶ୍ନ ଦ୍ୱନ୍ଦ୍ୱ ସୃଷ୍ଟି କରିବ । ପ୍ରାକ୍ ବିଦ୍ୟାଳୟ ପ୍ରଥମ ଭାଗରେ ଶିଶୁ ଏପରି ସମାଧାନ କରିବାରେ ସମୟ ଦେଇନଥାଏ । ମାତ୍ର ପରବର୍ତ୍ତୀ ପର୍ଯ୍ୟାୟରେ ଶିଶୁ ଏପରି ପ୍ରଶ୍ନ ସବୁର ସମାଧାନ ଶିକ୍ଷା କରେ ।

ମୂଳତଃ ଏହି ପର୍ଯ୍ୟାୟରେ ଏକ ବିଶେଷ ଗୁରୁତ୍ୱ ରହିଛି । ଅନେକଙ୍କର ଧାରଣା ଯେ, ଶିଶୁ ତାହାର ବାହ୍ୟ ଜଗତରେ ଯେଉଁସବୁ ଦୃଶ୍ୟମାନ ଦେଖେ ଶିଶୁର ମାନସିକ ବିକାଶ କେବଳ ସେହିସବୁ ବସ୍ତୁ ମଧ୍ୟରେ ସୀମାବଦ୍ଧ । ମାତ୍ର ଏହା ଠିକ୍ ନୁହେଁ, ଚାରିବର୍ଷ ବେଳକୁ ଶିଶୁ ଭାଷାର ପ୍ରୟୋଗ କରି ସାରିଥାଏ । ପ୍ରକୃତ ବିରାଡ଼ିଟିକୁ ସୂଚାଇବାକୁ ସେ 'ବିରାଡ଼ି' ଶବ୍ଦଟି ପ୍ରୟୋଗ କରେ । ଠିକ୍ ସେହିପରି ଅନ୍ୟତମ ପ୍ରତୀକ ମଧ୍ୟ ବ୍ୟବହାର ରୂପେ ଶିଶୁ ଅନ୍ୟର ଭାବନା (ବିଶ୍ୱାସ ବା ଧାରଣା) ଏବଂ ଏହି ଧାରଣା ପ୍ରେରିତ କାର୍ଯ୍ୟ ମଧ୍ୟରେ ସମ୍ପର୍କ ଦେଖେ । ପ୍ରତୀକ ସବୁର ବ୍ୟବହାର କେବଳ ଭାଷା ପ୍ରୟୋଗରେ ନୁହେଁ, ମିଛିମିଛିକାଖେଳ ପରି ଅନ୍ୟ କେତେକ ବ୍ୟବହାରରେ ମଧ୍ୟ ପ୍ରକାଶିତ ହୁଏ । ଏ ଦୃଷ୍ଟିରୁ ଶିଶୁର ଚିନ୍ତନ-ସାମର୍ଥ୍ୟକୁ ନିମ୍ନମାନର ବୋଲି ବିଚାର ନକରି ଶିଶୁର ଦକ୍ଷତାକୁ ଉପଯୋଗ କରାଯିବା ଉଚିତ୍ ।



# ବାହ୍ୟ ଅବସ୍ଥାର ପରିବର୍ତ୍ତନ ଓ ଶିଶୁର ଚିନ୍ତନ-ଶୈଳୀ

ବୟସ୍କ ବ୍ୟକ୍ତିଜଣକ ଗୋଟିଏ ଫାଇଲ୍‌ରେ କିଛି କାଗଜ ନେଇ ଯାଉଥିବା ସମୟରେ ପବନରେ ଉଡ଼ିଯାଇ ତଳେ ପଡ଼ିଲେ ବ୍ୟକ୍ତିଜଣକ ସେସବୁ ପୁନଶ୍ଚ ସଂଗ୍ରହ କରିନେବେ । ସବୁ ତଳ ଉପର ହୋଇଯାଇଥିଲେ ମଧ୍ୟ ବ୍ୟକ୍ତିଜଣକ ଅନୁଭବ କରିବେ ଯେ ପୂର୍ବର ସବୁ କାଗଜ ରହିଅଛି । ମାତ୍ର ଏପରି ସ୍ଥଳେ ଗୋଟିଏ ପ୍ରାକ୍-ବିଦ୍ୟାଳୟ ସ୍ତରର ଶିଶୁଟିର ଅନୁଭବ କିପରି ରହିବ ?

ଅନେକ ସମୟରେ ତିନି ଚାରିବର୍ଷର ପ୍ରାକ୍ ବିଦ୍ୟାଳୟ ସ୍ତରରେ ଶିଶୁର ଭାବନା ବାହ୍ୟ ଅବସ୍ଥା ଦ୍ୱାରା ପ୍ରଭାବିତ ହୁଏ । ମାନସିକ ସ୍ତରରେ ଶିଶୁଟି ପୂର୍ବ ଅବସ୍ଥାର କଳ୍ପନା କରିପାରେ ନାହିଁ । ଏପରି ସାମର୍ଥ୍ୟର ଅଭାବ କେତେକ ଜଟିଳତା ସୃଷ୍ଟି କରେ । ଗୋଟିଏ ସୁନ୍ଦର ପରୀକ୍ଷା ସାହାଯ୍ୟରେ ପ୍ରମାଣ ଦିଆଯାଇପାରେ ।

ମନେ କରାଯାଉ ଦୁଇଟି ଲମ୍ବାପାତ୍ରରେ ସମାନ ପରିମାଣରେ ପାଣି ରଖାଗଲା । ଶିଶୁକୁ ପଚରାଗଲା କେଉଁ ପାତ୍ରରେ ଅଧିକ ଜଳ ରହିଛି ? ଏପରି ପ୍ରଶ୍ନର ଉତ୍ତର ତିନି ଚାରି ବର୍ଷର ଶିଶୁ ସହଜରେ ସମାଧାନ କରିପାରିବ । ଦୁଇଟି ପାତ୍ରରେ ଜଳର ସମାନ ପତନ (ଉଚ୍ଚତା) ଦେଖି ସମାନ ପରିମାଣର ପାଣି ରହିଛି ବୋଲି ଉତ୍ତର ଦେବ । ବର୍ତ୍ତମାନ ଶିଶୁର ସମ୍ମୁଖରେ ଅବସ୍ଥାର ପରିବର୍ତ୍ତନ କରାଯିବ । ଦ୍ୱିତୀୟ ପାତ୍ରଟିର ପାଣି ଗୋଟିଏ ଚଉଡ଼ା ପାତ୍ର (ତୃତୀୟ ପାତ୍ର) ଟିକୁ ଢଳାଯିବ । କହିବା ଅନାବଶ୍ୟକ ଯେ ତୃତୀୟ ପାତ୍ରଟ ଚଉଡ଼ା ହୋଇଥିବାରୁ ଏଥିରେ ଜଳର ପତନ (ଉଚ୍ଚତା) କମ୍ ରହିବ । ବର୍ତ୍ତମାନ ଶିଶୁଟିକୁ ପଚରାଯିବ- ଦୁଇଟି ପାତ୍ରରେ ସମାନ ପରିମାଣରେ ଜଳ ରହିଛି କି ? ଲମ୍ବ ଆକାରର ପାତ୍ରରେ ଅଧିକ ପାଣି ରହିଛି ବୋଲି ଶିଶୁ କହିବ । ଏହାର କାରଣ କଣ ? ପ୍ରଥମ କାରଣ ହେଉଛି ଯେ ଶିଶୁ ମନରେ ଧାରଣା ସବୁ ପର୍ଯ୍ୟାୟକ୍ରମେ ବିକାଶ ଲାଭ କରେ । ଆୟତନର ଧାରଣା ବିକଶିତ ହେବା ପୂର୍ବରୁ ଶିଶୁ ମନରେ ଦୈର୍ଘ୍ୟର ଧାରଣା ଆସିଥାଏ । ସୁତରାଂ ଜଳପାତ୍ରରେ ଜଳର ଉଚ୍ଚତା ଦେଖି ସେ କମ୍ ବେଶୀର ବିଚାର କରିବ । ଦ୍ୱିତୀୟତଃ ଶିଶୁର ସମ୍ମୁଖରେ ଗୋଟିଏ ଲମ୍ବା ପାତ୍ରରୁ ଚଉଡ଼ା ପାତ୍ରକୁ ପାଣି ଢଳା ଯାଇଥିଲେ ମଧ୍ୟ ଶିଶୁ ମନ ମଧ୍ୟରେ ଏ ପୂର୍ବ ଅବସ୍ଥାକୁ ଫେରିଯାଇପାରେ ନାହିଁ । ସୁତରାଂ ବର୍ତ୍ତମାନ ପରିବର୍ତ୍ତିତ ପରିସ୍ଥିତିରେ ସେ

ଅବସ୍ଥାକୁ ଦେଖି ଜଳର ଉଚ୍ଚତା (ପତନ) ଦେଖି ନିଷ୍ପତ୍ତି ଗ୍ରହଣ କରେ । ଅବଶ୍ୟ ବାହ୍ୟ ଅବସ୍ଥାର ପରିବର୍ତ୍ତନ ଦ୍ୱାରା ସଂପୂର୍ଣ୍ଣ ଭାବରେ ପ୍ରଭାବିତ ହୋଇ ସଦାସର୍ବଦା ଶିଶୁଟି ଯେ ପୂର୍ବାବସ୍ଥା କଳ୍ପନା କରି ନଥାଏ, ସେ କଥା ନୁହେଁ । ଗୋଟିଏ ଜଳୁଥିବା ମହମବତୀ କିଛି ସମୟ ଜଳିବା ପରେ ଏହାର ଆକାର ଛୋଟ ହୋଇଯାଇଥିଲେ ମଧ୍ୟ ଶିଶୁ ଏହାକୁ ମହମବତୀ ବୋଲି ଚିହ୍ନିପାରେ । ସେହିପରି ବହୁଥର ଦେଖୁଥିବା ଗୋଟିଏ ଗଛ ବଢ଼ି ବଡ଼ ହୋଇଯାଇଥିଲେ ସେ ଏହାକୁ ପୂର୍ବର ଗଛ ବୋଲି ଜାଣିପାରେ । ମହମବତୀ ଓ ଗଛ ବାହ୍ୟଅବସ୍ଥାର ପରିବର୍ତ୍ତନ ସତ୍ତ୍ୱେ ମହମବତୀ ଓ ଗଛପରି ଦିଶୁଥିବାରୁ ଶିଶୁର ବିଶେଷ ଭ୍ରମ ହୁଏନାହିଁ ।

ପୁଣି କୌତୁହଳର ବିଷୟ ଯେ, ପୂର୍ବରୁ ବର୍ଣ୍ଣନା କରାଯାଇଥିବା ଲମ୍ବା ଆକାରର ପାତ୍ରରୁ ଓସାରିଆ ପାତ୍ରକୁ ପାଣି ଢଳାଗଲା ପରେ ଶିଶୁ ଓସାରିଆ ପାତ୍ରରେ କମ୍ ପାଣି ଅଛି ବୋଲି କହିଥାଏ । କିନ୍ତୁ ଏହି ପ୍ରଶ୍ନଟିକୁ ଅନ୍ୟପ୍ରକାରେ ଏକ ଗଳ୍ପ ଆକାରରେ ପଚରାଗଲେ ଫଳାଫଳ ଭିନ୍ନ ହୋଇଥାଏ । ଶିଶୁଟିକୁ ଭାଲୁ ଗପ କହିବା ଛଳନାରେ କୁହାଯାଇପାରେ ଯେ, ଭାଲୁଟି ଘର ଭିତରକୁ ଚାଲିଆସିଲା । ସେ ଗୋଟିଏ ଲମ୍ବା କାଚ ପାତ୍ରରେ ରଙ୍ଗୀନ ପାଣି ଦେଖିଲା । ମାତ୍ର ସେ ପାତ୍ରରେ ମୁହଁଟି ପଶିବ ନାହିଁ । ସେ ଆଉ ଗୋଟିଏ ଚଟକା ପାତ୍ରରେ ତାହାକୁ ଢାଳିଦେଲା । ବର୍ତ୍ତମାନ ପଚରାଯିବ—ଚଟକା ପାତ୍ରରେ ଅଧିକା କି କମ୍ ପାଣି ଥିଲା । ଏ କ୍ଷେତ୍ରରେ ବହୁ ଶିଶୁ ଠିକ୍ ଉତ୍ତର ଦେବେ । ଏହାର ତାତ୍ପର୍ଯ୍ୟ ହେଉଛି ଯେ, ଚାରିବର୍ଷ ବୟସ ବେଳକୁ ଆୟତନ ସମ୍ପର୍କରେ କିଛିଟା ଧାରଣା ଆସିଥାଏ । ପ୍ରଶ୍ନର ଶୈଳୀ ଉପରେ ନିର୍ଭର କରି ଶିଶୁ ସଠିକ ଉତ୍ତର ଦେଇଥାଏ । ଏହି ବୟସରେ ଦୈର୍ଘ୍ୟ, ପ୍ରସ୍ଥ ଓ ଉଚ୍ଚତା ଥିବା ବସ୍ତୁ ସହିତ ଖେଳାଖେଳି କରିବା ମାଧ୍ୟମରେ ଶିଶୁର ଆୟତନ ସମ୍ପର୍କରେ ଅଧିକରୁ ଅଧିକ ଧାରଣା ଜନ୍ମେ । ଏ ଦୃଷ୍ଟିରୁ ଆୟତନ ବିଶିଷ୍ଟ ମଡ଼େଲ ଇତ୍ୟାଦିର ବ୍ୟବହାର ପାଇଁ ଶିଶୁକୁ ଉତ୍ସାହିତ କରିବା ବିଧେୟ ।



# ଶିଶୁର ବ୍ୟବହାର ପରିବର୍ତ୍ତନରେ ଶାସ୍ତିବିଧାନ କେତେଦୂର ଗ୍ରହଣୀୟ ?

ବ୍ୟବହାର ଗଠନ ଏକ ଜଟିଳ ପ୍ରକ୍ରିୟା । ବିଶେଷତ୍ୱ ଶିଶୁର ବ୍ୟବହାର ଗଠନ କ୍ଷେତ୍ରରେ ଅନ୍ୟମାନଙ୍କୁ ଯଥେଷ୍ଟ ପରିମାଣରେ ସତର୍କତା ଅବଲମ୍ବନ କରିବାକୁ ହୁଏ । ବୟସ୍କମାନେ ବହୁ ଭାବରେ ନିଜର ପରିବେଶ ନିଜେ ତିଆରି କରିପାରନ୍ତି । ମାତ୍ର ଶିଶୁ ଯେଉଁସବୁ ପରିବେଶ ଦେଇ ଗତିକରେ ସେସବୁର ପ୍ରଭାବ ଗଭୀର ଭାବରେ ଶିଶୁ ବ୍ୟବହାରକୁ ନିୟନ୍ତ୍ରିତ କରେ । ପ୍ରୀତିପଦ ଓ ସ୍ପୃହଣୀୟ ବ୍ୟବହାର ଗଠନ କ୍ଷେତ୍ରରେ ପ୍ରୋତ୍ସାହନର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଶିଶୁ ଭଲ କାମଟିଏ କରିବା ମାତ୍ରେ ତାହାକୁ ପୁରସ୍କାର ବା ପ୍ରୋତ୍ସାହନ ଦେଇ ବ୍ୟବହାରଟିକୁ ଦୃଢ଼ୀଭୂତ କରାଯାଇପାରେ । ଭଲ ବ୍ୟବହାରର ପରେ ପରେ ପ୍ରୋତ୍ସାହନର ପୁନରାବୃତ୍ତି ଘଟିଲେ ନିର୍ଦ୍ଦିଷ୍ଟ ବ୍ୟବହାରଟି ଗଠିତ ଓ ଦୃଢ଼ୀଭୂତ ହୁଏ ।

ଉତ୍ତମ ଓ ପ୍ରୀତିପଦ ବ୍ୟବହାର ଗଠନ କ୍ଷେତ୍ରରେ ପୁରସ୍କାର ଓ ପ୍ରୋତ୍ସାହନର ଭୂମିକା ସର୍ବସ୍ୱୀକୃତ । ଅବଶ୍ୟ ପୁରସ୍କାର କେବଳ ବସ୍ତୁଗତ (ଲଜେନ୍ସ, ଖାଦ୍ୟ ପଦାର୍ଥ ବା ଉପାହାର) ନହୋଇ ଅନ୍ୟ ପ୍ରକାରର ହୋଇପାରେ । ଆମ ସ୍ମିତହାସ, ଆଦରଯତ୍ନ, ଆଲିଙ୍ଗନ ଓ ସ୍ନେହସ୍ପର୍ଶ ଇତ୍ୟାଦି ପ୍ରୋତ୍ସାହନର ସୂଚକ । ଭଲ ବ୍ୟବହାର ଗଠନ କ୍ଷେତ୍ରରେ ପ୍ରୋତ୍ସାହନ ପ୍ରଦାନ କାର୍ଯ୍ୟ କରୁଥିଲେ ମଧ୍ୟ ବ୍ୟବହାର ଗଠନର ଅନ୍ୟ ଏକ କ୍ଷେତ୍ରରେ କିଛିଟା ଜଟିଳତା ଥାଏ । ତାହା ହେଉଛି ଅବାଞ୍ଛିତ ବ୍ୟବହାରର ଦୂରୀକରଣ ପାଇଁ ଶାସ୍ତି ହିଁ ଏକମାତ୍ର ପନ୍ଥା । ଏଥିପାଇଁ ଶିଶୁର ଖରାପ ବ୍ୟବହାର ଦେଖିଲା ମାତ୍ରେ ସେମାନେ ଶାସ୍ତିବିଧାନର ଆଶ୍ରୟ ନିଅନ୍ତି । ମାତ୍ର ଏହା ଏକ କ୍ଷତିକାରକ ଉପାୟ । ଅନେକ ସମୟରେ ଶାସ୍ତିବିଧାନ ବିଶେଷ କରି ଶାରୀରିକ ଦଣ୍ଡ ପ୍ରକୃତ ଲକ୍ଷ୍ୟ ସାଧନରେ ସହାୟକ ନହୋଇ ଅଧିକ କ୍ଷତି ଘଟାଇ ଥାଏ । ଶାସ୍ତି ପାଇଥିବା ଶିଶୁଟି ହୁଏତ ବ୍ୟବହାରର ପରିବର୍ତ୍ତନ ଦର୍ଶାଇପାରେ, ମାତ୍ର ପରିବର୍ତ୍ତନ ଅଣାଇଥିବା ପିତାମାତା ଓ ଅଭିଭାବଙ୍କ ପ୍ରତି ନିଜର ଘୃଣାଭାବ ପୋଷଣ କରେ । ଏପରି ପରିଣତି କାମ୍ୟ ନୁହେଁ ।

ଅନ୍ୟ ସମୟରେ ଶାସ୍ତିବିଧାନ ଫଳରେ ଶିଶୁଟି କିଛି ପରିବର୍ତ୍ତନ ଦର୍ଶାଇଲେ ମଧ୍ୟ ସେପରି ପରିବର୍ତ୍ତନ ଦୀର୍ଘସ୍ଥାୟୀ ହୋଇନଥାଏ । ଦଣ୍ଡ ଦେଉଥିବା ବ୍ୟକ୍ତି

ଶିଶୁର ପରିବେଶ ମଧ୍ୟରେ ରହିଥିବା ପର୍ଯ୍ୟନ୍ତ ଶିଶୁ ନିଜର ଖରାପ ବ୍ୟବହାରକୁ ଚାପିରଖେ । ମାତ୍ର ପରିବର୍ତ୍ତନ ଅଣାଇବା ବ୍ୟକ୍ତିଟି ଦୂରକୁ ଚାଲିଗଲେ ଏବଂ ପରିବେଶରୁ ଅପସରି ଗଲେ ଶିଶୁର ବ୍ୟବହାର ପୂର୍ବପରି ଅବାଞ୍ଛିତ ରୂପ ନିଏ । ଅନ୍ୟ କେତେକ କ୍ଷେତ୍ରରେ ଶିଶୁ ଶାସ୍ତି ପାଇବା ପରେ ନିଜର ଖରାପ ବ୍ୟବହାରଟି ହ୍ରାସ ନକରି ଅଧିକରୁ ଅଧିକ ତ୍ରୁଟିପୂର୍ଣ୍ଣ ବ୍ୟବହାର ଦର୍ଶାଏ । ସୁତରାଂ ଏହିସବୁ ଜଟିଳତାକୁ ଏଡ଼ାଇବା ପାଇଁ ଶାସ୍ତି ବିଧାନ ନିଷ୍ପତ୍ତି ଖୁବ୍ କମ୍‌ସଂଖ୍ୟକ ପରିସ୍ଥିତିରେ ନିଆଯିବା ଉଚିତ୍ । ଧରାଯାଉ ଗୋଟିଏ ପିଲା ଖୁବ୍ ଅଧିକ ପରିମାଣର ଅବାଞ୍ଛିତ ବ୍ୟବହାର ଦର୍ଶାଉଛି । ନିଜର ମୁଣ୍ଡ ବାଳକୁ ଟାଣି ଟାଣି ବାଳସବୁ ଛିଣ୍ଡାଇ ପକାଉଛି । ଏପରିସ୍ଥଳେ ଅନ୍ୟ କୌଣସି ଉପାୟ ନଥିବାରୁ କିଛି ମାତ୍ରାରେ ଶାସ୍ତିବିଧାନର ପ୍ରୟୋଗ ଆବଶ୍ୟକ ହୋଇପାରେ ।

ଶାସ୍ତିବିଧାନ ପରିପ୍ରେକ୍ଷୀରେ ଆଉ ଗୋଟିଏ କଥା ସ୍ପଷ୍ଟ ଭାବରେ ମନେ ରଖିବାକୁ ହେବ । ପ୍ରୋତ୍ସାହନ ପ୍ରଦାନ ଏବଂ ଦଣ୍ଡବିଧାନ ମଝିରେ ଆଉ ଗୋଟିଏ ଉପାୟ ରହିଛି । ତାହା ହୁଏତ ଅଧିକ ଫଳପ୍ରଦ ହୋଇପାରେ । ଏପରି କୌଶଳ ହେଉଛି ପ୍ରୋତ୍ସାହନ ଅପସାରଣ ବା ଦୂରେଇ ନେବାର କୌଶଳ । ଧରାଯାଉ ଗୋଟିଏ ଶିଶୁ ହାତ ନଧୋଇ ଖାଇବା ପାଇଁ ଜିଦ୍ କରୁଛି । ଏହି କ୍ଷେତ୍ରରେ କେତେକ ପିତାମାତା ପିଲାକୁ ଦଣ୍ଡ ଦେଇଥାନ୍ତି । ମାତ୍ର ଦଣ୍ଡଦେବା ବଦଳରେ ପ୍ରୋତ୍ସାହନର ଅପସାରଣ ନୀତି ଅଧିକ ସକ୍ରିୟ ହୁଏ । ପିତାମାତା ହୁଏତ କହିପାରନ୍ତି-'ହାତ ନଧୋଇଲେ ଆମ ସହିତ ଖାଇବାକୁ ଦିଆଯିବ ନାହିଁ' । ଏ କ୍ଷେତ୍ରରେ ପିଲାଟିକୁ ପୂର୍ବ ସୁବିଧା ସୁଯୋଗରୁ ବଂଚିତ କରାଯାଉଛି । କୌଣସି ଶାରୀରିକ ଦଣ୍ଡ ଦିଆନଯାଇ ତାହାର ଆନନ୍ଦଦାୟକ କାର୍ଯ୍ୟକଳାପ ବା ସୁବିଧାସୁଯୋଗକୁ ପ୍ରତ୍ୟାହାର କରାଯାଉଛି । ଅନେକ ସମୟରେ ଏପରି କୌଶଳ ଦଣ୍ଡବିଧାନ ଠାରୁ ଯଥେଷ୍ଟ ଅଧିକ ଫଳପ୍ରଦ ହୋଇଥାଏ । ଅବାଞ୍ଛିତ ବ୍ୟବହାର ପରିବର୍ତ୍ତନ କ୍ଷେତ୍ରରେ ପ୍ରୋତ୍ସାହନ ବା ସୁବିଧା ସୁଯୋଗ ଦୂରେଇ ନେବାର କୌଶଳଟି ଭଲ କାମକରେ ।

ଅବଶ୍ୟ ଅଳ୍ପ କେତେକ କ୍ଷେତ୍ରରେ ଶାସ୍ତି ବିଧାନ ଅପରିହାର୍ଯ୍ୟ ହୋଇପଡ଼େ । ଏପିର କ୍ଷେତ୍ରରେ ଶାସ୍ତିବିଧାନ ସମୟରେ ଯଥେଷ୍ଟ ସତର୍କତା ଅବଲମ୍ବନ କରିବାକୁ ହୁଏ । ତିନି ଚାରୋଟି ସତର୍କତା ନିଶ୍ଚିତ ଭାବରେ ଉପଯୋଗୀ । ପ୍ରଥମତଃ ଶିଶୁକୁ ଶାସ୍ତି ଦେଲାବେଳେ ପିତାମାତା ଓ ଅଭିଭାବକ ସ୍ଥିରତା ରକ୍ଷା କରିବେ । ଏହାର ଅର୍ଥ ହେଉଛି ଯେ ଗୋଟିଏ ନିର୍ଦ୍ଦିଷ୍ଟ କାର୍ଯ୍ୟ ବା ବ୍ୟବହାର ଅବାଂଛିତ ହୋଇଥିଲେ ଏହାର ପ୍ରତିଟି ପ୍ରଦର୍ଶନ ପରେ ପରେ ଶିଶୁକୁ

ଶାସ୍ତି ବା ନିରୁତ୍ସାହ ମିଳିବା ଉଚିତ୍ । ଧରାଯାଉ ଘରର ଜିନିଷପତ୍ର ଭଙ୍ଗାଭଙ୍ଗି କରିବା ଏକ ଅବାଂଛିତ ବ୍ୟବହାର । କିନ୍ତୁ ଗୋଟିଏ ସମୟରେ ଶିଶୁକୁ ଏଥିପାଇଁ ଦଣ୍ଡଦେବା ସ୍ଥଳେ ଅନ୍ୟ ସମୟରେ ନିଜେ କାର୍ଯ୍ୟବ୍ୟସ୍ତ ଥାଇ ଏପରି ଦଣ୍ଡବିଧାନକୁ ଏଡ଼ାଇଯିବା ଉଚିତ୍ ନୁହେଁ । ଦ୍ୱିତୀୟତଃ ଦଣ୍ଡବିଧାନ ସମୟରେ ଶିଶୁଟିକୁ ଦଣ୍ଡବିଧାନର କାରଣ ସ୍ପଷ୍ଟରୂପେ ସୂଚାଇବା ଆବଶ୍ୟକ । ଶିଶୁଟି କାହିଁକି ଦଣ୍ଡପାଉଛି, ତାହା ସେ ଭଲ ରୂପେ ଜାଣିବା ଉଚିତ୍ । ସୁତରାଂ ଶିଶୁ ବୁଝିପାରିବା ଭଳି ଭାଷାର ଉପଯୋଗ କରି ଦଣ୍ଡବିଧାନର କାରଣ ନିର୍ଦ୍ଦେଶ କରିବା ପ୍ରୟୋଜନ । ପୁଣି ଅବାଂଛିତ ବ୍ୟବହାରର ପରେ ପରେ ଶାସ୍ତିବିଧାନର ପ୍ରୟୋଗ ଦରକାର । ଖରାପ ବ୍ୟବହାର ଓ ଦଣ୍ଡବିଧାନ ମଧ୍ୟରେ ଦୀର୍ଘ ସମୟର ବ୍ୟବଧାନ ରହିଲେ ପ୍ରଭାବ ହ୍ରାସ ପାଇଥାଏ ।

ପରିଶେଷରେ କୁହାଯାଇପାରେ ଯେ, ଦଣ୍ଡବିଧାନର ମାତ୍ରା କେତେ ପରିମାଣରେ ହେବ, ତାହା ନିର୍ଦ୍ଦିଷ୍ଟ ଭାବରେ କୁହାଯାଇପାରିବ ନାହିଁ । ଦଣ୍ଡ ଦେଉ ନଥିବା ବ୍ୟକ୍ତିର ଅଳ୍ପ ପରିମାଣର ଶାସ୍ତି ଶିଶୁଟି ପାଇଁ ଅଧିକ ଶାସ୍ତିର ରୂପ ନିଏ । ଏ ଦୃଷ୍ଟିରୁ ବ୍ୟବହାର ତ୍ରୁଟିର ମାତ୍ରା, ଶିଶୁର ବୟସ ଏବଂ ଯତ୍ନକାରୀଙ୍କ ପ୍ରତି ଶିଶୁଟିର ମନୋଭାବକୁ ବିଚାର କରି ଶାସ୍ତିର ପରିମାଣ ସ୍ଥିର କରାଯିବା ଉଚିତ୍ । ମୂଳତଃ ଶାସ୍ତିବିଧାନ ଏକ ବହୁ ବ୍ୟବହୃତ ପନ୍ଥା ନହୋଇ ଏକ ସତର୍କତା ପୂର୍ଣ୍ଣ ପରିବର୍ତ୍ତନ କୌଶଳ ରୂପେ ବ୍ୟବହାର କରାଗଲେ, ଶିଶୁର ବ୍ୟବହାର ମାର୍ଜିତ ଓ ସାମାଜିକ ରୂପ ନେଇପାରିବ ।

### କେଉଁ ବାଟରେ ଯିବେ ?

୧. ଶିଶୁର ଅବାଞ୍ଛନୀୟ ବ୍ୟବହାର ପରିବର୍ତ୍ତନ ପାଇଁ ପ୍ରଥମେ ଶାସ୍ତି ପ୍ରୟୋଗ ନକରି ପ୍ରୋତ୍ସାହନର ଅପସାରଣ ପଦ୍ଧତି ପ୍ରୟୋଗ କରନ୍ତୁ । ଶିଶୁକୁ ପୂର୍ବରୁ ଦିଆଯାଉଥିବା କେତେକ ସୁବିଧା ସୁଯୋଗରୁ ତାକୁ ବଞ୍ଚିତ କରନ୍ତୁ । ଉଦାହରଣସ୍ୱରୂପ, ଶିଶୁଟି ହାତ ନଧୋଇ ଖାଇବାକୁ ଜିଦ୍ ଧରୁଥିଲେତାକୁ ଦୃଢ଼ସ୍ୱରରେ କୁହନ୍ତୁ—ସେ ହାତ ନ ଧୋଇଲେ ଏକାଥାଳୀରେ ମା' ସହିତ ଖାଇପାରିବ ନାହିଁ ।

୨. ଶାସ୍ତିବିଧାନ ନିହାତି ଅପରିହାର୍ଯ୍ୟ ବିଚାର କଲେ ନିମ୍ନଲିଖିତ ସତର୍କତା ଅବଲମ୍ବନ କରନ୍ତୁ ।

(କ) କାରଣ ଦର୍ଶାନ୍ତୁ : ଶିଶୁଟି କାହିଁକି ଶାସ୍ତି ପାଉଛି, ତାହାର କାରଣ ସ୍ପଷ୍ଟଭାବେ ଶିଶୁ ପାଖରେ ବ୍ୟକ୍ତ କରନ୍ତୁ ।

(ଖ) ସ୍ଥିରତା ରଖନ୍ତୁ : ଯେଉଁ କାମଟି ଦଣ୍ଡନୀୟ, ସେ କାମଟି ଦେଖାଇବାର ପ୍ରତି ସ୍ଥଳରେ ଦଣ୍ଡବିଧାନ କରନ୍ତୁ ।

(ଗ) ଅନୁପାତ ରଖନ୍ତୁ : ଯେଉଁ ବ୍ୟବହାରଟି ଯେତିକି ପରିମାଣରେ ଦଣ୍ଡନୀୟ, ସେହି ଅନୁପାତରେ ଶାସ୍ତିବିଧାନର ବ୍ୟବସ୍ଥା କରନ୍ତୁ ।

(ଘ) ପ୍ରଶଂସା ଓ ଶାସ୍ତିର ପ୍ରଭେଦ : ସବୁ ସମୟରେ ଶାସ୍ତିବିଧାନ କରାଗଲେ ପିଲାଟି ପ୍ରଶଂସାର ମହତ୍ତ୍ୱ ବୁଝିବା ପାଇଁ ଅସମର୍ଥ ହେବ । ସୁତରାଂ ସମୟ ସମୟରେ ପ୍ରୋତ୍ସାହନ ମଧ୍ୟ ଦିଆଯିବା ଆବଶ୍ୟକ । ଉଦାହରଣସ୍ୱରୂପ, ସବୁ ସମୟରେ ଅସ୍ଥିରତା ଦର୍ଶାଉଥିବା ଶିଶୁଟି କୌଣସି ଏକ ସମୟରେ ଖୁବ୍ ଅଳ୍ପ ଅସ୍ଥିରତା ଦର୍ଶାଇଲେ ତାହାକୁ ସେ ସମୟରେ ପ୍ରଶଂସା କରାଯିବା ଉଚିତ୍ ।



# ଶିଶୁ ପାଳନର ଶୈଳୀ

ପ୍ରାକ୍ ବିଦ୍ୟାଳୟ ସ୍ତରରେ ପିତାମାତାଙ୍କ ସହିତ ଶିଶୁର ସମ୍ପର୍କ ଏକ ସ୍ୱତନ୍ତ୍ର ରୂପନିଏ । ଏହି ପର୍ଯ୍ୟାୟରେ ଶିଶୁ ନିଜର ବହୁ ସାମର୍ଥ୍ୟକୁ ପରଖି ନେବାର ଉଦ୍ୟମ କରିଥାଏ । ଏପରି ପର୍ଯ୍ୟାୟରେ ପିତାମାତା ଶିଶୁର ସାମର୍ଥ୍ୟ ସବୁକୁ କି ପ୍ରକାର ବୁଝିଛନ୍ତି ଏବଂ ସେମାନେ କିପରି ସେଗୁଡ଼ିକର ପରିପ୍ରକାଶ ପାଇଁ ସୁଯୋଗ ଦେଇଛନ୍ତି । ତାହା ଶିଶୁ ଉପରେ ପ୍ରଭାବ ପକାଏ । ପୁଣି ଶିଶୁର ପରିସୀମତ୍ୱକୁ ବୁଝାଇବା ପାଇଁ ସେମାନେ ବାଧା ଦେଉଥିବା ଘଟଣାସବୁ ମଧ୍ୟ ଶିଶୁକୁ ପ୍ରଭାବିତ କରେ । ଉଦାହରଣସ୍ୱରୂପ କୁହାଯାଇପାରେ ଯେ, ଶିଶୁ ଗୋଟିଏ ଓଜନଦାର ବସ୍ତୁଟିକୁ ଉଠାଇବାର ଉଦ୍ୟମ କଲାବେଳେ ପିତାମାତା ବାଧା ଦେଲାବେଳେ, ଶିଶୁ ଏହାକୁ ଖୁସିମନରେ ଗ୍ରହଣ କରିନଥାଏ ।

ପ୍ରାକ୍ ବିଦ୍ୟାଳୟକାଳୀନ ଶିଶୁ କିଛିଟା ନିୟନ୍ତ୍ରଣ ଆବଶ୍ୟକ କରେ । ଏପରି ନିୟନ୍ତ୍ରଣ ପ୍ରକୃତି ଓ ପରିମାଣ ଶିଶୁପାଳନକୁ ଭିନ୍ନ ଭିନ୍ନ ଶୈଳୀରେ ରୂପ ଦେଇଥାଏ । ଏହାକୁ ଦୃଷ୍ଟିରେ ରଖି ତିନୋଟି ଶିଶୁପାଳନ ଶୈଳୀର ପରିକଳ୍ପନା କରାଯାଇଛି । ସେଗୁଡ଼ିକ ହେଉଛି ଗୁରୁତ୍ୱମୁଖୀ ଶୈଳୀ, ପ୍ରଭୁତ୍ୱମୁଖୀ ଶୈଳୀ ଓ ସର୍ବଅନୁମୋଦନ ଶୈଳୀ ।

ଗୁରୁତ୍ୱମୁଖୀ ପିତାମାତା ଶିଶୁକୁ ସ୍ୱାଧୀନତା ଦେଲେ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଶିଶୁ ଉପରେ ନିୟନ୍ତ୍ରଣ ଜାରି କରନ୍ତି । ଏମାନଙ୍କର ପାଳନଶୈଳୀ ଶିଶୁ-କୈନ୍ଦ୍ରିତ । ଏମାନେ ଶିଶୁର ଭୌତିକ ଓ ମାନସିକ ଚାହିଦା ପ୍ରତି ସମ୍ବେଦନଶୀଳ । ଶିଶୁର ମନୋଭାବକୁ ବୁଝି ତାହାର ଚାହିଦା ପୂରଣ କରନ୍ତି । ଶିଶୁଟି ସୃଜନାତ୍ମକ ଭାବରେ କିଛି କରୁଥିବା ସମୟରେ ପିତାମାତାଙ୍କୁ ସାହାଯ୍ୟ ପ୍ରାର୍ଥନା କଲାବେଳେ ପିତାମାତା ସାହାଯ୍ୟ ଯୋଗାଇ ଦିଅନ୍ତି । ମାତ୍ର ଶିଶୁର ଅଯଥା ଜିଦି ପାଖରେ ମୁଣ୍ଡ ନୁଆଁନ୍ତି ନାହିଁ ।

ଗୁରୁତ୍ୱପୂର୍ଣ୍ଣ ଶିଶୁପାଳନର ଅନ୍ୟ ଏକ ବୈଶିଷ୍ଟ୍ୟ ହେଉଛି ପିତାମାତାଙ୍କ ସ୍ନେହଶ୍ରଦ୍ଧାର ଏକ ପ୍ରକାଶ୍ୟ ଉପସ୍ଥାପନ । ଶିଶୁଟି କିଛି କୃତିତ୍ୱ ଦର୍ଶାଇଲେ ତାକୁ ଆଲିଙ୍ଗନ କରିବା କୋଳେଇ ନେବା ମାଧ୍ୟମରେ ନିଜର ଆନନ୍ଦ ପ୍ରକାଶ କରନ୍ତି । ଗୁରୁତ୍ୱମୁଖୀ ଶୈଳୀରେ ପ୍ରତିପାଳିତ ହେଉଥିବା ଶିଶୁମାନେ ଆତ୍ମନିର୍ଭରଶୀଳ ହୁଅନ୍ତି । ଏମାନଙ୍କ ଆତ୍ମମର୍ଯ୍ୟାଦାବୋଧ ଅଧିକ ଏବଂ ପରେ ସ୍କୁଲରେ ମଧ୍ୟ ଅଧିକ ସଫଳତା ଦର୍ଶାନ୍ତି । ପରବର୍ତ୍ତୀ ସମୟରେ ଏପରି ଶିଶୁମାନେ ବାହ୍ୟ ପରିବେଶ ଓ ଅନ୍ୟଲୋକମାନଙ୍କର ସହିତ ପ୍ରୀତିପୂର୍ଣ୍ଣ ସମ୍ପର୍କ ସ୍ଥାପନରେ ସକ୍ଷମ ହୁଅନ୍ତି ।

ଦ୍ୱିତୀୟ ଧରଣର ଶିଶୁପାଳନ ଶୈଳୀ ହେଉଛି ପ୍ରଭୁତ୍ୱମୁଖୀ । ଏ କ୍ଷେତ୍ରରେ ପିତାମାତା ସବୁପ୍ରକାର ନିୟନ୍ତ୍ରଣ ନିଜ ହାତରେ ରଖନ୍ତି । 'ଏଇଟି କର' ଏବଂ 'ସେଇଟି କର ନାହିଁ' ନିର୍ଦ୍ଦେଶାବଳୀରେ ଏମାନଙ୍କର ଶିଶୁପାଳନ ଅଭିଧାନଟି ପରିପୂର୍ଣ୍ଣ । ଆଦେଶ ନିର୍ଦ୍ଦେଶ ଏବଂ ନୀତିନିୟମର ମାତ୍ରାଧିକ ପ୍ରୟୋଗ କରନ୍ତି ଏବଂ ଅସହିଷ୍ଣୁ ହୋଇପଡ଼ନ୍ତି । ଶିଶୁର ଶାରୀରିକ ଓ ମାନସିକ ଚାହିଦାଗୁଡ଼ିକ ଠିକ୍ ଭାବରେ ବୁଝିବାରେ ଏମାନଙ୍କର ତ୍ରୁଟି ହେବା ସ୍ୱାଭାବିକ । ପୁଣି ସେମାନଙ୍କ ମତାମତ ଅନୁସାରେ ଶିଶୁଟି ବ୍ୟବହାର ଦର୍ଶାଇ ନଥିଲେ ଶିଶୁପ୍ରତି କଠୋର ଶାସ୍ତି ବିଧାନ କରନ୍ତି । ନିଜର ସ୍ନେହଶ୍ରଦ୍ଧାକୁ ପ୍ରକାଶ୍ୟ ରୂପ ଦେବା ଅନେକ ସମୟରେ ସମ୍ଭବ ହୋଇନଥାଏ । ମୋଟ ଉପରେ ଏକଛତ୍ରବାଦୀ ଶାସନମୁଖୀ ଶିଶୁ ପରିଚାଳନା ଏ କ୍ଷେତ୍ରରେ ରୂପ ନେଇଥାଏ ।

ଏପରି ଶିଶୁପାଳନର ଭଙ୍ଗୀଟି ମାତ୍ରାଧିକ ରୂପନେଲେ କେତୋଟି କୁପରିସ୍ଥିତି ସୃଷ୍ଟି ହୁଏ । ପିଲାମାନେ ପିତାମାତାଙ୍କଠାରୁ ଏପରି କଠୋର ଶାସନର ଶରବ୍ୟ ହେଲେ ସେମାନେ ଅନ୍ୟମାନଙ୍କ ପ୍ରତି ବିଶେଷକରି ଅନ୍ୟ ପିଲାମାନଙ୍କ ପ୍ରତି ଅସହିଷ୍ଣୁ ଭାବ ଦର୍ଶାନ୍ତି । ଅଳ୍ପ କଥାରେ ନିଜର ଛୋଟ ଭାଇଭଉଣୀଙ୍କ ଉପରେ ରାଗ ଓ ମାଡ଼ଗାଳି ବର୍ଷଣ କରନ୍ତି । ଛୋଟମାନଙ୍କୁ ସ୍ନେହ ଦର୍ଶାଇବା ଏବଂ ବଡ଼ମାନଙ୍କୁ ସମ୍ମାନ ଜଣାଇବାରେ ଏମାନଙ୍କର ଯଥେଷ୍ଟ କୁଣ୍ଠା ରହିଯାଏ ।

ତୃତୀୟ ପ୍ରକାର ଶିଶୁପାଳନର ଶୈଳୀଟି ହେଉଛି ସର୍ବଅନୁମୋଦନ ଶୈଳୀ । ଏକ୍ଷେତ୍ରରେ ପିତାମାତା ଏକ ପ୍ରକାର ଅନାସକ୍ତ ଓ ଉଦାସୀନ ଭାବ ପୋଷଣ କରନ୍ତି । ପିଲାମାନେ କ'ଣ କରୁଛନ୍ତି ସେଥିପ୍ରତି ପିତାମାତାଙ୍କର ଧ୍ୟାନ ନଥାଏ । ଭଲ କାମରେ ଯେପରି ଉତ୍ସାହ ଦେଇ ନଥାନ୍ତି, ଖରାପ କାମରେ ବାଧା ମଧ୍ୟ ଦେଇ ନଥାନ୍ତି । ପରୋକ୍ଷରେ ଶିଶୁର ଶାରୀରିକ ଓ ମାନସିକ ଚାହିଦାଗୁଡ଼ିକ ପ୍ରତି ଏମାନେ ଉଦାସୀନ ।

ଏପରି ଶୈଳୀରେ ପ୍ରତିପାଳିତ ହେଉଥିବା ଶିଶୁମାନଙ୍କର କେତେକ ବିକାଶକାଳୀନ ତ୍ରୁଟି ଦେଖାଯାଏ । ଏମାନେ କୌଣସି କାର୍ଯ୍ୟରେ ବିଫଳ ହେଲେ, ବ୍ୟର୍ଥତାକୁ ଠିକ୍ ଭାବରେ ଗ୍ରହଣ କରିପାରନ୍ତି ନାହିଁ । କ୍ଷୁବ୍ଧ ହୋଇ ଅଧିକ କୁବ୍ୟବହାର ଦର୍ଶାନ୍ତି । ନିଜର ଆବେଗ ଉପରେ ନିୟନ୍ତ୍ରଣ ରକ୍ଷା କରିପାରନ୍ତି ନାହିଁ । ଅଯଥାରେ ରାଗିବା, ମନଖରାପ କରିବା ଏବଂ ଭଲ ସମୟରେ ମଧ୍ୟ ନିଜର ଆନନ୍ଦ ପ୍ରକାଶରେ ଅସମର୍ଥ ହେବା ଭଳି ଅନୁପଯୋଗୀ ବ୍ୟବହାର ଏପରି ଶିଶୁମାନଙ୍କଠାରେ ପ୍ରକାଶିତ ହୋଇଥାଏ ।

ଆଲୋଚନାରୁ ବୁଝିବାକୁ ହେବ ନାହିଁ ଯେ, କୌଣସି ନିର୍ଦ୍ଦିଷ୍ଟ ପିତାମାତା ସମ୍ପୂର୍ଣ୍ଣ ଭାବରେ ଏହି ତିନୋଟି ମଧ୍ୟରୁ ଗୋଟିଏ ଶୈଳୀକୁ ପୁରାପୁରି ପ୍ରୟୋଗ

କରନ୍ତି । ଅଧିକାଂଶ ପିତାମାତା ଏହି ତିନୋଟି ଶୈଳୀକୁ ମିଶାମିଶି କରି ପ୍ରୟୋଗ କରିବାର ମଧ୍ୟ ଦେଖାଯାଏ । ପିତାଙ୍କର ଶୈଳୀ ମା'ଙ୍କ ଶୈଳୀଠାରୁ ଭିନ୍ନ ହୋଇପାରେ । ପୁଣି ପିତାମାତା ତାଙ୍କର ଗୋଟିଏ ସନ୍ତାନ ପାଇଁ ଏକ ନିର୍ଦ୍ଦିଷ୍ଟ ଶୈଳୀ ପ୍ରୟୋଗ କରିବା ସ୍ଥଳେ ଅନ୍ୟ ସନ୍ତାନ ପାଇଁ ଭିନ୍ନ ଶୈଳୀର ବ୍ୟବହାର କରିଥାଇ ପାରନ୍ତି । କିନ୍ତୁ ପ୍ରତିଟି ଶୈଳୀର ପରିଣତିକୁ ବୁଝି ତାହାର ପ୍ରୟୋଗ କରିବା ସମୁଚିତ ହେବ ।

କେତେକ ପରିସ୍ଥିତି ଭେଦରେ ଶୈଳୀର ପରିବର୍ତ୍ତନ ମଧ୍ୟ ଘଟିଥାଏ । ଗୋଟିଏ ସନ୍ତାନଥିବା ପିତାମାତା ପ୍ରଥମ ସନ୍ତାନଟି ପ୍ରତି ଗୁରୁତ୍ୱମୁଖୀ ଶୈଳୀ ପ୍ରୟୋଗ କରନ୍ତି । ମାତ୍ରପରେ ଏକାଧିକ ଭାଇଭଉଣୀ ଆସିବା ପରେ କିଛି ମାତ୍ରାରେ ପ୍ରଭୁତ୍ୱମୁଖୀ ଶୈଳୀର ଆବଶ୍ୟକତା ଆସିପାରେ । ବିଶେଷତଃ ସମସ୍ୟା ସମାଧାନ ପାଇଁ ପ୍ରଭୃତ୍ୱମୁଖୀ ଶୈଳୀର ସାମୟିକ ଉପଯୋଗ ଆବଶ୍ୟକ ହୋଇପାରେ । ପରିବାରର ଆର୍ଥିକ ଦୁର୍ଗତି ବାହ୍ୟ ପରିବେଶର ବିଶୃଙ୍ଖଳା, ପ୍ରତିବେଶୀମାନଙ୍କର ବିଶୃଙ୍ଖଳିତ ପୁତ୍ରକନ୍ୟା ଏବଂ ଅନ୍ୟ କେତେକ ପରିସ୍ଥିତି ଫଳରେ ଶୈଳୀର ପରିବର୍ତ୍ତନ ଦରକାର ହୋଇପାରେ । ପରିଶେଷରେ କୁହାଯାଇପାରେ ଯେ, ଶିଶୁମାନେ ମଧ୍ୟ ପିତାମାତାଙ୍କ ଶୈଳୀ ନିର୍ଦ୍ଧାରଣରେ ଭୂମିକା ନିଅନ୍ତି । କୌଣସି କାରଣରୁ ଶିଶୁଟି ବିଶୃଙ୍ଖଳିତ ହୋଇଥିଲେ ପିତାମାତା ଏକ ପ୍ରଭୃତ୍ୱମୁଖୀ ଶୈଳୀର ଉପଯୋଗ କରିବା ସ୍ଥଳେ ଶିଶୁଟି ଶୃଙ୍ଖଳିତ ହୋଇଥିଲେ, ଗୁରୁତ୍ୱମୁଖୀ ଶୈଳୀ ବ୍ୟବହାର କରିପାରନ୍ତି । ଏକ ବିଚାରପୂର୍ଣ୍ଣ ଭାବରେ ଶିଶୁପାଳନର ଶୈଳୀ ପ୍ରୟୋଗ ସୁଫଳ ପ୍ରଦାନ କରିଥାଏ ।

### କେଉଁ ବାଟରେ ଯିବେ ?

୧. ଶିଶୁକୁ ସ୍ୱାଧୀନତା ଦେବା ନିଶ୍ଚିତ ଭାବରେ ଶ୍ରେୟସ୍କର, ତଥାପି ଶିଶୁ ଯେପରି ନିଜର ପରିସୀମତ୍ୱ (Limitation) ବୁଝେ, ସେ ଦିଗକୁ ଦୃଷ୍ଟି ଦିଅନ୍ତୁ ।

୨. ଶିଶୁପାଳନର କେତୋଟି ମୁଖ୍ୟ ଉପାଦାନ (Key components) ଉପରେ ନିଜର ନିୟନ୍ତ୍ରଣ ରକ୍ଷା କରନ୍ତୁ ।



# ଶିକ୍ଷାଗତ ଅକ୍ଷମତା : ଏକ ମନସ୍ତାତ୍ତ୍ୱିକ ବିଚାର

ଅକ୍ଷମତାର ପରିପ୍ରକାଶ ବିଭିନ୍ନ ସ୍ତରରେ ଘଟିଥାଏ । କାର୍ଯ୍ୟ ଅକ୍ଷମତା, ଶାରୀରିକ ଅକ୍ଷମତା ଓ ସାମାଜିକ ବ୍ୟବହାରରେ ଅକ୍ଷମତା ଇତ୍ୟାଦି ଅକ୍ଷମତାର ପରିସର ପୃଥକ୍ ପୃଥକ୍ । ଆକ୍ଷରିକ ଅର୍ଥରେ ଶିକ୍ଷାଗତ ଅକ୍ଷମତାର ସଂଜ୍ଞା ଖୁବ୍ ବ୍ୟାପକ ମନେ ହୋଇପାରେ, ମାତ୍ର ମନସ୍ତାତ୍ତ୍ୱିକ ଗବେଷଣା ଓ ପର୍ଯ୍ୟାଲୋଚନା ଦୃଷ୍ଟିରୁ ଶିକ୍ଷାଗତ ଅକ୍ଷମତାର ଏକ ନିର୍ଦ୍ଦିଷ୍ଟ ଓ ସ୍ୱଷ୍ଟ ରୂପରେଖ ରହିଛି । ଆମେ ସମସ୍ତେ ଜାଣୁ ଯେ ଗୋଟିଏ ପିଲା ଶିକ୍ଷା ନ କରିପାରିବାର ଅନେକଗୁଡ଼ିଏ କାରଣ ଥାଇପାରେ । ପିଲାଟିର ମସ୍ତିଷ୍କରେ କୌଣସି କାରଣରୁ ଆଘାତ ଲାଗି କ୍ଷତ ସୃଷ୍ଟି ହେଲେ ପିଲାର ଶିକ୍ଷାଲାଭ ବ୍ୟାହତ ହୁଏ । ଶରୀରର କୌଣସି ବିଶେଷ ଅକ୍ଷମତା (ଯଥା : କାନକୁ ଶୁଣା ନଯିବା କିମ୍ୱା ଆଖିକୁ ଦେଖା ନଯିବା) ଥିଲେ ଶିକ୍ଷାଲାଭରେ ବାଧା ସୃଷ୍ଟି ହୁଏ । ପିଲାଟିର ବୁଦ୍ଧି ଅତି ବେଶି କମ୍ ହେଲେ ସେ ଶ୍ରେଣୀଗୃହରେ ଦିଆଯାଇଥିବା ଶିକ୍ଷାଦାନରୁ ଉପକାର ପାଏ ନାହିଁ । ସେହିପରି ପାରିବାରିକ ଓ ସାମାଜିକ ପୀଡ଼ନ ମଧ୍ୟରେ ବିଫଳତା ଆସିପାରେ । ଶ୍ରେଣୀଗୃହର ଶିକ୍ଷାରୁ ଉପଯୁକ୍ତ ଫଳ ନ ମିଳିବାରେ ଏହିପରି ଅନେକଗୁଡ଼ିଏ କାରଣ ଥାଇପାରେ । ଉପରୋକ୍ତ କାରଣଗୁଡ଼ିକ ଯୋଗୁଁ ସୃଷ୍ଟି ହେଉଥିବା ଶିକ୍ଷାଗତ ବିଫଳତାର ଅନୁଶୀଳନ କରାଯାଇ ଥିଲେ ହେଁ, ଏହାକୁ ଶିକ୍ଷାଗତ ଅକ୍ଷମତା ସଂଜ୍ଞା ଦିଆଯାଇ ନାହିଁ ।

ଗୋଟିଏ ପିଲାର ସାଧାରଣ ପରିମାଣ ବା ତା'ଠାରୁ ଅଧିକ ବୁଦ୍ଧିଥାଇ, ସାଧାରଣ ସ୍ୱାସ୍ଥ୍ୟ ଥାଇ ଏବଂ ପଢ଼ିବାର ସୁଯୋଗ ସୁବିଧା ଥାଇ ମଧ୍ୟ ଯଦି ସେ ଶ୍ରେଣୀଗୃହର ଶିକ୍ଷାରେ ବିଫଳତା ଦେଖାଏ, ତେବେ ପିଲାଟି ଶିକ୍ଷାଗତ ଅକ୍ଷମତା ଦର୍ଶାଉଛି ବୋଲି କୁହାଯାଏ । ବୌଦ୍ଧିକ, ଶାରୀରିକ ଓ ଆର୍ଥିକ ଦକ୍ଷତାର ସାଧାରଣ ଅବସ୍ଥା ସତ୍ତ୍ୱେ ଯେଉଁ ଶିକ୍ଷାଗତ ଅକ୍ଷମତା ଦେଖାଯାଏ, ତାକୁ ମନୋବିଜ୍ଞାନୀମାନେ ଶିକ୍ଷାଗତ ଅକ୍ଷମତା ସଂଜ୍ଞା ଦେଇଛନ୍ତି । ଇଉରୋପ ଓ ଆମେରିକା ପରି ସମୃଦ୍ଧିଶାଳୀ ମହାଦେଶରେ ଛାତ୍ରସଂଖ୍ୟାର ପ୍ରାୟ ଏକ ଦଶମାଂଶ ଏହି ଶିକ୍ଷାଗତ ଅକ୍ଷମତାର ଶରବ୍ୟ ବୋଲି ହିସାବ କରାଯାଇଛି । ଆମ ଦେଶରେ ଏହାର ପରିସଂଖ୍ୟାନ ରୂପ ଯାହା ହେଉନା କାହିଁକି, ଏହା ଯେ ଏକ ଜାତୀୟ ସମସ୍ୟା ଓ ଏହାର ଅନୁଶୀଳନ ଏକ ଗୋଷ୍ଠୀଗତ ଉଦ୍‌ବେଗ, ଏଥିରେ ସନ୍ଦେହ ନାହିଁ ।

ଶିକ୍ଷାଗତ ଅକ୍ଷମତାକୁ ବୁଝିବା ପାଇଁ ଯେଉଁ ସମସ୍ତ ଉଦ୍ୟମ ହୋଇଛି, ତାହାର ମୁଖ୍ୟତଃ ଦୁଇଟି ଧାରା ରହିଛି । ପ୍ରଥମଟିର ବିଚାରରେ ଶିକ୍ଷାଗତ ଅକ୍ଷମତାର କେନ୍ଦ୍ରବିନ୍ଦୁ ହେଉଛି ଭାଷାଜ୍ଞାନର ଅକ୍ଷମତା । ଦ୍ୱିତୀୟଟି ବିଚାରରେ ଶିକ୍ଷାଗତ ଅକ୍ଷମତାର ମୌଳିକ କାରଣ ହେଉଛି ପିଲାଟି ପାଉଥିବା ତଥ୍ୟସମୂହକୁ ଗ୍ରହଣ, ସଜ୍ଜୀକରଣ ଓ ପୁନର୍ବିନିଯୋଗ କରିବାରେ ଅସାମର୍ଥ୍ୟ । ଏ ଦୁଇଟି ବିଚାର ଧାରାର ବର୍ଣ୍ଣନା ଦ୍ୱାରା ଅଧିକ ସ୍ପଷ୍ଟ ଚିତ୍ର ଦିଆଯାଇପାରେ ।

ଭାଷାଗତ ଅକ୍ଷମତା :

ଅନେକ ମନୋବିଜ୍ଞାନୀମାନଙ୍କ ମତରେ ଶିକ୍ଷାଗତ ଅକ୍ଷମତା ସୃଷ୍ଟି ହୁଏ ଭାଷାଗତ ଅକ୍ଷମତାରୁ । ସାଧାରଣ ପିଲାମାନଙ୍କ ପକ୍ଷେ ବୋଧଗମ୍ୟ ହେଉଥିବା ପୁସ୍ତକର ବିଷୟବସ୍ତୁ ଓ ଶ୍ରେଣୀରେ ଆଲୋଚିତ ବିଷୟବସ୍ତୁ କୌଣସି ଏକ ପିଲା ବୁଝି ନ ପାରିଲେ ତାହାର ଶିକ୍ଷାଗତ ଅକ୍ଷମତା ସୃଷ୍ଟି ହେବା ସ୍ୱାଭାବିକ । ଗୋଟିଏ ପିଲା ବା ବ୍ୟକ୍ତିର ଓଡ଼ିଆ ଭାଷା ସହିତ କୌଣସି ସମ୍ପର୍କ ନ ଥିବା ସ୍ଥଳେ ତାକୁ ଯଦି ଓଡ଼ିଆରେ ପାଠ୍ୟପୁସ୍ତକ ଓ ଓଡ଼ିଆ ଭାଷାରେ ଆଲୋଚନା ଶୁଣିବାର ହଠାତ୍ ସୁଯୋଗ ଦିଆଯାଏ ତେବେ ସେ ନବୁଝି ପାରିବାର କୌଣସି ବିଚିତ୍ରତା ନାହିଁ । ଏହାକୁ ଭାଷାଗତ ଅକ୍ଷମତାଜନିତ ଶିକ୍ଷାଗତ ଅକ୍ଷମତା କୁହାଯାଇ ନଥାଏ । ମାତ୍ର ପିଲାଟି ଓଡ଼ିଶାରେ ରହି ଓଡ଼ିଆ କଥା ଶୁଣିବାର ସୁଯୋଗ ପାଇବା ସତ୍ତ୍ୱେ ଯଦି ତା' ବୟସର ପିଲାଙ୍କ ପାଇଁ ଉଦ୍ଦିଷ୍ଟ ପୁସ୍ତକ ଭଲଭାବେ ନ ପଢ଼ିପାରେ ଏବଂ ବୁଝି ନପାରେ, ତେବେ ତାକୁ ଶିକ୍ଷାଗତ ଅକ୍ଷମ ପିଲା ବୋଲି ଧରାଯିବ । ସେହିପରି ପିଲାଟିର ଶ୍ରେଣୀଗୃହରେ ଆଲୋଚିତ ବିଷୟ ନ ବୁଝିପାରିଲେ ତା'ର ଶିକ୍ଷାଗତ ଅକ୍ଷମତା ଅଛି ବୋଲି କୁହାଯିବ ।

ଭାଷାଗତ ଅକ୍ଷମତାର ମୁଖ୍ୟତଃ ତିନୋଟି ଦିଗ ଅଛି । ପ୍ରଥମଟି ହେଉଛି ବର୍ଣ୍ଣ ପରିଚୟ (Orthography) ଜନିତ ଅକ୍ଷମତା । ପିଲାଟି 'କ' କୁ 'କ' ବୋଲି ଚିହ୍ନି ପାରୁନଥିଲେ ଏବଂ 'ଚ' କୁ 'ଚ' ବୋଲି ଚିହ୍ନିପାରୁ ନଥିଲେ ବର୍ଣ୍ଣ ପରିଚୟଜନିତ ଅକ୍ଷମତା ରହିଥାଏ । ବର୍ଣ୍ଣମାଳାର ପ୍ରତି ଅକ୍ଷର ସହିତ ପରିଚୟ ଭାଷାଜ୍ଞାନର ଏକ ମୌଳିକ ବିଭାବ । ଦ୍ୱିତୀୟଟି ହେଉଛି ଉଚ୍ଚାରଣଗତ (Phonology) ଦିଗ । ଏକ ବା ଏକାଧିକ ଶବ୍ଦକୁ କିପରି ଶୁଦ୍ଧଭାବେ ଉଚ୍ଚାରଣ କରାଯିବ, ତାହା ଭାଷାଜ୍ଞାନର ଏକ ବିଶିଷ୍ଟ ଦିଗ । 'ବୃକ୍ଷ' ଶବ୍ଦଟିକୁ ଓଡ଼ିଆମାନେ 'ବୃକ୍ଷ' ରୂପେ ଉଚ୍ଚାରଣ କଲାବେଳେ ବଙ୍ଗବାସୀମାନେ 'ବ୍ରିକ୍ଷ' ବୋଲି ଉଚ୍ଚାରଣ କରିଥାନ୍ତି । ସେହିପରି ଓଡ଼ିଆ ଶବ୍ଦ 'ଖୋଦିତ'କୁ ବଙ୍ଗଭାଷା କ୍ଷୋଦିତ ରୂପେ ଉଚ୍ଚାରଣ (Cut)କୁ 'କଟ୍' ରୂପେ ଉଚ୍ଚାରଣ କରିବା ସ୍ଥଳେ (Put) ଶବ୍ଦଟି 'ପୁଟ୍'

ବୋଲି ଉଚ୍ଚାରଣ କରାଯିବା କଥା ବୋଲି କେତେକ ଶିଶୁ ଜାଣି ନଥାନ୍ତି । ଫଳତଃ ବିଭିନ୍ନ ଶବ୍ଦର ଉଚ୍ଚାରଣଗତ ବୈଶିଷ୍ଟ୍ୟ ଭାଷାଜ୍ଞାନର ଏକ ବିଶିଷ୍ଟ ଦିଗ । ଏହାର ଅଭାବରେ ଭାଷାଗତ ଅକ୍ଷମତା ବୃଦ୍ଧି ପାଇବା ସ୍ୱାଭାବିକ ।

ଭାଷାଗତ ଅକ୍ଷମତାର ତୃତୀୟ ଦିଗ ହେଉଛି ଶବ୍ଦାର୍ଥବୋଧ । ଶିକ୍ଷାର ବିଭିନ୍ନ ଶବ୍ଦ ଭିନ୍ନଭିନ୍ନ ଅର୍ଥରେ ପ୍ରୟୋଗ କରାଯାଏ । ପୁଣି ପ୍ରସଙ୍ଗକ୍ରମେ ଏକ ଶବ୍ଦ ଭିନ୍ନ ଭିନ୍ନ ଅର୍ଥ ଗ୍ରହଣ କରିଥାଏ । ଶବ୍ଦାର୍ଥ ଜ୍ଞାନ ନଥିବା ପିଲା ଶବ୍ଦଗୁଡ଼ିକ ଠିକ୍‌ଭାବେ ବୁଝି ନ ପାରିବାରୁ କୌଣସି ପାଠ୍ୟ ବିଷୟକୁ ବୁଝିବା ଓ ହୃଦୟଙ୍ଗମ କରିବାରେ ବ୍ୟର୍ଥ ହୁଏ । କେବଳ ଶବ୍ଦର ସ୍ୱତନ୍ତ୍ର ଅର୍ଥ ନୁହେଁ, କୌଣସି ବାକ୍ୟ ବା ପରିଚ୍ଛେଦର ଅର୍ଥ ବୁଝିବା କଷ୍ଟହୁଏ । ଫଳତଃ ଅର୍ଥବୋଧର ଅଭାବରେ ଭାଷାଜ୍ଞାନ ବହୁ ଅଂଶରେ ବ୍ୟାହତ ହୁଏ ।

ଆଲୋଚିତ ତିନୋଟି ମୌଳିକ ଆବଶ୍ୟକତା ବ୍ୟତୀତ ଅନ୍ୟ ଗୋଟିଏ ଦକ୍ଷତା ମଧ୍ୟ ଦରକାର । ଏହାକୁ ଗବେଷକମାନେ ଭାଷାତୀତ ଦକ୍ଷତା କହନ୍ତି । କୌଣସି କଥିତ ବା ପଠିତ ବିଷୟରେ ପ୍ରକୃତ ତାତ୍ପର୍ଯ୍ୟ ବୁଝିବା ପାଇଁ କିଛି ପରିମାଣରେ ଭାଷାତୀତ ଦକ୍ଷତା ଦରକାର । ବିଶେଷତଃ ବିଭିନ୍ନ ଶବ୍ଦ ପ୍ରୟୋଗ କରି ଯେଉଁ ହାସ୍ୟରସ ସୃଷ୍ଟି କରାଯାଏ, ତାକୁ ଠିକ୍‌ଭାବେ ବୁଝିବା ପାଇଁ ଭାଷାତୀତ ଦକ୍ଷତା ପ୍ରୟୋଜନ । ଗୋଟିଏ ଉଦାହରଣ ଦେଇ ଏହାକୁ ପ୍ରାଞ୍ଜଳ କରାଯାଇପାରେ । ଜଣେ ବ୍ୟକ୍ତିଙ୍କୁ ତାଙ୍କର ବାସସ୍ଥାନ କେଉଁଠି ବୋଲି ପଚରାଯିବାରୁ ସେ କହିଲେ, "ମୋ ଘର ଅଲାଣ୍ଡରେ ।" ଅଲାଣ୍ଡ କଟକ ଜିଲ୍ଲାର ଗୋଟିଏ ଗ୍ରାମ ହୋଇଥିଲେ ମଧ୍ୟ ପ୍ରଶ୍ନକର୍ତ୍ତାଙ୍କର ସେ ବିଷୟରେ ଧାରଣା ନ ଥିବାରୁ, ସେ ପଚାରି ବସିଲେ, "ଅଲାଣ୍ଡ କେଉଁଠି ?" ବ୍ୟକ୍ତିଜଣଙ୍କ ମଜା କରିବାକୁ କହିଲେ, "ଆପଣ ଜାଣିନାହାନ୍ତି । ଇଂଲଣ୍ଡ, ଆର୍ୟ୍ୟାଲାଣ୍ଡ, ସ୍କଟଲ୍ୟାଣ୍ଡ ପରି ଅଲାଣ୍ଡ ଏକ ବିଶିଷ୍ଟ ସ୍ଥାନ ।" ଏଠାରେ ଲକ୍ଷ୍ୟ କରିବାର କଥା ସାଧାରଣ ଭାଷାଜ୍ଞାନର ଊର୍ଦ୍ଧ୍ୱକୁ ଯାଇ ଏହାକୁ ବୁଝିଲେ ମଜା ଲାଗିବ । ପ୍ରତ୍ୟେକ ହାସ୍ୟରସ ସ୍ଥାନକାଳ ଓ ପରିପ୍ରେକ୍ଷୀ ସହିତ ଏପରି ଭାବରେ ଜଡ଼ିତ ଯେ, ହାସ୍ୟରସ ବୁଝିବାକୁ ସାଧାରଣ ଭାଷାଜ୍ଞାନଠାରୁ ଅଧିକ କିଛି ଜ୍ଞାନ ପ୍ରୟୋଜନ । କେବଳ ହାସ୍ୟରସ କ୍ଷେତ୍ରରେ ନୁହେଁ, ବହୁସ୍ଥଳରେ ଆମର ଭାଷାତୀତ ସଚେତନତା, ଆମର ଯୋଗାଯୋଗ ଏବଂ ବୋଧଜ୍ଞାନକୁ ସମୃଦ୍ଧ କରେ ।

ଭାଷାଗତ ଜ୍ଞାନକୁ ଶିକ୍ଷାଗତ ଅକ୍ଷମତାର କେନ୍ଦ୍ରବିନ୍ଦୁ ରୂପେ ବିଚାର କରୁଥିବା ମନୋବିଜ୍ଞାନୀମାନେ ଶିକ୍ଷାଗତ ଅକ୍ଷମ ଶିଶୁର ଭାଷାଗତ ଅକ୍ଷମତା ଓ ତା'ର ସ୍ୱରୂପ ଜାଣିବା ପାଇଁ ପ୍ରଥମେ ଉଦ୍ୟମ କରନ୍ତି । ବିଭିନ୍ନ ପରୀକ୍ଷା, ବିଭିନ୍ନ

ମୂଲ୍ୟାୟନ ମାଧ୍ୟମରେ ସେମାନେ ଅକ୍ଷମତାର ସ୍ୱରୂପ ସ୍ଥିର କରନ୍ତି । ତାପରେ ସେମାନଙ୍କର ଉଦ୍ୟମ ଆରମ୍ଭ ହୁଏ ଶିଶୁର ଭାଷାଗତ ଅକ୍ଷମତା ଦୂରକରି ତାର ଭାଷାଗତ ଦକ୍ଷତା ସୃଷ୍ଟିକରିବା ଦିଗରେ ।

ଅନ୍ୟ କେତେକ ମନୋବିଜ୍ଞାନୀମାନଙ୍କ ମତରେ ଶିକ୍ଷାଗତ ଅକ୍ଷମତାର ମୂଳ କାରଣ ହେଉଛି ବିଭିନ୍ନ ସୂଚନା ଗ୍ରହଣ ଓ ଯେ ସବୁର ସଜ୍ଜୀକରଣରେ ଦକ୍ଷତାର ଅଭାବ । ଗୋଟିଏ ପିଲାର ଭାଷାଗତ ଦକ୍ଷତା ଥାଇପାରେ । ମାତ୍ର ସେ ନିଜ ପରିବେଶରୁ ଯେଉଁ ସମସ୍ତ ସୂଚନା (Information) ପାଉଛି ସେ ସବୁକୁ ସଙ୍ଗଠିତ କରିବାରେ ତା'ର ଦକ୍ଷତା ନ ଥାଇପାରେ । ସୂଚନାଗୁଡ଼ିକୁ ଠିକ୍ ଭାବରେ ସଜାଇ ତାକୁ କାରବାର କରି ନ ପାରିଲେ ତା'ର ଶିକ୍ଷାଗତ ଅକ୍ଷମତା ସୃଷ୍ଟିହେବ । ଗବେଷଣାରୁ ଦେଖାଯାଇଛି ଯେ, ଅନେକ ପିଲା ଅଛନ୍ତି ଯେଉଁମାନେ ସୂଚନାଗୁଡ଼ିକ ଗୋଟି ଗୋଟି ହୋଇ କ୍ରମାନ୍ୱୟରେ ଆସିଲେ ସେମାନେ ତାକୁ ଠିକ୍ ରୂପେ ଗ୍ରହଣ କରି ସେଥିରୁ ପ୍ରକୃତ ଅର୍ଥ ଗ୍ରହଣ କରିପାରନ୍ତି, ଭବିଷ୍ୟତରେ ସେସବୁ ତଥ୍ୟ ବ୍ୟବହାର କରିପାରନ୍ତି । ମାତ୍ର ବହୁତ ସୂଚନା ଯଦି ଏକ ସମୟରେ ଆସେ, ତେବେ ସେପରି ପିଲାମାନେ ସେସବୁ ତଥ୍ୟଗୁଡ଼ିକ ଠିକ୍‌ରୂପେ ଗ୍ରହଣ କରି ସେଥିରୁ ପ୍ରକୃତ ଅର୍ଥ ବାହାର କରିପାରନ୍ତି ନାହିଁ । ପରୋକ୍ଷରେ ଅନ୍ୟ ପ୍ରକାରର ପିଲା ଏକ ସମୟରେ ଆସୁଥିବା ସୂଚନାଗୁଡ଼ିକୁ ଠିକ୍‌ଭାବେ ସଜାଇ, ତାକୁ ବ୍ୟବହାର ଉପଯୋଗୀ କରନ୍ତି, ମାତ୍ର ଗୋଟିଏ ପରେ ଗୋଟିଏ ଆସୁଥିବା ସୂଚନାମାନଙ୍କୁ ଠିକ୍‌ଭାବେ ଗ୍ରହଣ କରି ସଙ୍ଗଠନ କରିପାରନ୍ତି ନାହିଁ ।

ସୂଚନା ଗ୍ରହଣ ଓ ସଜ୍ଜୀକରଣ ଉପରେ ଗୁରୁତ୍ୱ ଆରୋପ କରୁଥିବା ମନୋବିଜ୍ଞାନୀମାନେ ଶିଶୁକୁ ବିଭିନ୍ନ ପରୀକ୍ଷା ନିରୀକ୍ଷା କରି ବାହାର କରନ୍ତି ଶିଶୁଟି ସମସ୍ୟା ସମାଧାନ କଲାବେଳେ କିପରି ପନ୍ଥା ଅବଲମ୍ବନ କରୁଛି । ଗୋଟିଏ ପିଲାର ଠିକ୍ କିମ୍ବା ଭୁଲ୍ ଉତ୍ତର ଉପରେ ଗୁରୁତ୍ୱ ନ ଦେଇ ସେମାନେ ଦେଖନ୍ତି ଶିଶୁଟି କିପରି ଆଭିମୁଖ୍ୟ (approach) ଗ୍ରହଣ କରୁଛି । ତାକୁ କେନ୍ଦ୍ରକରି ଶିଶୁଟିର ସୂଚନା ଗ୍ରହଣ ଓ ସଜ୍ଜୀକରଣ ପ୍ରକରଣ ନିରୂପଣ କରନ୍ତି । ଶିଶୁର ପଦ୍ଧତି ତ୍ରୁଟିପୂର୍ଣ୍ଣ ଜାଣିଲାପାରେ, ତାର ତ୍ରୁଟିର ନିରାକରଣ ପାଇଁ ଉଦ୍ୟମ ହୁଏ ।

ଗତ କୋଡ଼ିଏ ବର୍ଷ ମଧ୍ୟରେ ପିଲାମାନଙ୍କର ଶିକ୍ଷାଗତ ଅକ୍ଷମତାକୁ ବିଜ୍ଞାନସମ୍ମତ ପଦ୍ଧତିରେ ବୁଝିବା ପାଇଁ ବହୁ ସଫଳ ଉଦ୍ୟମ ହୋଇଛି । ଆଲୋଚିତ ଦୁଇଟି ମତବାଦ ପରସ୍ପର ବିରୋଧୀ ନୁହେଁ । ଶିଶୁର ଶିକ୍ଷାଗତ ଅକ୍ଷମତା ଦୂର କରିବାକୁ ଦୁଇଟି ଆଭିମୁଖ୍ୟର ସାହାଯ୍ୟ ନିଆଯାଇ ପାରେ । ଶିଶୁର ଭାଷାଗତ ଅକ୍ଷମତା ଦୂର କରିବାକୁ ଶିକ୍ଷକ, ପିତାମାତା, ଶିକ୍ଷାବିତ୍ ଓ

ଉପଦେଷ୍ଟା ବହୁ କାର୍ଯ୍ୟ କରିପାରନ୍ତି । ବର୍ଣ୍ଣ ପରିଚୟ ସମୃଦ୍ଧ କରିବାକୁ ପାଠ୍ୟ ପୁସ୍ତକ ଓ ଅନ୍ୟାନ୍ୟ ବର୍ଣ୍ଣ ପରିଚୟ ପୁସ୍ତକର ପରିପାଟୀକୁ ଆକର୍ଷଣୀୟ କରାଯାଉଛି । ଉଚ୍ଚାରଣଗତ ଦକ୍ଷତାର ବୃଦ୍ଧିପାଇଁ ଉଚ୍ଚାରଣ ସହାୟକ ଯନ୍ତ୍ରପାତିର ସାହାଯ୍ୟ ନିଆଯାଉଛି । ଶବ୍ଦାର୍ଥବୋଧ ଓ ପ୍ରୟୋଗାତ୍ମକ ଜ୍ଞାନର ଅଭିବୃଦ୍ଧି ପାଇଁ ନୂତନ ପଦ୍ଧତିରେ ଭାଷାଜ୍ଞାନ ଦିଆଯାଉଛି । ଶିକ୍ଷାୟତନର ଆନୁଷ୍ଠାନିକ ପ୍ରଚେଷ୍ଟା ଛଡ଼ା ଅଣଆନୁଷ୍ଠାନିକ ଉଦ୍ୟମର ଯଥେଷ୍ଟ ତାତ୍ପର୍ଯ୍ୟ ରହିଛି । ଜଣେ ମନୋବିଜ୍ଞାନୀ ଦୃଢ଼ ମତବ୍ୟକ୍ତ କରି କହିଛନ୍ତି ଯେ, ଗୋଟିଏ ଶିଶୁକୁ ତା'ର ବାପ ମା' ଯଦି ପ୍ରତ୍ୟହ ନିଶ୍ଚିତ ଭାବରେ ଗୋଟିଏ ଗପ କହନ୍ତି ଏବଂ ରାତିରେ ପିଲାଟିକୁ ଗପ ବିଷୟରେ ପ୍ରଶ୍ନ ପଚାରି ଉତ୍ତର ନିଅନ୍ତି, ତେବେ ସେ ପିଲାର ଭାଷାଦକ୍ଷତା ବୃଦ୍ଧିପାଇବ ଏବଂ ଶିକ୍ଷାଗତ ଅକ୍ଷମତାର ସମ୍ଭାବନା ଦୂର ହେବ ।

ସେହିପରି ଗବେଷକ, ଉପଦେଷ୍ଟା ଓ ଶିକ୍ଷାବିତ୍‌ମାନେ ପିଲାମାନଙ୍କର ବ୍ୟକ୍ତିଗତ ତଥ୍ୟଗ୍ରହଣ ପନ୍ଥାର ବିଶ୍ଳେଷଣ କରି ତାକୁ ତ୍ରୁଟିହୀନ କରିବାରେ ଉଦ୍ୟମ କରିପାରିବେ । ଏ ଦିଗରେ ସୂଚନା ସଞ୍ଚୀକରଣ ଉପରେ ଗୁରୁତ୍ୱ ଆରୋପ କରୁଥିବା ମନୋବିଜ୍ଞାନୀମାନଙ୍କ ଗବେଷଣାଲବ୍ଧ ତଥ୍ୟ ମୂଲ୍ୟବାନ୍ ହେବ । ଶିକ୍ଷାଗତ ଅକ୍ଷମତାର ଅନୁଶୀଳନ ଓ ଦୂରୀକରଣ ଜାତୀୟ ଯୋଜନାର ଏକ ବିଶିଷ୍ଟ ଅଙ୍ଗ ହେବାର ଯଥାର୍ଥ୍ୟ ରହିଛି ।



# ଶିଶୁର ଅସହାୟବୋଧ

ଶିଶୁର ଅସହାୟବୋଧର ଆଲୋଚନା ଆରମ୍ଭ କଲାମାତ୍ରେ ଶିଶୁର ଶାରୀରିକ ଅକ୍ଷମତା କଥା ଅନେକଙ୍କ ମନକୁ ଆସେ । ଶାରୀରିକ ଅକ୍ଷମତା ଫଳରେ ଶିଶୁ ମନରେ ଅସହାୟତା ସୃଷ୍ଟି ହୁଏ । ଗଭୀର ଆତ୍ମବିଶ୍ୱାସର ସହିତ ସେ ବିଭିନ୍ନ କାର୍ଯ୍ୟ କରିବାକୁ ଦ୍ୱିଧାଗ୍ରସ୍ତ ହୁଏ । ବିଫଳତାର ଆଶଙ୍କା ତାକୁ ଅସ୍ଥିର କରେ ଏବଂ ତା'ର ସାମାଜିକ ମିଳାମିଶା ବାଧାପ୍ରାପ୍ତ ହୁଏ । ଏସବୁ ସାଧାରଣ କଥା । ସେମାନଙ୍କ ମନ ଓ କାର୍ଯ୍ୟଧାରାରୁ ଅସହାୟବୋଧ ଦୂର କରି ସେମାନଙ୍କଠାରୁ ଦକ୍ଷତାର ମନୋଭାବ ସୃଷ୍ଟି କରିବାର ଦାୟିତ୍ୱ ଏକ ସାମାଜିକ କର୍ତ୍ତବ୍ୟ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଶାରୀରିକ ତ୍ରୁଟି ନଥାଇ ମଧ୍ୟ କେତେକ ପରିବେଷ୍ଟନୀଗତ କାରଣରୁ ଶିଶୁ ମନରେ ଏକ ଅସହାୟବୋଧ ସୃଷ୍ଟି ହୁଏ ଏବଂ ଅସହାୟବୋଧଗ୍ରସ୍ତ ଶିଶୁମାନେ ଦକ୍ଷତା ପୂର୍ଣ୍ଣ ବ୍ୟବହାର ଦର୍ଶାଇବାରେ ବ୍ୟର୍ଥ ହୁଅନ୍ତି । ଏହାର ସମ୍ଭାବନା ମନୋବିଜ୍ଞାନ, ଶିଶୁ ପରିଚାଳନା ଓ ଶିଶୁ ଶିକ୍ଷାବ୍ୟବସ୍ଥା ଗବେଷଣାରେ ଏକ ଆଲୋଡ଼ନ ସୃଷ୍ଟି କରିଛି ।



(ଅସହାୟ ଶିଶୁ)

ଶିଶୁ ତଥା ମଣିଷ ମନରେ ଅସହାୟତା କିପରି ସୃଷ୍ଟି ହୁଏ ଏବଂ ତାର ପରିଣତି କ'ଣ ହୁଏ ସେ ବିଷୟରେ ଅନୁଶୀଳନ ଆରମ୍ଭ ହେବା ପୂର୍ବରୁ ଛୋଟ ଛୋଟ ପ୍ରାଣୀମାନଙ୍କ କ୍ଷେତ୍ରରେ ଏହା ଲକ୍ଷ୍ୟ କରାଗଲା । ଏ ଶତକର ଷଷ୍ଠ ଦଶକରେ ସେଲିଗମ୍ୟାନ ଏବଂ ତାଙ୍କର ସହକର୍ମୀମାନେ ଯୁକ୍ତରାଷ୍ଟ୍ର ଆମେରିକାରେ

ପେନ୍‌ସିଲଭାନିଆ ବିଶ୍ୱବିଦ୍ୟାଳୟର ପ୍ରାଣୀ ଗବେଷଣାଗାରରେ ଗୋଟିଏ କୌତୁହଳ ପୂର୍ଣ୍ଣ ଜିନିଷ ଲକ୍ଷ୍ୟ କଲେ । ସେମାନେ ଦେଖିଲେ ଯେ ଗୋଟିଏ ପ୍ଲାଟଫର୍ମର ଗୋଟିଏ ପାର୍ଶ୍ୱରେ କ୍ଷୀଣ ବିଦ୍ୟୁତ୍‌ସ୍ରୋତ ଚାଳିତ କରି ଗୋଟିଏ ମୂଷାକୁ ରଖିଦେଲେ, ତାହା ନିରାପଦ ପାର୍ଶ୍ୱକୁ ଚାଲି ଯାଉଛି । ଗୋଟିଏ ପାର୍ଶ୍ୱ ବିପଦ ପୂର୍ଣ୍ଣ ଥିଲାବେଳେ ଅନ୍ୟ ପାର୍ଶ୍ୱଟି ନିରାପଦ ବୋଲି ବୁଝିବାକୁ ମୂଷାକୁ ଅତି ବେଶୀ ସମୟ ଲାଗୁ ନାହିଁ । ନିଜକୁ ବିଦ୍ୟୁତ ଆଘାତରୁ ରକ୍ଷା କରିବାର କୌଶଳ ସେ ଶିଖି ପାରୁଛି ।

ଏହି ପର୍ଯ୍ୟବେକ୍ଷଣ ପରେ ଗବେଷକମାନେ କୌତୁହଳୀ ହୋଇ ପ୍ଲାଟଫର୍ମର ଦୁଇପାର୍ଶ୍ୱରେ କ୍ଷୀଣ ବିଦ୍ୟୁତ ପ୍ରବାହ ଆରମ୍ଭ କଲେ ଏବଂ ମୂଷାଟିକୁ ଗୋଟିଏ ପାର୍ଶ୍ୱରେ ଛାଡ଼ି ଦେଲେ । ମୂଷାଟି ନିଜକୁ ରକ୍ଷା କରିବାକୁ ବାରମ୍ବାର ଏପଟକୁ ସେପଟ ଏବଂ ସେପଟରୁ ଏପଟ ଗଲା; ମାତ୍ର ଏପରି ବାରମ୍ବାର କରିବା ସତ୍ତ୍ୱେ କୌଣସି ଫଳ ମିଳୁନଥିବାର ଦେଖି ଗୋଟିଏ ପାର୍ଶ୍ୱରେ ଚୁପ୍‌ଚାପ ହୋଇ ବସି ରହିଲା । ଆହୁରି କୌତୁହଳପୂର୍ଣ୍ଣ ବିଷୟ ହେଉଛି ଯେ, ପରେ ପରେ ପ୍ଲାଟଫର୍ମର ଗୋଟିଏ ପାର୍ଶ୍ୱ ବିଦ୍ୟୁତ ମୁକ୍ତ (ନିରାପଦ) କରାଯାଇ ମୂଷାଟିକୁ ପ୍ରଥମେ ବିଦ୍ୟୁତ ଯୁକ୍ତ ଅଂଶରେ ଛାଡ଼ି ଦିଆଗଲେ ମୂଷାଟି ସେହି ବିପଦପୂର୍ଣ୍ଣ ସ୍ଥାନରେ ବସି ରହିଲା । ବିପଦରୁ ଉଦ୍ଧାର ପାଇବାର କୌଶଳ ଶିକ୍ଷା କରିପାରିଲା ନାହିଁ ।

ମୋଟ ଉପରେ ପ୍ରାଣୀର ବ୍ୟବହାର ଏବଂ ପରିବେଶରେ ଆକାଂକ୍ଷିତ ଫଳାଫଳର ସମ୍ପର୍କକୁ ବିଚ୍ଛିନ୍ନ କରାଯିବା ଫଳରେ ମୂଷାଟିର ଅସହାୟତା ସୃଷ୍ଟି ହେଲା । ଅନ୍ୟ ଭାଷାରେ କହିଲେ ନିୟନ୍ତ୍ରଣବିହୀନ (Uncontrollable) ପରିବେଶରେ ପଡ଼ିଲେ ପ୍ରାଣୀ ମନରେ ଅସହାୟତା ସୃଷ୍ଟି ହୁଏ । ଅସହାୟତା ସୃଷ୍ଟି ହେଲେ ତିନୋଟି ମୁଖ୍ୟ ପରିଣତି ଜନ୍ମେ । ପ୍ରଥମତଃ, ପ୍ରାଣୀ ନୂଆ କରି କିଛି ଶିଖିବା କଷ୍ଟକର ହୋଇପଡ଼େ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ଗୋଟିଏ ପିଲା ପ୍ରଥମେ ନିୟନ୍ତ୍ରଣହୀନ ସ୍କୁଲରେ ପାଠ ଆରମ୍ଭ କଲେ ଦେଖେ ଯେ ନିଜେ ଯେତେ ପରିଶ୍ରମ କଲେ ମଧ ଫଳ ପାଉନାହିଁ । ଭଲ ବ୍ୟବହାର କଲେ ମଧ ଶିକ୍ଷକ ଶିକ୍ଷୟତ୍ରୀଙ୍କଠାରୁ ପ୍ରଶଂସା ପାଉନାହିଁ । ନିଜର ଭଲକାର୍ଯ୍ୟ ଏବଂ ସୁଫଳ ମଧରେ କୌଣସି ସଂଯୋଗ ନାହିଁ ବୋଲି ସେ ଶିକ୍ଷା କଲାପରେ ପରବର୍ତ୍ତୀ ସମୟରେ ସେ ଗୋଟିଏ ସୁପରିଚାଳିତ ସ୍କୁଲକୁ ଗଲେ ମଧ ସେଠାରେ ନୂଆ ନୂଆ ଜିନିଷ ଶିକ୍ଷା କରିବା ତା' ପକ୍ଷରେ କଷ୍ଟକର ହୁଏ । ଏକ ପ୍ରକାର ଶିକ୍ଷାଗତ ବାଧା ଅନୁଭୂତ ହୁଏ । ଦ୍ୱିତୀୟରେ, ଅସହାୟତା ସୃଷ୍ଟି ହେଲେ ପ୍ରାଣୀର

ଅଭୀପ୍ସା (Motivation)ରେ ହ୍ରାସ ଘଟେ । ନିଜର ତତ୍ପରତା କମିଯାଏ । ଚେଷ୍ଟାକରି ଶାରୀରିକ ଓ ମାନସିକ ସଂଚାଳନ ଘଟାଇ କିଛି ହାସଲ କରିବାର ମନୋବୃତ୍ତି କମିଯାଏ । ତୃତୀୟତଃ, ଏକ ଭାବଗତ ଦାରିଦ୍ର୍ୟ ମଧ୍ୟ ସୃଷ୍ଟି ହୁଏ । ଅସହାୟବୋଧରେ ପୀଡ଼ିତ ହେଲେ ମାନସିକ ଅବସାଦ ବଢ଼େ ଏବ ମାନସିକ ପ୍ରସନ୍ନତା କମିଯାଏ ।

ପରବର୍ତ୍ତୀ ଗବେଷଣାମାନଙ୍କରେ ବିଭିନ୍ନ ଧରଣର ଯାନ୍ତ୍ରିକ କୌଶଳ ଅବଲମ୍ବନ କରାଯାଇ ଶିଶୁ ଓ ମନୁଷ୍ୟମାନଙ୍କର ଅସହାୟତା ବିଷୟରେ ଅନୁଶୀଳନ କରାଯାଇଛି । ଦେଖାଯାଇଛି ଯେ, ପ୍ରାଣୀମାନଙ୍କ ପରି ନିୟନ୍ତ୍ରଣବିହୀନ ପରିସ୍ଥିତିରେ ମନୁଷ୍ୟକୁ ରଖାଗଲେ ଅସହାୟବୋଧ ସୃଷ୍ଟି ହେବ ଏବଂ ପରେ ପରେ ସେମାନଙ୍କର ଶିକ୍ଷା କୌଶଳ, ଅଭୀପ୍ସା ଓ ପ୍ରସନ୍ନତାରେ ହ୍ରାସ ଘଟିବ । ଅଧିକନ୍ତୁ ଶିଶୁ ଓ ମନୁଷ୍ୟ କ୍ଷେତ୍ରରେ ଆଉ ଗୋଟିଏ କ୍ଷତି ଘଟିବ । ତାହା ହେଉଛି ଆତ୍ମବିଶ୍ୱାସର ବିଲୟ । ଅସହାୟବୋଧର ଶିକାର ହେଲେ ନିଜର ସାମର୍ଥ୍ୟ ଉପରୁ ଆସ୍ଥା ତୁଟେ ଏବଂ ଗଭୀର ବିଶ୍ୱାସ ନେଇ କୌଣସି କାମଟିଏ କରିବା ସେମାନଙ୍କ ପକ୍ଷେ କଷ୍ଟକର ହୋଇପଡ଼େ ।

ଏକ ବୃହତ୍ତର ପରିପ୍ରେକ୍ଷୀରେ ଦେଖିଲେ ଜଣାଯାଏ ଯେ ଅସହାୟବୋଧ ମାନବ ଜୀବନର ଗୁଣାତ୍ମକ ଦିଗଟିକୁ ବିପନ୍ନ କରେ । ଅସହାୟତା ସମ୍ପର୍କରେ ଗବେଷଣା କରାଯାଇଥିବା ତଥ୍ୟରୁ ଜଣାପଡ଼େ ଯେ, ଅସହାୟବୋଧଗ୍ରସ୍ତ ମନୁଷ୍ୟ ଅନ୍ୟ କେତେକ ସମସ୍ୟାର ସମ୍ମୁଖୀନ ହୁଏ । ଏପରି ଲୋକମାନେ ଅଧିକ ମାତ୍ରାରେ ରୋଗଗ୍ରସ୍ତ ହେବାର ଦେଖାଯାଏ । ଅସହାୟବୋଧ ସମ୍ପନ୍ନ ବ୍ୟକ୍ତିମାନେ ଦୈନନ୍ଦିନ ଜୀବନର ସମସ୍ୟା ସହିତ ସମନ୍ୱୟ ରକ୍ଷା କରିବାରେ ବିଶେଷ ସମର୍ଥ ହୁଅନ୍ତି ନାହିଁ । ସେମାନେ ବେଶୀ ବିଷାଦଗ୍ରସ୍ତ ହୋଇପଡ଼ନ୍ତି । ଅସହାୟତାର କୁପରିଣତିର ବିଷଦ ଆଲୋଚନା ଅପେକ୍ଷା ଶିଶୁ ମନରେ ଏହା କିପରି ଅଙ୍କୁରିତ ଏବଂ ପ୍ରସାରିତ ହୁଏ ସେ ସମ୍ପର୍କରେ ଆଲୋଚନା ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ।

ପୂର୍ବ ଆଲୋଚନା ଅନୁଯାୟୀ ଇତରପ୍ରାଣୀ ହେଉ ବା ମଣିଷ ଶିଶୁ ହେଉ, ନିୟନ୍ତ୍ରଣବିହୀନ ପରିବେଶର ଶରବ୍ୟ ହେଲେ ଅସହାୟତା ବୋଧ ସୃଷ୍ଟି ହୁଏ । ଖରାପ ପରିସ୍ଥିତିର ଶରବ୍ୟ ହୋଇ ଶିଶୁଟି ଯେତେବେଳେ ଦେଖେ ଯେ ତା'ର ବ୍ୟବହାର ଦ୍ୱାରା ସେ ବାହ୍ୟଜଗତରେ କୌଣସି ପରିବର୍ତ୍ତନ ଆଣିବାରେ ଅସମର୍ଥ ସେତେବେଳେ ତାର ଅସହାୟବୋଧ ଜନ୍ମେ । ପରିବେଶରେ ନିୟନ୍ତ୍ରଣଶୀଳତାର ଅଭାବ ଘଟିଲେ ଅସହାୟବୋଧ ଅଙ୍କୁରିତ ହେବା ସ୍ୱାଭାବିକ । କିନ୍ତୁ ଏ ପ୍ରକାର ପରିସ୍ଥିତି ସବୁ ଶିଶୁଙ୍କ ମନରେ ସମାନ ପରିମାଣରେ ଅସହାୟତା ସୃଷ୍ଟି କରି ନଥାଏ ।

ଗବେଷଣାରୁ ଦେଖାଦେଇଛି ଯେ, କେତେକ ସମାଜୀକରଣ ବ୍ୟବସ୍ଥା ଶିଶୁ ମନରେ ଅସହାୟତାକୁ ବ୍ୟାପକ କିମ୍ବା ସୀମିତ କରିପାରେ । ଆମର ପରିବାର, ବନ୍ଧୁ, ପ୍ରତିବେଶୀ ଓ ଶିକ୍ଷାନୁଷ୍ଠାନ ଇତ୍ୟାଦି ସଂସ୍ଥା ଅନେକ ସମୟରେ ପୂର୍ବବର୍ଣ୍ଣିତ ମୂଷାର ପ୍ଲାଟଫର୍ମ ପରି କାମ କରେ । ଏଗୁଡ଼ିକ ଏପରି କେତେକ ଅବସ୍ଥା ସୃଷ୍ଟି କରନ୍ତି ଯାହାକି ଶିଶୁର ଅସହାୟତା ବୃଦ୍ଧିରେ ସହାୟକ ହୁଏ । ଏ ସବୁଗୁଡ଼ିକର ଭୂମିକା ଗୋଟିଏ ପ୍ରବନ୍ଧର ସୀମିତ ପରିସର ମଧ୍ୟରେ ଆଲୋଚନା କରିବା ସମ୍ଭବ ନୁହେଁ । କେବଳ ବାପ-ମା'ଙ୍କ ଭୂମିକା ବିଚାର କରାଯାଉ । ତାହା ପୁଣି ସେମାନଙ୍କର ସାମାଜୀକରଣ ପ୍ରକ୍ରିୟାର କେତୋଟି ନିର୍ଦ୍ଦିଷ୍ଟ ଦିଗ ।

ଆମର ଗବେଷଣାରୁ ଜଣାପଡ଼ିଛି ଯେ, ଅନେକ ସମୟରେ ବାପା ମା' ନିଜ ଜାଣତ ବା ଅଜାଣତରେ ସଂଯୋଗହୀନ ବ୍ୟବହାର (Noncontigent behaviour) ଦର୍ଶାନ୍ତି ଏବଂ ଏହା ସେମାନଙ୍କ ପିଲାମାନଙ୍କ ଅସହାୟତାବୋଧ ବଢ଼ାଇବାରେ ସାହାଯ୍ୟ କରେ । ସଂଯୋଗହୀନ ବ୍ୟବହାର କହିଲେ କ'ଣ ବୁଝାଯାଏ ? ଘଟଣା ଓ ବ୍ୟବହାର ମଧ୍ୟରେ ସମ୍ପର୍କହୀନତାକୁ ସଂଯୋଗହୀନ ବ୍ୟବହାର କୁହାଯାଏ । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ପିଲାଟି ପରୀକ୍ଷାରେ ଭଲ କଲେ ବାପା ମା' ତାକୁ ଏକ ଉପହାର ଦେବେ ବୋଲି କହି ଦିଅନ୍ତି । କିନ୍ତୁ ପିଲାଟି କୃତିତ୍ୱ ଦର୍ଶାଇବା ପରେ ବାପା ମା'ଙ୍କର ଏସବୁ କଥା ମନେ ନ ଥାଏ । କଥା ଓ କାର୍ଯ୍ୟ ମଧ୍ୟରେ ଏପରି ସଂଯୋଗହୀନତାର ବାରମ୍ବାର ପୁନରାବୃତ୍ତି ଫଳରେ ଶିଶୁ ମନରେ ଧାରଣା ଜନ୍ମେ ଯେ କଥା ଓ କାର୍ଯ୍ୟ ମଧ୍ୟରେ କିଛି ସଂଯୋଗ ନାହିଁ । ସେହିପରି ପିତାମାତା କୌଣସି କାରଣ ନ ଦର୍ଶାଇ ଭାଗ୍ୟ ଉପରେ ଗୁରୁତ୍ୱ ଆରୋପ କରିବା, ଗତାନୁଗତିକତା ଉପରେ ପ୍ରାଧାନ୍ୟ ଦେବା ଅତି ମାତ୍ରାରେ ପରିବର୍ତ୍ତନହୀନ (Rigid) ବ୍ୟବହାର ଦର୍ଶାଇବା ଫଳରେ ଶିଶୁ ମନରେ ବାପା ମା'ଙ୍କର ସଂଯୋଗହୀନ ବ୍ୟବହାରର ପ୍ରଭାବ ପଡ଼େ । ସାମାଜୀକରଣର ମାଧ୍ୟମରେ ବାପା ମା'ଙ୍କର ଅସହାୟତା ଶିଶୁମାନଙ୍କୁ ସଂକ୍ରମିତ ହୁଏ ।

ଆମର ଗବେଷଣାରେ ପିତାମାତାଙ୍କ ସାମାଜୀକରଣ ତଥା ଶିଶୁପାଳନ ବ୍ୟବସ୍ଥାର ଆଉ ଗୋଟିଏ ଦିଗ ସୃଷ୍ଟି ହୋଇଛି । ତାହା ହେଉଛି କାରଣ ନିର୍ଦ୍ଦେଶ ସମ୍ପର୍କୀୟ ତାଲିମ (Training for attribution) ପ୍ରତ୍ୟେକ ମଣିଷ କିଛିନା କିଛି ଖରାପ ପରିସ୍ଥିତିର ସମ୍ମୁଖୀନ ହୁଅନ୍ତି ଏବଂ ଖରାପ ପରିସ୍ଥିତି ପାଇଁ କିଏ ଦାୟୀ, ପରିସ୍ଥିତିର ପ୍ରଭାବ କେତେ ବେଶୀ ହେବ ଏବଂ ଖରାପ ଅବସ୍ଥା କେତେ ଦିନ ଲାଗି ରହିବ ସେ ସମ୍ପର୍କରେ ଚିନ୍ତା କରନ୍ତି । ଏ କ୍ଷେତ୍ରରେ ଲକ୍ଷ୍ୟ କରାଯାଇଛି ସେ ପ୍ରତ୍ୟେକ ବ୍ୟକ୍ତି ପରିସ୍ଥିତିଟି କିପରି ବିଶ୍ଳେଷଣ କରିବ, ତା'ର ଏକ ନିଜସ୍ୱ ଶୈଳୀ ରହିଛି । କେତେ ଲୋକ ଖରାପ ପରିସ୍ଥିତିର ସମ୍ମୁଖୀନ ହେଲେ ନିଜକୁ

ପୂର୍ଣ୍ଣ ଭାବରେ ଦାୟୀ କରନ୍ତି । ନିଜର ସମାର୍ଥ୍ୟ ନ ଥିବାରୁ ଏପରି ଉପୁଜିଲା ବୋଲି ମନେ କରନ୍ତି । ଅନ୍ୟ ପକ୍ଷରେ ଅନ୍ୟ କେତେକ ଲୋକ ଖରାପ ପରିସ୍ଥିତି ପାଇଁ ଅନ୍ୟମାନେ ଓ ବାହ୍ୟ ପରିସ୍ଥିତି ଦାୟୀ ବୋଲି ବିଚାର କରନ୍ତି । ସାଧାରଣତଃ ନିଜକୁ ପୂର୍ଣ୍ଣ ମାତ୍ରାରେ ଦାୟୀ କରୁଥିବା ଲୋକମାନେ ମାତ୍ରାଧିକ ପରିମାଣର ଅସହାୟତା ଦର୍ଶାଇଥାନ୍ତି । ସେହିପରି କେତେକ ଲୋକ ଖରାପ ପରସ୍ଥିତି ସବୁଦିନ ବା ସବୁକାଳେ ରହିଥିବ ବୋଲି ଧରି ନିଅନ୍ତି । କିନ୍ତୁ ଖରାପ ପରିସ୍ଥିତି କ୍ଷଣସ୍ଥାୟୀ ଓ ଏହା ଅପସରିଯିବ ବୋଲି ଅନ୍ୟ କେତେକ ବିଶ୍ବାସ କରନ୍ତି । ଖରାପ ପରିସ୍ଥିତିକୁ ଦୀର୍ଘସ୍ଥାୟୀ ମନେ କରୁଥିବା ଲୋକଙ୍କ ଅସହାୟତା ଦୀର୍ଘସ୍ଥାୟୀ ଓ ଖରାପ ପରିସ୍ଥିତିକୁ କ୍ଷଣସ୍ଥାୟୀ ମନେ କରୁଥିବା ଲୋକଙ୍କର ଅସହାୟତା ଅସ୍ଥାୟୀ ହୋଇଥାଏ । ପରିଶେଷରେ କେତେକ ଲୋକ ଅସହାୟତାର ପ୍ରଭାବକୁ ବ୍ୟାପକ ବୋଲି ଧରି ନିଅନ୍ତି । ଦୁର୍ଘଟଣାରେ ହାତ ଭାଙ୍ଗିଥିବା ଲୋକଟି ଏପରି ବିଚାର କରୁଥିଲେ ସେ ଧରି ନିଏ ଯେ ତା' ଜୀବନର ସବୁ ସରିଗଲା । ସେ ଆଉ କୌଣସି କାର୍ଯ୍ୟ କରିପାରିବ ନାହିଁ । ମାତ୍ର ଅସହାୟତାର ପ୍ରଭାବକୁ ସୀମିତ ବିଚାର କରୁଥିବା ବ୍ୟକ୍ତି ବିଶ୍ବାସ ରଖେ ଯେ, ସେ ହାତର ସୁପରିଚାଳନା ଆବଶ୍ୟକ କରୁଥିବା କାମସବୁ ଠିକ୍ ରୂପେ କରି ନ ପାରିଲେ ମଧ୍ୟ ଅନ୍ୟସବୁ କାମ ସେ ଠିକ୍ କରିପାରିବ । ଖରାପ ପରିସ୍ଥିତିର ପ୍ରଭାବକୁ ବ୍ୟାପକ ମନେ କରୁଥିବା ବ୍ୟକ୍ତିର ଅସହାୟତା ତା' ଜୀବନର ସବୁ ପରିସରକୁ ବିପର୍ଯ୍ୟସ୍ତ କରେ । କିନ୍ତୁ ଅସହାୟତାର ପ୍ରଭାବକୁ ସୀମିତ ମନେ କରୁଥିବା ବ୍ୟକ୍ତି ଜୀବନରେ ଅସହାୟତାର ପରିସର ସୀମାବଦ୍ଧ ରହେ ।

ଗବେଷଣାରୁ ଦେଖାଯାଇଛି ବାପ ମା' ବିଭିନ୍ନ ଖରାପ ପରିସ୍ଥିତିର ବିଶ୍ଳେଷଣ କଲାବେଳେ ପିଲା ଆଗରେ ଯେଉଁ କାରଣ ନିର୍ଦ୍ଦେଶ ଶୈଳୀର ବ୍ୟବହାର କରନ୍ତି ସେସବୁ ପିଲା ମନରେ ଅଙ୍କୁରିତ ହୁଏ । ପିଲାଟି ପରୀକ୍ଷାରେ ଖରାପ କରି ଭଗ୍ନ ହୃଦୟରେ ଥିବାବେଳେ ବାପ ମା' ଯଦି ଆଲୋଚନା କରି ବସନ୍ତି ଯେ ପିଲାଟିର କିଛି ସାମର୍ଥ୍ୟ ନାହିଁ, ତା' ଦ୍ୱାରା କିଛି ହୋଇପାରିବ ନାହିଁ, ଏପରି କାରଣ ନିର୍ଦ୍ଦେଶ ପିଲାର ଅସହାୟତା ବୃଦ୍ଧି କରେ । ସେହିପରି ପିଲାର ବିଫଳତା ସବୁଦିନ ସେପରି ଲାଗି ରହିବ ଏବଂ କେବଳ ପାଠପଢ଼ା ନୁହେଁ ଜୀବନର ଅନ୍ୟ କ୍ଷେତ୍ରରେ ମଧ୍ୟ ସେ ବିଫଳ ହେବ—ଏପରି କଥୋପକଥନ ପିଲାର ଅସହାୟତା ବୃଦ୍ଧି କରେ ।

ପରୋକ୍ଷରେ ବାପ ମା' ପିଲାଟିର ବିଫଳତାର ବିଶ୍ଳେଷଣ କରିବାକୁ ଯାଇ ପିଲାଟିର ଉଦ୍ୟମଶୀଳତାର ଅଭାବ ଯୋଗୁଁ ଏହା ଘଟିଲା ବୋଲି ମତବ୍ୟକ୍ତ କରି

ପାରନ୍ତି । ସେହିପରି ପିଲାଟି ଏଥର ବିଫଳ ହେଲେ ମଧ୍ୟ ପରେ ସଫଳ ହେବାର ସମ୍ଭାବନା ରହିଛି ଏବଂ ପାଠଛଡ଼ା ସଫଳତା ଦର୍ଶାଇବା ପାଇଁ ଜୀବନର ଅନ୍ୟାନ୍ୟ କ୍ଷେତ୍ର ଉନ୍ମୁକ୍ତ । ବାପ ମା'ଙ୍କର ଏପରି ଆଲୋଚନା ପିଲାଟିର ଅସହାୟତା ହ୍ରାସରେ ସହାୟକ ହୁଏ ।

ମୋଟ ଉପରେ ବାପ ମା'ଙ୍କ ସାମାଜୀକରଣ ପ୍ରକ୍ରିୟାର କେତୋଟି ସୂକ୍ଷ୍ମଦିଗ ଶିଶୁର ଅସହାୟତା ବୃଦ୍ଧି ତଥା ହ୍ରାସ କରଣରେ ସହାୟକ ହୁଏ । ଶିଶୁ ମନରୁ ଅସହାୟବୋଧର ହ୍ରାସ ଘଟାଇ ତା' ମନରେ ସକ୍ଷମତାର ମନୋଭାବ ସୃଷ୍ଟି କରିବାକୁ ହେଲେ ଶିଶୁର ପରିବେଶ ନିୟନ୍ତ୍ରଣଶୀଳ (Controllable) ଏବଂ ସଂଯୋଗାତ୍ମକ (Contingent) କରିବାକୁ ହେବ ।

### କେଉଁ ବାଟରେ ଯିବେ ?

୧. ପ୍ରାରମ୍ଭିକ ପର୍ଯ୍ୟାୟରେ ଶିଶୁକୁ ମଧ୍ୟମ ଧରଣର କଷ୍ଟକର କାର୍ଯ୍ୟ ଦିଅନ୍ତୁ । ଯେଉଁ କାର୍ଯ୍ୟରେ ସଫଳତା ଲାଭ କରିବାର ସମ୍ଭାବନା ପ୍ରାୟ ଅଶୀ/ନବେ ଭାଗ, ସେପରି କାର୍ଯ୍ୟ ଦିଅନ୍ତୁ । ମୂଳରୁ ବିଫଳତା ଆସିଲେ ପରିଣତି ବିଷମ ହେବ ।

୨. ବିଫଳତା କ୍ଷେତ୍ରରେ ଶିଶୁଟି ପୁରାପୂରି ଦାୟୀ, ଏପରି ଭାବନା ଦିଅନ୍ତୁ ନାହିଁ ।

୩. ଶିଶୁ ଗୋଟିଏ କ୍ଷେତ୍ରରେ ବିଫଳ ହେଲେ ମଧ୍ୟ ଅନ୍ୟ କ୍ଷେତ୍ରରେ ତା'ର ଭଲ ସାମର୍ଥ୍ୟ ରହିଛି, ଏପରି ଭାବନା ସୃଷ୍ଟି କରନ୍ତୁ ।



# ଶିଶୁ ଅସୁସ୍ଥତାର ଅନ୍ୟ ପାର୍ଶ୍ୱ

ଶାରୀରିକ ଅସୁସ୍ଥତା ଏକ ଅବାଂଛିତ ଅବସ୍ଥା । ଶିଶୁ କ୍ଷେତ୍ରରେ ମଧ୍ୟ ଏହା ଏକ ଅବାଂଛିତ ଅବସ୍ଥା । ପ୍ରତ୍ୟେକ ପିତାମାତା ଓ ଅଭିଭାବକ ଚାହାଁନ୍ତି ଯେ ଶିଶୁ ସଦାସର୍ବଦା ନିରୋଗ ଜୀବନଯାପନ କରୁ । ତଥାପି ଏପରି ଆଶା ସବୁବେଳେ ପରିପୂରିତ ହୋଇନଥାଏ । ଥଣ୍ଡାକାଶ ଓ ସର୍ଦ୍ଦିପରି ସାଧାରଣ ଅସୁସ୍ଥତାରେ ଶିଶୁ ପୀଡ଼ିତ ହୁଏ । ବେଳେବେଳେ ଯନ୍ତ୍ରଣାଦାୟକ ରୋଗ ମଧ୍ୟ ଶିଶୁକୁ ଅସ୍ଥିର କରେ । ଶାରୀରିକ ଅସୁସ୍ଥତା ନିଶ୍ଚିତ ଭାବରେ ଶିଶୁକୁ ପୀଡ଼ା ଦିଏ । ଏ ଦୃଷ୍ଟିରୁ ଅସୁସ୍ଥତା କାମ୍ୟ ନହେଲେ ମଧ୍ୟ ଅସୁସ୍ଥତାର ଅଳ୍ପ କେତୋଟି ମନସ୍ତାତ୍ତ୍ୱିକ ଉପଯୋଗିତା ଥିଲାପରି ମନେହୁଏ ।

ପ୍ରଥମତଃ ସର୍ଦ୍ଦିକାଶ ଓ ଥଣ୍ଡାପରି ଛୋଟ ଛୋଟ ରୋଗ ଶିଶୁ ଶରୀରରେ ରୋଗପ୍ରତିରୋଧ ଶକ୍ତିକୁ ଉଜ୍ଜୀବିତ କରେ । ବାହାର ଜୀବାଣୁ ସହିତ ଲଢ଼ାଇ କରିବା ପାଇଁ ଶରୀର ନିଜସ୍ୱ ଉପାୟରେ ପ୍ରତିରୋଧ ଶକ୍ତିର ସଞ୍ଚାର କରାଏ, ପୁଣି ପ୍ରତି ଶିଶୁ ଓ ବୟସ୍କ ବ୍ୟକ୍ତିର ନିଜସ୍ୱ ସତ୍ତା ସଂପର୍କରେ ଧାରଣା ରହିଥାଏ । ଏପରି ସ୍ୱପ୍ରତ୍ୟୟ (Self-concept) ନିଜର ଶରୀର, ନିଜର ବୁଦ୍ଧିମତ୍ତା ଓ ସାମାଜିକତାକୁ ନେଇ ଗଠିତ ହୋଇଥାଏ । ବେଳେବେଳେ ଶିଶୁ ଅସୁସ୍ଥ ରହିବା ଫଳରେ ଶିଶୁର ଶରୀରଗତ ସ୍ୱପ୍ରତ୍ୟୟ ସ୍ପଷ୍ଟ ହୁଏ । ଶରୀରର କି କି ଅଙ୍ଗସବୁ ରହିଛି ଏବଂ ଏହି ଅଙ୍ଗସବୁ କିପରି ଭାବରେ ପରସ୍ପର ସହିତ ସଂପୃକ୍ତ, ସେ ସଂପର୍କରେ ଧାରଣା ଜନ୍ମେ । ମୋଟ ଉପରେ ଶରୀରର ବିଭିନ୍ନ ଅଙ୍ଗପ୍ରତ୍ୟେଙ୍ଗର ସୁସ୍ଥତା ଓ ଅସୁସ୍ଥତାର ଏକ ତୁଳନାତ୍ମକ ଅନୁଭବ ଶିଶୁର ଶରୀରଗତ ସଚେତନତାକୁ ରୂପ ଦିଏ ।

ଦ୍ୱିତୀୟତଃ ଶିଶୁ ରୋଗରୁ ଭଲ ହେବା ମାତ୍ରେ ସୁସ୍ଥତାର ଅବସ୍ଥାକୁ ଠିକ୍ ଭାବେ ଅନୁଭବ କରେ । ରୋଗରୁ ଉଠିଲା ପରେ ନିଜକୁ ସୁସ୍ଥ ରଖିବାର ଗୁରୁତ୍ୱ ଅଧିକ ଭାବରେ ଉପଲବ୍ଧି କରେ । ଶରୀରର ଇନ୍ଦ୍ରିୟସବୁ ଠିକ୍‌ଠାକ୍ ଥିଲେ ସେ କିପରି ଭାବରେ ଉପଯୋଗୀ ଓ ସୁଖକର ଅନୁଭୂତି ପାଇପାରିବ ସେ ସଂପର୍କରେ ସଚେତନ ହୁଏ । ସମନ୍ୱୟ ରକ୍ଷା କରିବା ବା ଖାପଖୁଆଇବା ପାଇଁ ସେ କେତେକ କୌଶଳ ଶିକ୍ଷା କରେ । ଥଣ୍ଡାରୋଗ ପରି ଡିଆଁରୋଗଟି ପରିବାରର ଗୋଟିଏ ଶିଶୁକୁ ଅସୁସ୍ଥ କଲାପରେ ପୁଣି ଅନ୍ୟ ଗୋଟିଏ ଶିଶୁକୁ ଆକ୍ରାନ୍ତ କରିଥାଏ । ଶିଶୁଟି ନିଜେ ରୋଗମୁକ୍ତ ହେଲା ପରେ ନିଜର ଭାଇ କିମ୍ବା ଭଉଣୀକୁ ରୋଗଗ୍ରସ୍ତ ହେବାର ଦେଖେ । ନିଜେ ଅସୁସ୍ଥ ଥିବା ସମୟରେ କିପରି ପୀଡ଼ା ଅନୁଭବ କରୁଥିଲା ତାହା ମନେ ପକାଏ ।

ଭାଇଭଉଣୀମାନେ ତାହାର କିପରି ଯତ୍ନ ନେଇଥିଲେ ସେ କଥା ମଧ୍ୟ ସ୍ମରଣ କରେ । ଏହା ଶିଶୁର ସମାନାନୁଭୂତି ବୃଦ୍ଧି କରେ । ସେ ସମ୍ବେଦନଶୀଳ ହେବାକୁ ଶିକ୍ଷାପାଏ ଏବଂ ଅନ୍ୟର ଅସୁସ୍ଥତା ସମୟରେ ଅନ୍ୟକୁ ସାହାଯ୍ୟ କରିବାର ମନୋଭାବ ଗଠନ କରେ । ଶିଶୁର ଏପରି ବିକାଶ ପରବର୍ତ୍ତୀ କାଳରେ ବେଶ୍ ସହାୟକ ହୋଇଥାଏ ।

ଶାରୀରିକ ଅସୁସ୍ଥତା ସମୟରେ ଶିଶୁ ଆଉ ଗୋଟିଏ କଥା ଭଲ ରୂପେ ଶିକ୍ଷା କରେ । ପ୍ରଥମେ ପ୍ରଥମେ " ମୋତେ ଖରାପ ଲାଗୁଛି" ବକ୍ତବ୍ୟଟି ଶିଶୁ ପାଖରେ ଅସ୍ପଷ୍ଟ ଥାଏ । ଦେହ ଖରାପ ଥଲେ "ମୋତେ ଖରାପ ଲାଗୁଛି" ବୋଲି ବଡ଼ମାନେ କହନ୍ତି । ପୁଣି କିଛି ଗୋଟିଏ ଭୁଲ କରିଦେଲେ "ମୋତେ ଖରାପ ଲାଗୁଛି" ବୋଲି ମଧ୍ୟ କୁହାଯାଇଥାଏ । ଉଦାହରଣସ୍ୱରୂପ, ଶିଶୁର ପିତା କିମ୍ବା ମାତା ରାଗି କରି କାହାକୁ ରୁକ୍ଷ ଭାଷାରେ କହିଦେଲା ପରେ ସେ ହୁଏତ ନିଜର ଦୋଷ ସ୍ୱୀକାର କରି କହିଥାନ୍ତି—" ମୋତେ ଖରାପ ଲାଗୁଛି" ।

ଶିଶୁ ମଧ୍ୟ ଦେହର ପୀଡ଼ା ଅନୁଭବ କରି "ମୋତେ ଖରାପ ଲାଗୁଛି" ବୋଲି କହିଥାଏ । ପୁଣି ନିଜକୁ ନିୟନ୍ତ୍ରଣ କରି ନପାରି ସାନଭଉଣୀକୁ ଠେଲି ଦେଲା ପରେ ପୁନଶ୍ଚ ମନଦୁଃଖ କରି "ମୋତେ ଭଲ ଲାଗୁନାହିଁ" ବୋଲି କହେ । ମାତ୍ର ଶିଶୁ ଧୀରେ ଧୀରେ ଶାରୀରିକ ତ୍ରୁଟି ମାନସିକ ତ୍ରୁଟି ମଧ୍ୟରେ ପାର୍ଥକ୍ୟ ବୁଝେ । ଶିଶୁଟି ରୋଗଗ୍ରସ୍ତ ଥିବା ସମୟରେ ବାପା କିମ୍ବା ମା' ପ୍ରାୟ କହନ୍ତି—"ମୁଁ ଜାଣେ ତୋତେ ଖରାପ ଲାଗୁଛି । ମାତ୍ର ତୋର ଦେହ ଧୀରେ ଧୀରେ ଭଲ ହୋଇଯିବ । ତୋତେ ଭଲ ଲାଗିବ ।" ଏପରି କଥା ଓ ଅନୁଭବ ପୁନରାବୃତ୍ତି ଫଳରେ ଶିଶୁ ବୁଝିବାକୁ ସମର୍ଥ ହୁଏ ଯେ ଶରୀରର ଖରାପ ଅବସ୍ଥା ଯୋଗୁ ଖରାପ ଲାଗିବା ଏବଂ ଭୁଲଭଟକା କରି ଖରାପ ଲାଗିବା—ଏ ଦୁଇଟି ପୃଥକ୍ ।

ଶାରୀରିକ ଅସୁସ୍ଥତା ଏକ ଅପ୍ରୀତିକର ଅନୁଭବ ହେଲେ ମଧ୍ୟ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଏହାର ଏକ ନିର୍ଦ୍ଦିଷ୍ଟ ଭୂମିକା ରହିଛି । ନିଜର ଶରୀର ସଂପର୍କରେ ଶିଶୁକୁ ସଚେତନ କରାଇବା, ନିଜକୁ ସୁସ୍ଥ ରଖିବା ପାଇଁ ଶିଶୁ ମନରେ ଏକ ମନୋଭବ ନିର୍ମାଣ କରିବା ଏବଂ ଅନ୍ୟର ରୋଗ ସମୟରେ ସହାନୁଭୂତିଶୀଳ ମନୋବୃତ୍ତି ନେଇ କିଛିଟା ସାହାଯ୍ୟ କରିବାର ମାନସିକ ପ୍ରବଣତା ସୃଷ୍ଟି ଦିଗରେ ଏହା ସହାୟକ ହୋଇଥାଏ । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ଜାଣିଶୁଣି ଶିଶୁର ଅସୁସ୍ଥତାକୁ ଆମନ୍ତ୍ରଣ କରିବା ଉଚିତ୍ । କିନ୍ତୁ ଦୈବାତ୍ ଏପରି ଅବସ୍ଥା ଉପୁଜିଲେ ତାହାର ସମାଧାନ କରିବା ସଙ୍ଗେ ସଙ୍ଗେ ଦିଗଟି ପ୍ରତି ଅଜ୍ଞ ନ ରହିବା ବିଜ୍ଞତାର ସୂଚକ ବୋଲି କୁହାଯିବ ।



# ପ୍ରଥମ ସନ୍ତାନ ଓ ଭ୍ରାତୃବିବାଦ

ବିଶ୍ୱବିଖ୍ୟାତ ଋଷୀୟ କଥାକାର ଲିଓ ଟଲଷ୍ଟୟ ତାଙ୍କର ଅନନ୍ୟ କୃତୀ 'ଆନା କାରେନିନା' ଉପନ୍ୟାସର ପ୍ରଥମ ବାକ୍ୟରେ କହିଛନ୍ତି–''ସବୁ ସୁଖୀ ପରିବାରଗୁଡ଼ିକ ପରସ୍ପର ସହିତ ସମାନ । ମାତ୍ର ଅସୁଖୀ ପରିବାର ସବୁର ଦୁଃଖର କାରଣ ଭିନ୍ନ ଭିନ୍ନ ଧରଣର ହୋଇଥାଏ ।'' ପ୍ରକୃତିରେ ପରିବାରର ଶାନ୍ତି ଭଙ୍ଗର କାରଣ ଭିନ୍ନ ଭିନ୍ନ ଧରଣର ହୋଇଥାଏ । ଭାଇ ଭାଇ ମଧରେ ବିବାଦ, ଭଉଣୀ ଭଉଣୀ ମଧ୍ୟରେ ବିବାଦ ଏବଂ ଭାଇଭଉଣୀ ମଧରେ ବିବାଦ ପାରିବାରିକ ଅଶାନ୍ତିର କାରଣ ହୋଇପାରେ । ବାଲ୍ୟକାଳରେ ପିଲାମାନଙ୍କ ମଧରେ ତୀବ୍ର ପ୍ରତିଯୋଗିତାରୁ ଜନ୍ମ ନେଉଥିବା ଏପରି ବିବାଦ (Sibling Rivalry) ପରବର୍ତ୍ତୀ ବୟସରେ ମଧ ଅପ୍ରୀତିକର ରୂପ ନେଇପାରେ ।

ଏପରି ବୈରତାର ମନସ୍ତାତ୍ତ୍ୱିକ କାରଣ ଉଲ୍ଲେଖ କରିବା ପୂର୍ବରୁ ଜ୍ୟେଷ୍ଠ ସମ୍ପର୍କରେ ଆଲୋକପାତ କରାଯାଇପାରେ । ଜ୍ୟେଷ୍ଠ ସନ୍ତାନକୁ କେନ୍ଦ୍ରକରି ପିତାମାତାଙ୍କର ବହୁ ଅଭୀପ୍ସା ଓ ପ୍ରତ୍ୟାଶା ଗଠିତ ହୋଇଥାଏ । ପ୍ରଥମ-ଜନ୍ମିତ ସନ୍ତାନ ପିତାମାତାଙ୍କର ସମ୍ପୂର୍ଣ୍ଣ ଅଭିନିବେଶ (Attention) ଲାଭ କରେ । ଶୈଶବ ଅବସ୍ଥାରେ ଏପରି ସନ୍ତାନର ସବୁପ୍ରକାର ଚାହିଦା ପୂରଣ ପାଇଁ ପିତାମାତା ଧ୍ୟାନ ଦେଇଥାନ୍ତି । ଅନ୍ୟ ସନ୍ତାନର ଜନ୍ମ ନ ହେବା ପର୍ଯ୍ୟନ୍ତ ଏପରି ଶିଶୁ ପରିବାର ମଧରେ କୌଣସି ପ୍ରତିଯୋଗିତାର ସମ୍ମୁଖୀନ ହୋଇ ନଥାଏ ।

ଏହାର ଫଳସ୍ୱରୂପ ପିତାମାତାଙ୍କର ସବିଶେଷ ଧ୍ୟାନ, କଥୋପକଥନର ସୁଯୋଗ ଏବଂ ଅନ୍ୟସବୁ ସୁଖ ସ୍ୱାଚ୍ଛନ୍ଦ୍ୟ ଜ୍ୟେଷ୍ଠ ସନ୍ତାନର ବିକାଶରେ ସହାୟକ ହୁଏ । କେତେକ ଅନୁଧ୍ୟାନରୁ ଜଣାଯାଇଛି ଯେ ପରବର୍ତ୍ତୀ ସନ୍ତାନମାନଙ୍କ ତୁଳନାରେ ଜ୍ୟେଷ୍ଠସନ୍ତାନର ବୁଦ୍ଧିମତ୍ତା (Intelligence) ଅଧିକ । ଅବଶ୍ୟ ଏହାର ବ୍ୟତିକ୍ରମ ରହିଛି । ତଥାପି ଜ୍ୟେଷ୍ଠ ସନ୍ତାନ ପିତାମାତା ଓ ବୟସ୍କମାନଙ୍କ ସହିତ କ୍ରିୟାଅନୁକ୍ରିୟାର (Interaction) ଅଧିକ ସୁଯୋଗ ପାଉଥିବାରୁ ଏପରି ସମ୍ଭାବନାର ପରିମାଣ ଅଧିକ । ଯୁକ୍ତରାଷ୍ଟ୍ର ଆମେରିକାର କରାଯାଇଥିବା ଗୋଟିଏ ସର୍ବେକ୍ଷଣରୁ ଦେଖାଯାଇଛି ଯେ ରାଜନୀତିର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ମଧରେ ଅଧିକାଂଶ ପ୍ରଥମ ଜନ୍ମିତ ସନ୍ତାନ ରହିଛନ୍ତି ।

ଅବଶ୍ୟ ଜ୍ୟେଷ୍ଠ ସନ୍ତାନ କେତେକ ସୁଯୋଗର ଅଧିକାରୀ ହେଉଥିଲେ ମଧ ଅନ୍ୟ କେତେକ ଚାପର ସମ୍ମୁଖୀନ ହୁଏ । ଅନ୍ୟ ସନ୍ତାନମାନଙ୍କ ତୁଳନାରେ ଜ୍ୟେଷ୍ଠ ସନ୍ତାନର ବିଫଳତା ପିତାମାତାଙ୍କୁ ଅପେକ୍ଷାକୃତ ଅଧିକ ଦୁଃଖ ଦିଏ । ବିଶେଷତଃ ଜ୍ୟେଷ୍ଠ ସନ୍ତାନଟି ପୁତ୍ର ହୋଇଥିଲେ ଏପରି ବିଷାଦର ପରିମାଣ ଅଧିକ ହୁଏ । ଏ

ଦୃଷ୍ଟିରୁ ଜ୍ୟେଷ୍ଠ ସନ୍ତାନକୁ ବହୁ କ୍ଷେତ୍ରରେ ସତର୍କତା ଅବଲମ୍ବନ କରିବାକୁ ହୋଇଯାଏ ଏବଂ ସେ ଏଥିପାଇଁ କିଛି ପରିମାଣରେ ମାନସିକ ଚାପ (Stress) ଅନୁଭବ କରେ । ତିନୋଟି ସନ୍ତାନ ଥିବା ପରିବାରରେ କନିଷ୍ଠ ସନ୍ତାନ ମଧ୍ୟ କିଛି ପରିମାଣରେ ପିତାମାତାଙ୍କର ଅଭିନିବେଶ (Attention) ଲାଭ କରେ । ମାତ୍ର ମଧ୍ୟମ ଏ ଦୃଷ୍ଟିରୁ କିଛିଟା ହରାଏ । ପରିବାରରେ ଏକାଠି ବସି ଖାଇବା ସମୟରେ ପିତାମାତା ମଧ୍ୟମ ସନ୍ତାନ ସହିତ ଅପେକ୍ଷାକୃତ କମ ବାକ୍ୟବିନିମୟ କରୁଥିବାର ଲକ୍ଷ୍ୟ କରାଯାଇଛି ।

ଏକାଧିକ ସନ୍ତାନ ଥିବା ପରିବାରରେ ଭାଇଭାଇ ମଧ୍ୟରେ ଭଉଣୀ ଭଉଣୀ ମଧ୍ୟରେ ଏବଂ ଭାଇଭଉଣୀ ମଧ୍ୟରେ ବୈରତା (Sibling Rivalry) ଲକ୍ଷ୍ୟ କରାଯାଏ । ଏପରି ବୈରତା ଆମର ପୁରାଣଶାସ୍ତ୍ର ଓ ଲୋକକଥାରେ ସ୍ଥାନ ପାଇଛି । ''ବାଇବେଲ୍''ରେ 'ଜୋସେଫ୍' ଗଳ୍ପରେ ପିତା ସାନପୁତ୍ର ଜୋସେଫକୁ ଭଲ ପାଉଥିବାରୁ ବଡ଼ଭାଇର କ୍ରୁର ଓ ଉଗ୍ରରୂପ ହୋଇଥିବାର ବର୍ଣ୍ଣନା ରହିଛି । ଓଡ଼ିଶାର ଲୋକଗଳ୍ପ 'ଖୁଲଣା ସୁନ୍ଦରୀ'ରେ ଭଉଣୀ ନୟନାର ଖୁଲଣା ପ୍ରତି କ୍ରୂର ମନୋଭାବର ବିସ୍ତୃତ ବର୍ଣ୍ଣନା ଦିଆଯାଇଛି ।

ଏକାଧିକ ସନ୍ତାନ ଜନ୍ମଗ୍ରହଣ କରିଥିବା ପରିବାରରେ ପିତାମାତାଙ୍କ ଦୃଷ୍ଟି ଆକର୍ଷଣ, ସ୍ନେହଶ୍ରଦ୍ଧା ଲାଭ କରିବାର ପ୍ରତିଦ୍ୱନ୍ଦ୍ୱିତା ଏକ ସ୍ୱାଭାବିକ ପ୍ରକ୍ରିୟା । ପିତାମାତାଙ୍କର ଧ୍ୟାନ ଆକର୍ଷଣ କରିବା ଏକ ସହଜ ସୁଲଭ ମାନସିକ ଚାହିଦା । ଏ ଦୃଷ୍ଟିରୁ ଭାଇଭାଇ ମଧ୍ୟରେ, ଭଉଣୀ-ଭଉଣୀ ମଧ୍ୟରେ ଭାଇ-ଭଉଣୀ ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ହେବା ମଧ୍ୟ ସ୍ୱାଭାବିକ । ମାତ୍ର ଦୁର୍ଭାଗ୍ୟର କଥା ଯେ ଏପରି ପ୍ରତିଦ୍ୱନ୍ଦ୍ୱିତା ବେଳେବେଳେ ହିଂସ୍ରରୂପ ନେଇଥାଏ । ଏପରିକି ବାଲ୍ୟକାଳୀନ ବୈରତା ଜୀବନର ପରବର୍ତ୍ତୀ ସୋପାନକୁ ପ୍ରଭାବିତ କରିଥାଏ । ବୟସ୍କ ଅବସ୍ଥାରେ ମଧ୍ୟ ଜଣେ ବ୍ୟକ୍ତି ନିଜର ଏପରି ବାଲ୍ୟକାଳୀନ ବୈରତାକୁ ଭାଇ କିମ୍ବା ଭଉଣୀ ପ୍ରତି ପ୍ରକାଶ୍ୟ ଭାବରେ ଦର୍ଶାଇଥାଏ । ବିଶେଷତଃ ଏମାନଙ୍କ ମଧ୍ୟରୁ ଜଣେ କେହି ବାହ୍ୟଜଗତରେ ସମ୍ମାନ ସମ୍ବର୍ଦ୍ଧନା ଲାଭ ଅନ୍ୟ ଜଣେ ଅଭିନନ୍ଦନ ଜଣାଇବା ପରିବର୍ତ୍ତେ ବିଦ୍ୱେଷ ପ୍ରକାଶ କରେ ।

ବୈରତାକୁ ପ୍ରକାଶ୍ୟ ରୂପ ଦେଇଥିବା ଅବସ୍ଥା ସବୁର ଉପାଦାନ ସମ୍ପର୍କରେ ଅନୁଧ୍ୟାନ କରାଯାଇଛି । ଦେଖାଯାଇଛି ଯେ ଦୁଇଟି ସନ୍ତାନ ମଧ୍ୟରେ ଜନ୍ମର ବ୍ୟବଧାନ ଯେତେ କମ ବୈରତାର ମାତ୍ରା ସେତେ ଅଧିକ । ପୁଣି ଭାଇଭଉଣୀ ମଧ୍ୟରେ ରହିଥିବା ବୈରତା ତୁଳନାରେ ଭାଇଭାଇ ମଧ୍ୟରେ ଏବଂ ଭଉଣୀ ଭଉଣୀ ମଧ୍ୟରେ ଉପୁଜିଥିବା ବୈରତାର ମାତ୍ରା ଅପେକ୍ଷାକୃତ ଅଧିକ । ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ପିତାମାତାଙ୍କ ପକ୍ଷପାତୀ (Biased) ମନୋଭାବ । ଗୋଟିଏ ସନ୍ତାନକୁ ମାତ୍ରାଧିକ ସ୍ନେହଶ୍ରଦ୍ଧା ଦେଇ ଅନ୍ୟଟିକୁ କମ୍ ପରିମାଣର ସ୍ନେହଶ୍ରଦ୍ଧା

ଦେଲେ ବୈରତା ବୃଦ୍ଧିପାଏ । ପୁଣି ଅନାଦର ପାଉଥିବା ଶିଶୁଟି ପିତାମାତାଙ୍କ ପ୍ରତି ନିଜର ବିଦ୍ରୋହ ପ୍ରକାଶ କରିବାର ସାହସ ପାଏ ନାହିଁ । ଏପରି ବିଦ୍ରୋହ ମନୋଭାବକୁ ସେ ତା'ର ଭାଇଭଉଣୀ ପ୍ରତି ନିକ୍ଷେପ କରିଥାଏ ।

ପରିବାର ମଧ୍ୟରେ ଭାଇଭଉଣୀଙ୍କ ମଧ୍ୟରେ ପ୍ରତିଯୋଗିତା ଏଡ଼ାଇବା ସହଜ ନୁହେଁ । ସ୍ନେହ ଶ୍ରଦ୍ଧା ଓ ସୁଯୋଗ ସବୁର ସମ୍ବଳ ହାସଲ କରିବା ପାଇଁ ପ୍ରତିଯୋଗିତା ଅବଶ୍ୟ ରହିବ । ମାତ୍ର ଏପରି ପ୍ରତିଯୋଗିତା ଯେପରି ତିକ୍ତ ରୂପ ନ ନିଏ ସେ ଦିଗରେ ପଦକ୍ଷେପ ନିଆଯାଇପାରିବ । ଦୁଇଟି ପନ୍ଥା ବିଶେଷ ଉପଯୋଗୀ ।

ପ୍ରଥମତଃ, ପିତାମାତାଙ୍କୁ ମନେରଖିବାକୁ ହେବ ଯେ ପରିବାରର ସବୁ ସନ୍ତାନମାନଙ୍କୁ ଏକା ଓ ସମାନ ଧରଣର ସୁଯୋଗ ଦେବାପାଇଁ ନିର୍ଦ୍ଦେଶ ଦିଆଯାଉ ନାହିଁ । ପ୍ରତିଟି ପିଲା ପାଇଁ ଯେ ଗୀତିଶିକ୍ଷକ ବ୍ୟବସ୍ଥା କରିବାକୁ ହେବ, ସେ କଥା କୁହାଯାଉନାହିଁ । ମାତ୍ର ସମାନ ପରିମାଣରୁ ଧ୍ୟାନଶୀଳତାର ସହ ସବୁ ଶିଶୁମାନଙ୍କର ସ୍ୱତନ୍ତ୍ର ଚାହିଦାସବୁ ନିରୀକ୍ଷଣ କରାଯିବା ଉଚିତ୍ । ଏହି ସ୍ୱତନ୍ତ୍ର ଚାହିଦା ପୂରଣ ପାଇଁ ଯଥା ସମ୍ଭବ ନିରପେକ୍ଷ ପଦକ୍ଷେପ ନିଆଯିବା ଉଚିତ୍ । ଗୋଟିଏ ଶିଶୁର ଗୀତ ଶିକ୍ଷକର ବ୍ୟବସ୍ଥା କରାଯାଇ ଅନ୍ୟ ଶିଶୁର ଗଣିତ ଶିକ୍ଷକର ବ୍ୟବସ୍ଥା କରାଯାଇ ପାରେ । ମାତ୍ର ପିତାମାତା ସବୁ ସନ୍ତାନସନ୍ତତି ପ୍ରତି ଉଦାର ଓ ସମତା ଦୃଷ୍ଟି ନେଇ ବିଚାର କରିଛନ୍ତି, ପିଲାମାନଙ୍କର ଏପରି ବିଶ୍ୱାସ ଓ ହୃଦ୍‌ବୋଧ ଆସିବା ଉଚିତ୍ ।

ଦ୍ୱିତୀୟତଃ, ପିଲାମାନଙ୍କ ସହିତ କାରବାର କଲାବେଳେ ପିତାମାତା ଗତାନୁଗତିକ ଏକସ୍ୱରୀ ବିଶେଷଣ ସବୁ ପ୍ରୟୋଗ କରିବା ଅନୁଚିତ, ମୋର ବଡ଼ ପୁଅଟି "ଚାଲାକ୍ ଚତୁର" ଓ ସାନ ପୁଅଟି "ଭାରୀ ମାନ୍ଦା", ଏପରି ବର୍ଣ୍ଣନାର ପୁନରାବୃତ୍ତି ପିଲାମାନଙ୍କର କ୍ଷତି କରିଥାଏ । ଭଲକାର୍ଯ୍ୟ ପାଇଁ ପ୍ରଶଂସା କରିବାକୁ ହେବ । କିନ୍ତୁ କୌଣସି ସନ୍ତାନ କ୍ଷେତ୍ରରେ ଏକ ନିର୍ଦ୍ଦିଷ୍ଟ ମୋହର (Lable) ବାରମ୍ବାର ବ୍ୟବହାର କରିବା ଫଳରେ ଉକ୍ତ ସନ୍ତାନଟିର ବ୍ୟବହାରର ସମ୍ଭାବନା ସଂକୁଚିତ ହୋଇଥାଏ । ଅନ୍ୟ ଭାଷାରେ କହିଲେ ବୁଝିବାକୁ ହେବ ଯେ ସନ୍ତାନର କାର୍ଯ୍ୟକଳାପକୁ ଲକ୍ଷ୍ୟ କରି ତାହାର ସହାୟକ ଭଳି ବର୍ଣ୍ଣନାତ୍ମକ ବିଶ୍ଳେଷଣ ପ୍ରୟୋଗ କରିବାକୁ ହେବ । ଗୋଟିଏ ଗୁଣ ବା ଅବଗୁଣ ମଧ୍ୟରେ ସନ୍ତାନକୁ ବାନ୍ଧି ରଖିବାର ଚେଷ୍ଟା କରାଯିବ ନାହିଁ ।

ପିତାମାତାଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ସନ୍ତାନସନ୍ତତିଙ୍କ ମଧ୍ୟରେ ସୃଷ୍ଟି ହେଉଥିବା ପ୍ରତିଦ୍ୱନ୍ଦ୍ୱିତାର ମନୋଭାବକୁ ରୂପାନ୍ତରୀତ କରିବା ଉଚିତ ଓ ମହତ ଲକ୍ଷ୍ୟ ସଂସ୍ଥାପନ କରିପାରିଲେ ପରିବାରର ପିଲାମାନେ ବ୍ୟକ୍ତିଗତ ଓ ସାମୂହିକ ଜୀବନ ବିକାଶର ସଫଳତା ହାସଲ କରିପାରିବେ ।



# ଯମଜ ସନ୍ତାନମାନଙ୍କ ସମ୍ପର୍କରେ

ଯମଜ ସନ୍ତାନମାନଙ୍କ ସମ୍ପର୍କରେ ଅନୁଧ୍ୟାନ କେବଳ ଚିକିତ୍ସା-ବିଜ୍ଞାନୀଙ୍କ ମଧ୍ୟରେ ସୀମିତ ନୁହେଁ । ଦୀର୍ଘଦିନ ଧରି ମନୋବିଜ୍ଞାନୀମାନେ ମଧ୍ୟ ଏ ଦିଗରେ କୌତୁହଳ ପ୍ରଦର୍ଶନ କରିଛନ୍ତି । ଚେହେରାର ସାମଞ୍ଜସ୍ୟ ଯମଜ ସନ୍ତାନମାନଙ୍କ ପାଇଁ କେତେ ପରିମାଣରେ ଅନୁକୂଳ ଓ କେତେ ମାତ୍ରାରେ ପ୍ରତିକୂଳ ଅବସ୍ଥା ସୃଷ୍ଟିକରେ, ତାହା ମନୋବୈଜ୍ଞାନିକଙ୍କ ଗବେଷଣାର ସାମଗ୍ରୀ । ସେହିପରି ଅନ୍ୟମାନେ ବିଶେଷକରି ପିତାମାତା ଏମାନଙ୍କ ପ୍ରତି କେଉଁ ଦୃଷ୍ଟିଭଙ୍ଗୀ ଗ୍ରହଣ କରିବା ଉଚିତ ହେବ, ତାହା ମଧ୍ୟ ଅନୁଶୀଳନର ବିଷୟ ।

ପ୍ରଥମେ ଜାଣିରଖିବା ଉଚିତ ଯେ ଯମଜ ସନ୍ତାନମାନଙ୍କ ବିଷୟରେ ସାମାଜିକ-ସାଂସ୍କୃତିକ କୌତୁହଳ ମଧ୍ୟ ରହିଛି । ଆଫ୍ରିକାର ୟୁରୁବା ସମ୍ପ୍ରଦାୟରେ ଜନ୍ମିତ ଯମଜ ସନ୍ତାନମାନଙ୍କୁ ଦେବ ବା ଦେବୀଙ୍କର ପୃଥିବୀରେ ଆବିର୍ଭାବର ସମ୍ମାନ ଦିଆଯାଏ । ଏପରି ସନ୍ତାନର ପିତାମାତାଙ୍କୁ ସମ୍ମାନ ଜଣାଇବା ପାଇଁ ସେମାନଙ୍କୁ କାଷ୍ଠନିର୍ମିତ ଏକ ଯୁଗ୍ମଦେବ ବା ଯୁଗ୍ମଦେବୀର ମୂର୍ତ୍ତି ଉପହାର ଦିଆଯାଏ । ଅନ୍ୟ ପକ୍ଷରେ ଟାଞ୍ଜିନିୟାର କାଗୁରୁ ଗୋଷ୍ଠୀରେ ଜାଆଁଳା ସନ୍ତାନମାନଙ୍କୁ ବିପଜ୍ଜନକ ମନେକରାଯାଇ ଜନ୍ମ ସମୟରୁ ମାରିଦେବା ପାଇଁ ଚେଷ୍ଟା କରାଯାଏ । ଯୁକ୍ତରାଷ୍ଟ୍ର ଆମେରିକାର ଓ୍ୱାହିଓ ରାଜ୍ୟର ଜାଆଁଳାନଗର (Twinburg)ରେ ବର୍ଷର ଏକ ନିର୍ଦ୍ଦିଷ୍ଟ ଦିନରେ ଜାଆଁଳାମାନଙ୍କର ଏକତ୍ର ସମାବେଶର ଆୟୋଜନ କରାଯାଏ । ସବୁଠାରୁ ଅଧିକ ସାଦୃଶ୍ୟ ଥିବା ଯମଜ ସନ୍ତାନମାନଙ୍କୁ ଚିହ୍ନଟ କରାଯାଇ ପୁରସ୍କାରରେ ସମ୍ମାନିତ କରାଯାଏ ।

ସାଧାରଣତଃ ଦୁଇ ପ୍ରକାରର ଯମଜ ସନ୍ତାନ ଜନ୍ମ ନିଅନ୍ତି ପ୍ରଥମ ପ୍ରକାରର ଯମଜ ସନ୍ତାନମାନଙ୍କୁ ଭ୍ରାତୃରୂପୀ ଯମଜ ସନ୍ତାନ କୁହାଯାଏ । ଗର୍ଭଧାରଣ ସମୟରେ ପୁରୁଷର ଦୁଇଟି ଶୁକ୍ରାଣୁ ଏବଂ ନାରୀର ଦୁଇଟି ଗର୍ଭାଣୁ ମିଳିତ ହୋଇ ଗୋଟିଏ ଦ୍ୱିଯୁଗ୍ମଜ (Dizygotic) ଗର୍ଭକୋଷ (Ovum) ଗଠନ କରନ୍ତି । ଏହାର ଫଳସ୍ୱରୂପ ଭାତ୍ରୃରୂପୀ ଯମଜ ଜନ୍ମଲାଭ କରନ୍ତି । ସାଧାରଣତଃ ବଂଶାନୁକ୍ରମେ ଗୋଟିଏ ପରିବାର ମଧ୍ୟରେ ଏପରି ଯମଜ ସନ୍ତାନ ଜନ୍ମନେବାର ସମ୍ଭାବନା ଅଧିକ ।

ଅନ୍ୟ ପକ୍ଷରେ ଦ୍ୱିତୀୟ ପ୍ରକାରଟି ହେଉଛି ସମରୂପୀ ଯମଜ (Identical Twins) । ଗର୍ଭଧାରଣ ସମୟରେ ଗୋଟିଏ ଶୁକ୍ରାଣୁ ଓ ଗୋଟିଏ ଡିମ୍ବାଣୁ ମିଳିତ



(ଦୁଇଟି ଶିଶୁ, ଗୋଟିଏ ରୂପ)

ହେବାପରେ ତାହା ଦୁଇ ଭାଗରେ ବିଭକ୍ତ ହୋଇ ଦୁଇଟି ଯମଜ ସନ୍ତାନକୁ ଜନ୍ମ ଦେଲେ ସନ୍ତାନମାନେ ସମରୂପୀ ଯମଜ ହୁଅନ୍ତି । ଲକ୍ଷ୍ୟ କରିବାର କଥା ଯେ ଏମାନଙ୍କ କ୍ଷେତ୍ରରେ ଗୋଟିଏ ମାତ୍ର ଶୁକ୍ରାଣୁ ଓ ଗୋଟିଏ ମାତ୍ର ଡିମ୍ବାଣୁ ଅଂଶ ଗ୍ରହଣ କରୁଥିବାରୁ ସମରୂପୀ ଯମଜ ସନ୍ତାନମାନଙ୍କରେ ଜିନ୍ ସମାନ ରହିଥାଏ । ଏଠାରେ ବଂଶଗତ ଗୁଣର ଆଧାର ସମାନ ଥିବାରୁ ଏମାନଙ୍କ ମଧ୍ୟରେ ବ୍ୟବହାରଗତ ପାର୍ଥକ୍ୟ ପରିବେଶର ଭୂମିକା ସ୍ପଷ୍ଟ କରିଥାଏ ।

ଅବଶ୍ୟ ଉପରୁ ଦେଖି ସମରୂପୀ ଯମଜ (Identical Twins) ଚହ୍ନଟ କରିବା କଷ୍ଟକର । ସମରୂପୀ ଯମଜ କ୍ଷେତ୍ରରେ ଦୁଇଟିଯାକ ସନ୍ତାନ ପୁତ୍ର କିମ୍ବା ଦୁଇଟିଯାକ କନ୍ୟା ସନ୍ତାନ ହୋଇପାରନ୍ତି । ଏମାନଙ୍କ ଚେହେରାରେ ଅଧିକ ସାଦୃଶ୍ୟ ଥାଏ । ତଥାପି ବ୍ୟକ୍ତିତ୍ୱର ପାର୍ଥକ୍ୟ ରହିଯାଏ । ଜରାୟୁରେ ଅବସ୍ଥିତି ପରି ଅନ୍ୟ କେତେକ ପାର୍ଥକ୍ୟ ଦୁହିଁଙ୍କ ମଧ୍ୟରେ ପରିବେଶଗତ ଭିନ୍ନତା ସୃଷ୍ଟିକରେ । ଏପରି ପରିବେଶଗତ (Enviornmental) ଭିନ୍ନତା ପୃଥକ୍ ପୃଥକ୍ ପ୍ରଭାବ ସୃଷ୍ଟି କରେ । ତଥାପି ଦୁହିଁଙ୍କ ମଧ୍ୟରେ ସାଦୃଶ୍ୟର ପରିମାଣ ଖୁବ୍ ଅଧିକ । ସମରୂପୀ ଯମଜ ମଧ୍ୟରୁ ଜଣେ ଅନ୍ୟଜଣକର ବୃକ୍କ (Kidney) ଗ୍ରହଣ କରିନେବାର ସମ୍ଭାବନା ପ୍ରାୟ ୧୦୦ ପ୍ରତିଶତ । ଅନ୍ୟ ପକ୍ଷରେ ଭାତୃଜ ଯମଜମାନଙ୍କ ମଧ୍ୟରେ ସାଦୃଶ୍ୟର ପରିମାଣ ଅପେକ୍ଷାକୃତ କମ୍ । ଏପରି

ସନ୍ତାନମାନଙ୍କ ମଧ୍ୟରୁ ଗୋଟିଏ ସନ୍ତାନର ବୃକ୍କ (Kidney) ଜନିତ ସମସ୍ୟା ଉପୁଜିଲେ ଅନ୍ୟ ସନ୍ତାନଠାରୁ ବୃକ୍କ ଗ୍ରହଣ କରିନେବାର ସାମର୍ଥ୍ୟ ୫ ପ୍ରତିଶତ ବୋଲି କଳନା କରାଯାଉଛି ।

ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନ ହେଉଛି ପିତାମାତା ଏପରି ଯୁଗ୍ମଜ ସନ୍ତାନମାନଙ୍କ ପ୍ରତି କିପରି ଦୃଷ୍ଟିଭଙ୍ଗୀ ଗ୍ରହଣ କରିବା ଉଚିତ୍ ହେବ ? ସେମାନଙ୍କୁ ପୁରାପୁରି ସମାନ ଭାବରେ ପାଳନ କରିବା ବିଧେୟ ହେବ କି ? ଯମଜ ସନ୍ତାନମାନେ ଏକାପରି ଦିଶୁଥିଲେ ମଧ୍ୟ ସେମାନଙ୍କ ଏକ ଓ ଅଭିନ୍ନ ବିଚାର କରି ଯନ୍ତ୍ରବତ୍ ସମାନ ଭାବରେ ବ୍ୟବହାର କରିବା ଅନୁଚିତ ହେବ । ଏକାପରି ବ୍ୟବହାର କରିବା ଫଳରେ ସେମାନଙ୍କର ସ୍ୱପ୍ରତ୍ୟୟ (Self-Concept) ବିକାଶରେ ବାଧା ଉପୁଜିବ । ଛୋଟ-ବଡ଼ ସମସ୍ତଙ୍କର ଏକ ନିଜସ୍ୱ ସ୍ୱପ୍ରତ୍ୟୟ ରହିଥାଏ । ସେ ଦେଖିବାକୁ କିପରି, ତା'ର ବୁଦ୍ଧିମତ୍ତା କିପରି, ତା'ର ସାମାଜିକ ଦକ୍ଷତା କିପରି ଏବଂ ନୈତିକ ମୂଲ୍ୟବୋଧ କିପରି—ଏପରି ନିଜସ୍ୱ ଧାରଣା ସବୁ ବ୍ୟକ୍ତିର ରହିଥାଏ । ଯମଜ ସନ୍ତାନମାନେ ଏକାପରି ଦିଶୁଥିଲେ ମଧ୍ୟ ସେମାନଙ୍କର ମଧ୍ୟରେ କିଛି ପାର୍ଥକ୍ୟ ରହିଯାଏ । ଏକ ନିର୍ଦ୍ଦିଷ୍ଟ ଯମଜସନ୍ତାନଙ୍କ କ୍ଷେତ୍ରରେ ଦେଖାଗଲା ଯେ ଗୋଟିଏ ସନ୍ତାନର ଅଳ୍ପ ପରିମାଣର ମାନସିକ ଅନଗ୍ରସରତା (Mild mental retardation) ଥିବା ସ୍ଥଳେ ଅନ୍ୟ ସନ୍ତାନଟି ବୁଦ୍ଧିମତ୍ତାର ଅଧିକାରୀ । ସୁତରାଂ ସନ୍ତାନର ଶାରୀରିକ ଓ ମାନସିକ ଆବଶ୍ୟକତା ଚାହିଁ ପିତାମାତା ନିଜର ଲାଳନପାଳନ ଶୈଳୀ ସ୍ଥିର କରିବେ । ସେମାନଙ୍କୁ ସମ୍ପୂର୍ଣ୍ଣ ଏକାପରି ଲାଳନ କରିବା ଯେପରି କ୍ଷତିକାରକ, କୃତ୍ରିମ ଓ ଜୋରଜବରଦସ୍ତ ଭାବରେ ସେମାନଙ୍କୁ ଭିନ୍ନତାର ସ୍ୱାଦ ଦେବାର ପ୍ରୟାସ କରିବା ମଧ୍ୟ ସେିପରି ଅନୁପଯୋଗୀ । ଯୁଗ୍ମଜ ସନ୍ତାନମାନେ ଯେପରି ନିଜ ନିଜର ରୁଚି ଓ ଅଭୀପ୍ସା ଗଠନ କରିପାରିବେ ସେ ଦିଗରେ ପିତାମାତାଙ୍କ ପ୍ରଯତ୍ନ ରହିବା ଆବଶ୍ୟକ ।

ଅବଶ୍ୟ ବହୁ କ୍ଷେତ୍ରରେ ଏପରି ସନ୍ତାନମାନେ ଆତ୍ମପରିଚିତି ସମସ୍ୟାର ସମ୍ମୁଖୀନ ହୁଅନ୍ତି । କଥାବାର୍ତ୍ତା ସମୟରେ ମୁଁ କହିବା ସ୍ଥାନରେ "ଆମେ" ଶବ୍ଦଟି ବ୍ୟବହାର କରନ୍ତି । ପରସ୍ପର ମଧ୍ୟରେ ଥିବା ନିବିଡ଼ ସାଦୃଶ୍ୟ କେତେକ କ୍ଷେତ୍ରରେ ଉପଯୋଗୀ ଅନ୍ତରଙ୍ଗତା ସୃଷ୍ଟି କରିବା ସ୍ଥଳେ ଅନ୍ୟ କେତକ କ୍ଷେତ୍ରରେ ସମସ୍ୟା ସୃଷ୍ଟିକରେ । ଭୂମିକମ୍ପ ପରି ବିଭୀଷିକାରୁ ବର୍ତ୍ତି ଯାଇଥିବା ଏବଂ ବହୁଦିନ ପରେ ଉଦ୍ଧାର ପାଇଥିବା ଯୁଗ୍ମଜ ସନ୍ତାନ ମଧ୍ୟରୁ ଜଣେ କହିଲା—"ମୁଁ କେବଳ ତା'ର ସ୍ନେହଶ୍ରଦ୍ଧା ପାଇ ନିଜକୁ ବଞ୍ଚାଇ ରଖିପାରିଲି ।" ଯମଜଙ୍କ କ୍ଷେତ୍ରରେ ଏପରି ନିବିଡ଼ତା ସମ୍ଭବ ଏବଂ ଏହା ଜୀବନ ଧାରଣର ସହାୟକ ହୋଇପାରେ । ଅନ୍ୟ

ଗୋଟିଏ ଘଟଣାରେ ଦୁଇଟି ଯମଜ ଭଗିନୀ ଧ୍ୱଂସାତ୍ମକ କାର୍ଯ୍ୟକଳାପରେ ଲିପ୍ତ ଥିଲେ । ସେମାନେ ଧରାପଡ଼ିବା ପରେ ସେମାନଙ୍କୁ ଆଜୀବନ ସଶ୍ରମ କାରାଦଣ୍ଡ ଶାସ୍ତିବିଧାନ କରାଗଲା । ଏମାନଙ୍କ ମଧ୍ୟରୁ ଗୋଟିଏ ଭଉଣୀ କହିଲା- '' ମୁଁ କ'ଣ କରୁଥିଲି, ତାହା ଜାଣୁ ନଥିଲି । ମୋ ଭଉଣୀର ମନ ଓ ଆତ୍ମା ମୋତେ ଏପରି କବଳିତ କରିଥିଲା ଯେ ମୋର ନିଜସ୍ୱ ବୋଲି କିଛି ନଥିଲା ।'' ଏହାର ତାତ୍ପର୍ଯ୍ୟ ହେଉଛି ଯେ ଯମଜସନ୍ତାନମାନଙ୍କର ବ୍ୟକ୍ତିତ୍ୱ ଗୋଟିଏ ବ୍ୟକ୍ତିତ୍ୱ ମଧ୍ୟରେ ଅବରୁଦ୍ଧ ରହିପାରେ ।

ଗବେଷଣା କ୍ଷେତ୍ରରେ ଯମଜ ସନ୍ତାନମାନଙ୍କର ଏକ ବିଶେଷ ଉପଯୋଗିତା ରହିଛି । ପୂର୍ବରୁ ସୂଚନା ଦିଆଯାଇଛି ଯେ ସମରୂପୀ ଯମଜମାନଙ୍କ କ୍ଷେତ୍ରରେ ଜିନ୍ (Genes) ଏବଂ ବଂଶାନୁକ୍ରମିକତା (Heredity) ସ୍ଥିର ଓ ଅଭିନ୍ନ । ସୁତରାଂ ଏପରି ସମରୂପୀ ଯମଜମାନେ (Identical Twins) ବିଭିନ୍ନ ପରିବେଶରେ ପ୍ରତିପାଳିତ ହେବା ଫଳରେ ଏମାନଙ୍କର ବ୍ୟକ୍ତିତ୍ୱ ଓ ଦକ୍ଷତାସବୁର ଅନୁଶୀଳନ କରାଯାଇ ପରିବେଶର ପ୍ରଭାବ ସ୍ପଷ୍ଟରୂପେ ଜାଣିବା ସମ୍ଭବ ହୁଏ । ମନୁଷ୍ୟର କେଉଁ କେଉଁ ବିଭାଗ ବଂଶାନୁକ୍ରମିକତା (Heredity) ଦ୍ୱାରା ନିୟନ୍ତ୍ରିତ ଏବଂ କେଉଁ କେଉଁ ଦିଗସବୁ ପରିବେଶର ପରିଣତି, ତାହା ବୁଝିବା ସମ୍ଭବ ହୋଇଥାଏ ।

ଏହି ଧରଣର ଯମଜ ଅନୁଧ୍ୟାନ (Twins Studies) ମନୋବିଜ୍ଞାନୀମାନେ ବେଶ୍ ସଂଖ୍ୟାରେ କରିଛନ୍ତି । ଯୁକ୍ତରାଷ୍ଟ୍ର ଆମେରିକାର ମିନେସୋଟା ରାଜ୍ୟରେ ଏକ ବୃହତ୍‌ଧରଣର ଯମଜ ପ୍ରକଳ୍ପ କରାଯାଇଥିଲା । ଯମଜମାନଙ୍କୁ ସେମାନଙ୍କ ପିତାମାତାଙ୍କଠାରୁ ପୃଥକ୍ କରାଯାଇ ଭିନ୍ନଭିନ୍ନ ପରିବେଶରେ ଲାଳିତ ପାଳିତ କରାଯିବାର ବ୍ୟବସ୍ଥା ହେଲା । ପରବର୍ତ୍ତୀ ସମୟରେ ସେମାନଙ୍କର କୈଶୋର ଏବଂ ପ୍ରାକ୍-ଯୌବନ କାଳରେ ସେମାନଙ୍କର ମାନସିକ ରୋଗ, ମାନସିକ ଦକ୍ଷତା ଏବଂ ବ୍ୟକ୍ତିତ୍ୱର ଅନୁଶୀଳନ କରାଗଲା ।

ମିନୋସୋଟା ପ୍ରକଳ୍ପ ସମେତ ସମପର୍ଯ୍ୟାୟଭୁକ୍ତ ଅନୁଶୀଳନରୁ ଦେଖାଯାଇଛି ଯେ ମାନସିକ ଚାପର ଶରବ୍ୟ ହେବା ବହୁ ପରିମାଣରେ ବଂଶାନୁକ୍ରମିକତା ଉପରେ ନିର୍ଭରଶୀଳ । ଯମଜ ସନ୍ତାନ ମଧ୍ୟରୁ ଗୋଟିଏ ମାନସିକ ଚାପର କବଳିତ ହେଉଥିଲେ ଅନ୍ୟ ଜଣକ ଅନୁରୂପ ଲକ୍ଷଣ ଦେଖାଇବାର ସମ୍ଭାବନା ଖୁବ୍ ଅଧିକ । ଏହାର ଅର୍ଥ ନୁହେଁ ଯେ ମାନସିକ ଚାପ (Stress) ସୃଷ୍ଟି କରିବାରେ ପରିବେଶର କୌଣସି ଭୂମିକା ନାହିଁ । ମାତ୍ର ଜନ୍ମଗତ ବା ବଂଶାନୁଗତ କାରଣ ଏକ ସମ୍ଭାବନା ସୃଷ୍ଟି କରିଥାଏ ଏବଂ ପରିବେଶର ତାଡ଼ନା ମାନସିକ ଚାପକୁ ଏକ ପ୍ରକାଶ୍ୟ ରୂପ ଦିଏ । ଶୀଜୋଫ୍ରେନିଆ ବା

ଚିତ୍ତଭ୍ରଂଶୀ ବାତୁଳତା ପରି ଏକ ମାନସିକ ଚାପ ସୃଷ୍ଟ-ମାନସିକ ବିକୃତି ଗୋଟିଏ ସମରୂପୀ ଯମଜଠାରେ ରହିଥିଲେ ଅନ୍ୟ ଯମଜଠାରେ ପ୍ରକାଶ ପାଇବାର ୮୫ ପ୍ରତିଶତ ସମ୍ଭାବନା ରହିଛି । ଅନ୍ୟ ପକ୍ଷରେ ଭାତୃରୂପୀ ଯମଜମାନଙ୍କଠାରେ ଏପରି ସମ୍ଭାବନା ମାତ୍ର ୧୫ ପ୍ରତିଶତ ।

ଅନ୍ୟ ପକ୍ଷରେ ଯମଜ ଅନୁଧ୍ୟାନରୁ ସ୍ପଷ୍ଟ ଦେଖାଯାଇଛି ଯେ ଶୃଙ୍ଖଳାବୋଧ ଏବଂ ଲକ୍ଷ୍ୟସାଧନ କରିବାର ମନୋଭାବ (Acheivement Orientation) ପରି ବହୁ ବ୍ୟକ୍ତିତ୍ୱ ବିଭିନ୍ନ ପରିବେଶ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ପରିବେଶର ଦୁଃସ୍ଥତା ଦୟନୀୟ ସମ୍ଭାବନା ଆଣିବା ସ୍ଥଳେ ସୁସ୍ଥ ଓ ସମ୍ଭାବନାପୂର୍ଣ୍ଣ ପରିବେଶ ପିଲାମାନଙ୍କୁ ଉଚ୍ଚତର ଲକ୍ଷ୍ୟ ଓ ବ୍ୟକ୍ତିତ୍ୱ ଲାଭର ସହାୟକ ହୁଏ । ଏ ଦୃଷ୍ଟିରୁ ଅନ୍ୟାନ୍ୟ ପିଲାଙ୍କ ପରି ଯମଜ ପିଲାମାନଙ୍କ ପ୍ରତି ଗତାନୁଗତିକ ଓ ନିମ୍ନମୁଖୀ ବିଶ୍ଳେଷଣ ପ୍ରୟୋଗ ନ କରି ସେମାନଙ୍କର ସ୍ୱତନ୍ତ୍ର ଚାହିଦା ପୂରଣ ଦିଗରେ ଯତ୍ନଶୀଳ ହେବାକୁ ପଡ଼ିବ । ଅଧିକନ୍ତୁ ସମ୍ବଳପୂର୍ଣ୍ଣ ପରିବେଶର ସୁଯୋଗ ନେଇ ସେମାନଙ୍କର ବିକାଶର ଧାରାକୁ ଋଦ୍ଧିମନ୍ତ କରିବାକୁ ହେବ ।



# ପୋଷ୍ୟସନ୍ତାନର ଆତ୍ମପରିଚିତି

ଆଧୁନିକ ଯୁଗରେ ସାମାଜିକ ଦୃଷ୍ଟିଭଙ୍ଗୀର ଯଥେଷ୍ଟ ପରିବର୍ତ୍ତନ ଘଟିଛି । ଉପେକ୍ଷିତ ନବଜନ୍ମିତ ଶିଶୁ ଓ ଅନାଥାଶ୍ରମରେ ପ୍ରତିପାଳିତ ଶିଶୁମାନଙ୍କୁ ଗ୍ରହଣ କରି ନିଜର ପରିବାର ମଧ୍ୟରେ ଲାଳନପାଳନ କରିବାର ଉଦାରତା ବୃଦ୍ଧିପାଇଛି । ବେଳେବେଳେ ଅସହାୟ ପିତାମାତା ନିଜର ସନ୍ତାନର ଭବିଷ୍ୟତକୁ ସୁଖମୟ କରିବା ପାଇଁ ଅନ୍ୟ ହାତରେ ପୋଷ୍ୟସନ୍ତାନ ରୂପରେ ନିଜର ପୁତ୍ର କନ୍ୟାକୁ ସମର୍ପି ଦେଉଛନ୍ତି । ମହାବାତ୍ୟା ପରି ପ୍ରାକୃତିକ ଦୁର୍ବିପାକରେ ପିତାମାତାକୁ ହରାଇଥିବା ଶିଶୁମାନଙ୍କୁ ପୋଷ୍ୟସନ୍ତାନ ରୂପେ ଗ୍ରହଣ କରିନେବାର ସମ୍ବେଦନଶୀଳ ସହାନୁଭୂତି ପ୍ରକାଶ ପାଉଛି । ପୋଷ୍ୟସନ୍ତାନ ଗ୍ରହଣ କରିଥିବା ପିତାମାତା ଶିଶୁକୁ ସୁଖସ୍ୱାଚ୍ଛନ୍ଦ୍ୟ ସାଧ୍ୟ ଅନୁସାରେ ଯୋଗାଇ ଦେଲେ ମଧ୍ୟ କେତେକ ସମନ୍ୱୟଶୀଳତାର ପରିସ୍ଥିତି ଉପୁଜିବା ଏକ ସ୍ୱଭାବିକ ପ୍ରକ୍ରିୟା ।

ମନୁଷ୍ୟ ସ୍ୱଭାବତଃ କୌତୁହଳୀ । ମନରେ କୌତୁହଳପୂର୍ଣ୍ଣ ପ୍ରଶ୍ନସବୁ ଅଙ୍କୁରିତ ଓ ପ୍ରସାରିତ ହେବା ସ୍ୱଭାବିକ । ପୋଷ୍ୟସନ୍ତାନ ଶୀଘ୍ର କିମ୍ବା ବିଳମ୍ବରେ ହେଲେ ମଧ୍ୟ ନିଜର ପୋଷ୍ୟ ସ୍ଥିତି ସମ୍ପର୍କରେ ସୂଚନା ପାଏ । ହୁଏତ ଅପ୍ରତ୍ୟାଶିତ ଭାବରେ ଲୋକମାନଙ୍କ ଗୁଜବ ରଚନା ପରିପ୍ରେକ୍ଷୀରେ ସେ ଏପରି ସମ୍ବାଦର ସମ୍ମୁଖୀନ ହୋଇ ହତବାକ୍ ହୁଏ । ଅନ୍ୟ ପକ୍ଷରେ ପିତାମାତା ସତ୍ୟ ପ୍ରକାଶ କରିବାକୁ ଯାଇ ତା'ର ଜନ୍ମ-ଇତିହାସ କହିଥାନ୍ତି । ଏ କ୍ଷେତ୍ରରେ ମଧ୍ୟ ସନ୍ତାନଟିର ମାନସିକ ଦୋଳନ ସୃଷ୍ଟି ହେବା ସ୍ୱଭାବିକ ।

ପ୍ରଥମ ପ୍ରଶ୍ନ ହେଉଛି—କେଉଁ ବୟସର ପୋଷ୍ୟସନ୍ତାନର ପାଳନକର୍ତ୍ତା ତା'ର ପ୍ରକୃତ ସ୍ଥିତି ସମ୍ପର୍କରେ ସୂଚନା ଦେବେ ? ଅନେକଙ୍କ ମତରେ କୈଶୋର କାଳ ଏ କାର୍ଯ୍ୟପାଇଁ ପ୍ରକୃଷ୍ଟ ସମୟ । ଏ ଅବସ୍ଥାରେ କିଶୋର କିଶୋରୀମାନେ ନିଜର ଆବେଗ ଓ ଅନୁଭବକୁ ବୁଝିବାର ଦକ୍ଷତା ହାସଲ କରିଥାନ୍ତି । ସୁତରାଂ ଏ ସୋପନରେ ପାଳନକର୍ତ୍ତା ପ୍ରକୃତ ସତ୍ୟର ସୂଚନା ଦେଲାପରେ ପୋଷ୍ୟସନ୍ତାନ କିଛି ମାତ୍ରାରେ ଆଲୋଡ଼ନ ଅନୁଭବ କଲେ ମଧ୍ୟ ଅବସ୍ଥା ସମ୍ଭାଳି ନିଅନ୍ତି । ଭାରସାମ୍ୟ ରକ୍ଷା କରିବାରେ ବିଶେଷ ଅସୁବିଧା ହୁଏନାହିଁ ।

ଏପରି ଯୁକ୍ତି ଗ୍ରହଣୀୟ ମନେ ହେଲେ ମଧ୍ୟ ଏଥିରେ ଗୋଟିଏ ଜଟିଳତା ରହିଛି । ଅନେକ ସମୟରେ ପିଲାଟି ଅନ୍ୟ ମୁହଁରୁ ନିଜ ପୋଷ୍ୟସ୍ଥିତି ସମ୍ପର୍କରେ ଶୁଣିବାର ସମ୍ଭାବନା ଅଧିକ । ବିଶେଷତଃ ଏପରିସବୁ କଥା ତୁନିତୁନି ହୋଇ ନହିବାର

ମୂଳତଃ ଦୁଃସ୍ଥ ପରିବେଶର ପରିବର୍ତ୍ତନ ଘଟାଇ ଏହାକୁ ସୁସ୍ଥ ପରିବେଶରେ ରୂପାନ୍ତର କରିବା ଉଦ୍ୟମ ଅବ୍ୟାହତ ରଖିବା ନିଶ୍ଚିତ ଭାବରେ ଗ୍ରହଣୀୟ । ମାତ୍ର ଦୁଃସ୍ଥ ପରିବେଶ ମଧ୍ୟରେ ଯେ ପ୍ରତିଭାଶାଳୀ ଦକ୍ଷତା ସମ୍ପନ୍ନ ବ୍ୟକ୍ତିର ଉନ୍ମେଷ ଓ କ୍ରମବିକାଶ ଘଟିପାରେ ଏହାର ସମ୍ଭାବନକୁ ଏଡ଼ାଇ ଦିଆଯାଇ ପାରିବ ନାହିଁ । ଏପରି ପ୍ରତିକୂଳ ପିଲାମାନଙ୍କର ସ୍ୱତନ୍ତ୍ର ପ୍ରକାର ସମନ୍ୱୟ କୌଶଳ ଲକ୍ଷ୍ୟ କରାଯାଇ ଯେଉଁସବୁ ତଥ୍ୟ ସଂଗ୍ରହ କରାଯାଇଛି ସେଥିରୁ ସମ୍ବେଦନଶୀଳ ବ୍ୟକ୍ତିର ଭୂମିକା ତାତ୍ପର୍ଯ୍ୟପୂର୍ଣ୍ଣ । ସୁତରାଂ ଦୁଃସ୍ଥ ପରିବେଶରୁ ଆସୁଥିବା ପିଲାମାନେ କିପରି ଏକ ସମ୍ବେଦନଶୀଳ ପରିସର ସମ୍ପର୍କରେ ଆସିବେ ସେ ଦିଗରେ ସଚେତନଶୀଳତା ଏପରି ଶିଶୁମାନଙ୍କର ବିକାଶକୁ ତ୍ୱରାନ୍ୱିତ କରିବ । ଏହାର ଉପଲବ୍ଧି ଓ ଏ ଦିଗରେ କାର୍ଯ୍ୟକରଣ ଏକ ମାନବନିଷ୍ଠ ଯୋଜନା ।

**କେଉଁ ବାଟରେ ଯିବେ ?**

୧. ଶିଶୁ ମନରେ ଭାବନା ଦିଅନ୍ତୁ ଯେ, ଦରକାର ପଡ଼ିଲେ ସେ ଆପଣଙ୍କ ସାହାଯ୍ୟ ପାଇବ ।

୨. ଶିଶୁର ନିଜସ୍ୱ ଦକ୍ଷତା ଅଛି, ଏପରି ଭାବନା ଦିଅନ୍ତୁ ।

୩. ଶିଶୁ ନିଜର ସମସ୍ୟା ସମାଧାନ କରିପାରିବ, ଏପରି ପ୍ରତ୍ୟୟ ଦିଅନ୍ତୁ ।



# ସଫଳକାମୀ ଶିଶୁ

ସାଧନାର ପଥ ସଦାସର୍ବଦା କଷ୍ଟକର । ତଥାପି ଏହି ପଥକୁ ଅତିକ୍ରମ କରି କେତେକ ସାଧନାରେ ସଫଳତା ଲାଭ କରନ୍ତି । ସଫଳତା ପାଇଁ ଆବଶ୍ୟକ ନିଷ୍ଠା, ଧୈର୍ଯ୍ୟ ଓ ପରିଶ୍ରମ ସମସ୍ତଙ୍କର ସମାନ ପରିମାଣରେ ନ ଥାଏ । ଯେଉଁମାନେ ଗଭୀର ମନନଶୀଳତା ସହିତ କଠୋର ପରିଶ୍ରମ କରି କାର୍ଯ୍ୟ ସାଧନରେ ବ୍ରତୀ ହୁଅନ୍ତି ସେମାନେ ପରିଶେଷରେ ଯଶସ୍ୱୀ ହୁଅନ୍ତି । ପୁଣି କେତେକ ବ୍ୟକ୍ତି ସେମାନଙ୍କ ବାଲ୍ୟକାଳରେ ଏପରି ଅଦମ୍ୟ ନିଷ୍ଠାର ପରିଚୟ ଦେଇ ଥାଆନ୍ତି । ଏମାନଙ୍କୁ ସଫଳକାମୀ ଶିଶୁ କୁହାଯାଏ, କାରଣ ଏକ ନିର୍ଦ୍ଦିଷ୍ଟ ସଫଳତା ଉପରେ ଲକ୍ଷ ରଖି ଏପରି ଶିଶୁମାନେ ନିଜର କର୍ମ ଯୋଜନା କରନ୍ତି ।

ପ୍ରତ୍ୟେକ ଗୋଷ୍ଠୀ ଓ ପ୍ରତ୍ୟେକ ଅଭିଭାବକ ସଫଳକାମୀ ଶିଶୁ ଗଠନରେ ଆଶାୟୀ ହେବା ସ୍ୱାଭାବିକ । ତଥାପି ସଫଳକାମୀ ଶିଶୁର ଗଠନ ସହଜ ନୁହେଁ । ଶିଶୁମାନେ ବହୁ ପ୍ରକାର ପାରିପାର୍ଶ୍ୱିକ ଅବସ୍ଥା ଦେଇ ଗତି କରନ୍ତି ଏବଂ ପରିବେଷ୍ଟନୀର ଚାପ ସେମାନଙ୍କ ମନୋଭାବକୁ ବହୁ ପରିମାଣରେ ପ୍ରଭାବିତ କରେ । ଏ ପରିପ୍ରେକ୍ଷୀରେ ନିଜର ମନ ମୁତାବକ ଶିଶୁମାନଙ୍କର ମାନସିକ ବିକାଶ ଘଟାଇବା କଷ୍ଟକର । ତଥାପି ଏ ଦିଗରେ କେତୋଟି ନିର୍ଦ୍ଦିଷ୍ଟ ପନ୍ଥା ଗ୍ରହଣ କରାଯାଇପାରେ । ମନୋବିଜ୍ଞାନୀମାନେ ସଫଳକାମୀ ଶିଶୁର ଚିହ୍ନଟ ଓ ବୈଶିଷ୍ଟ୍ୟ ଉପରେ କେତେକ ମୂଲ୍ୟବାନ ତଥ୍ୟ ଯୋଗାଇଛନ୍ତି । ବିଶେଷକରି ସଫଳକାମୀ ଶିଶୁମାନଙ୍କର ପିତାମାତା ସେମାନଙ୍କୁ କିପରି ଲାଳନପାଳନ କରନ୍ତି ସେ ବିଷୟରେ ବହୁ ପର୍ଯ୍ୟବେକ୍ଷଣ ଓ ପରୀକ୍ଷା ନିରୀକ୍ଷା କରିଛନ୍ତି । ସେ ସମସ୍ତ ଗବେଷଣା ଲବ୍ଧ ତଥ୍ୟ ପ୍ରତ୍ୟେକ ଅଭିଭାବକଙ୍କ ପାଇଁ ବେଶ୍ ଉପାଦେୟ ।

ସ୍ୱାଧୀନ ମନୋଭାବ ପାଇଁ ଶିକ୍ଷା :

ସଫଳକାମୀ ଶିଶୁମାନଙ୍କର ପିତାମାତା ଓ ସାଧାରଣ ଶିଶୁମାନଙ୍କର ପିତାମାତାଙ୍କ ମଧ୍ୟରେ ତୁଳନା କରାଯାଇ ଦେଖାଯାଇଛି ଯେ ସଫଳକାମୀ ଶିଶୁମାନଙ୍କର ପିତାମାତା ସେମାନଙ୍କ ସନ୍ତାନସନ୍ତତିଙ୍କଠାରେ ସ୍ୱାଧୀନ ମନୋଭାବକୁ ଉତ୍ସାହ ଦିଅନ୍ତି । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ, ସଫଳକାମୀ ଶିଶୁମାନଙ୍କର ମାତା ସେମାନଙ୍କୁ ଖୁବ୍ ଅଳ୍ପ ବୟସରେ ବେଶ୍ କିଛି କାମ କରିବାକୁ ସୁଯୋଗ ଦିଅନ୍ତି । ଏପରି କାର୍ଯ୍ୟରେ କେତେକ କ୍ଷତିର ସମ୍ଭାବନା ମଧ୍ୟ ଥାଇପାରେ । ଗବେଷକମାନେ ଏପରି କେତେକ ପ୍ରଶ୍ନ ପଚାରି ପାରନ୍ତି ।

ଯଥା—ପୁଅ ବା ଝିଅର କେତେ ବର୍ଷବେଳେ ତୁମେ ତାକୁ ଏକୁଟିଆ ସ୍କୁଲକୁ ଯିବାପାଇଁ ଅନୁମତି ଦିଅ ? କେଉଁ ବୟସରେ ଏକୁଟିଆ ରାସ୍ତା ପାରି ହେବାକୁ ଛାଡ଼ ? କେଉଁ ବୟସରେ କଇଁଚିରେ ଖେଳିବାକୁ ବାଧା ଦିଅ ନାହିଁ ।

ଏ କ୍ଷେତ୍ରରେ ଦେଖାଯାଏ ଯେ ସଫଳକାମୀ ଶିଶୁମାନଙ୍କର ମାଆମାନେ ସେମାନଙ୍କ ସନ୍ତାନସନ୍ତତିମାନଙ୍କୁ ଅପେକ୍ଷାକୃତ ଅଳ୍ପ ବୟସରେ ଉପର ବର୍ଣ୍ଣିତ କାମକରି ଅନ୍ୟ କାମ ସବୁ କରିବାକୁ ସୁଯୋଗ ଦିଅନ୍ତି । କେବଳ ସେତିକି ନୁହେଁ, ସଫଳକାମୀ ଶିଶୁମାନଙ୍କର ପିତାମାତା ଅତ୍ୟଧିକ ବାଧା ସୃଷ୍ଟି ନ କରି ଶିଶୁମାନଙ୍କୁ ଉତ୍ସାହ ଦିଅନ୍ତି ସ୍ୱାଧୀନ ଭାବରେ କାମଟି କରିବା ପାଇଁ । ଶିଶୁଟି ଗୋଟିଏ ସମସ୍ୟା ସମାଧାନ କରୁଥିବାବେଳେ, ପ୍ରତି ପଦକ୍ଷେପରେ ଏଇଟି କର, ସେଇଟି କର, ଏପରି ଅଯଥା ହସ୍ତକ୍ଷେପ ନ କରି ଅଳ୍ପ କେତେକ ମୂଲ୍ୟବାନ ପରାମର୍ଶ ଦିଅନ୍ତି । ପ୍ରକାରାନ୍ତରେ କହିଲେ, ବାରମ୍ବାର ନିର୍ଦ୍ଦେଶ ଓ ହସ୍ତକ୍ଷେପ ଫଳରେ ପିଲାର ସ୍ୱାଧୀନ ମନୋବୃତ୍ତି ନଷ୍ଟ କରି ତା' ସ୍ଥାନରେ ନିର୍ଭରଶୀଳତା ସୃଷ୍ଟି କରେ । ଏହା ଶିଶୁର ସଫଳକାମୀ ଉଦ୍ୟମକୁ ମଧ୍ୟ ନଷ୍ଟ କରେ ।

**ଉଚ୍ଚାକାଂକ୍ଷା ପ୍ରଦର୍ଶନ :**

ସଫଳକାମୀ ଶିଶୁମାନଙ୍କର ପିତାମାତା ସାଧାରଣ ଉଚ୍ଚାକାଂକ୍ଷା ପ୍ରଦର୍ଶନ କରି ଥାଆନ୍ତି । ସେମାନଙ୍କ ଉଚ୍ଚ ଅଭିଳାଷ ପୋଷଣ ଏ ଦିଗରେ କାମ କରେ । ଫଳରେ ଶିଶୁ ପାଖରେ ସେମାନେ ସଦାସର୍ବଦା ଉଚ୍ଚମାନଦଣ୍ଡ ଉପସ୍ଥାପିତ କରନ୍ତି ଏବଂ ସେମାନଙ୍କର ଉଚ୍ଚ ପ୍ରତ୍ୟାଶା ଜଣାଇ ଦିଅନ୍ତି । ଏହାର ଅର୍ଥ ନୁହେଁ ଯେ, ବାସ୍ତବତାକୁ ପୁରାପୂରି ବଳିଦେଇ ସେମାନେ ଶିଶୁକୁ ନିଜର ଅତି ଉଚ୍ଚାଶା ଜଣାଇବାର କଥା । ଗବେଷଣାରୁ ଦେଖାଯାଇଛି ଯେ, ସଫଳକାମୀ ଶିଶୁମାନଙ୍କର ମାତା ତାଙ୍କର ସନ୍ତାନସନ୍ତତିମାନଙ୍କୁ ବୀରତ୍ୱର କାହାଣୀ, ସଫଳତାର କାହାଣୀ ଶୁଣାଇ ସେମାନଙ୍କଠାରୁ ଉତ୍କର୍ଷ ଆଶା କରନ୍ତି । ଶିଶୁ ଉଚ୍ଚମାନଦଣ୍ଡ ସହ ପରିଚିତ ହେଲାପରେ ହିଁ ନିଜ ପାଇଁ ଉଚ୍ଚ କଳ୍ପନା ଓ ଉଚ୍ଚ ଅଭିଳାଷ ପୋଷଣ କରିବା ସମ୍ଭବ ହୁଏ ।

ସ୍ଥୂଳତଃ, ଶିଶୁ ମନରେ ଏକ ସ୍ୱଚ୍ଛ ଧାରଣା ହେବା ଉଚିତ ଯେ ନିଷ୍ଠା, ଧୈର୍ଯ୍ୟ ଓ ପରିଶ୍ରମ ଦ୍ୱାରା ବହୁ ଆକାଂକ୍ଷାର ସଫଳତା ଆସେ । ନିଜ ମନରେ ଯେଉଁ ଉଚ୍ଚ ଭାବନା ଆସିଥାଏ ପିତାମାତାଙ୍କର ସେ ଦିଗରେ କେତେକ ପ୍ରଯତ୍ନ ଥାଏ । ମହାପୁରୁଷମାନଙ୍କର ଜୀବନୀ, ଦୁଃସାହସିକ କାର୍ଯ୍ୟକଳାପର ସବିଶେଷ ବିବରଣୀ ଓ ଶିଶୁଟିର ଆଦର୍ଶ ସ୍ଥାନୀୟ ସାଙ୍ଗସାଥୀମାନଙ୍କର କୃତିତ୍ୱର ବର୍ଣ୍ଣନା ଶିଶୁମନରେ ଉଚ୍ଚାକାଂକ୍ଷା ସୃଷ୍ଟିରେ ସହାୟକ ହୁଏ ।

**ଆନ୍ତରିକତା ପ୍ରକାଶ :**



(ସଫଳତାର ଅଙ୍କୁରୋଦ୍‌ଗମ)

ପିତାମାତା ଶିଶୁଠାରୁ କେବଳ ଉଚ୍ଚପ୍ରତ୍ୟାଶା ରଖିଲେ ଯଥେଷ୍ଟ ହେବ ନାହିଁ । ଶିଶୁଟି କୌଣସି ସମୟରେ ପିତାମାତାଙ୍କର ଆଶା ପୂରଣ କରୁଥିଲେ ପିତାମାତା ଶିଶୁଟିକୁ ଉତ୍ସାହ ଦେବା ସଙ୍ଗେ ସଙ୍ଗେ ନିଜର ଆନନ୍ଦ ପ୍ରକାଶ କରିବା ଉଚିତ । ଗୋଟିଏ ଉଦାହରଣ ଦେଇ ଏହାକୁ ସ୍ପଷ୍ଟ କରାଯାଇପାରେ । ମନେ କରାଯାଉ କୌଣସି ଏକ ଶିଶୁ ଭବିଷ୍ୟତରେ ଜଣେ ବୈଜ୍ଞାନିକ ହେବାପାଇଁ ଚେଷ୍ଟା କରୁଛି । ଏପରି ସ୍ଥଳେ ଶିଶୁଟିର ଛୋଟ ଛୋଟ କୃତିତ୍ୱକୁ ପିତାମାତା ଗ୍ରହଣ କରି ତାକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ତା ନିକଟରେ ଆନନ୍ଦ ପ୍ରକାଶ କରିବା ଉଚିତ । ସ୍କୁଲରୁ ଫେରି ଶିଶୁଟି ଯଦି କହେ ଯେ, ସେ ଗଣିତ ଓ ବିଜ୍ଞାନରେ ଶ୍ରେଣୀର ସର୍ବୋଚ୍ଚ ନମ୍ବର ପାଇଛି, ତେବେ ପିତାମାତା ସେମାନଙ୍କର ଖୁସି ଦେଖାଇବା ଉଚିତ ।

ସଫଳକାମୀ ଶିଶୁମାନଙ୍କର ପିତାମାତାଙ୍କ ବ୍ୟବହାର ଅନୁଧ୍ୟାନ କରାଯାଇ ଦେଖାଯାଇଛି ଯେ ଏହି ପିତାମାତାମାନେ ସଫଳକାମୀ ଶିଶୁ ନିକଟରେ ସେମାନଙ୍କର ଆନନ୍ଦ ପ୍ରକାଶ୍ୟ ଭାବରେ ବ୍ୟକ୍ତ କରନ୍ତି । ଆଲିଙ୍ଗନ କରି, ଶିଶୁଟି ସହିତ ଖେଳାବୁଲା କରି ଏବଂ ଶିଶୁଟିକୁ ପୁରସ୍କାର ଦେଇ ନିଜର ଆନ୍ତରିକତା ପ୍ରକାଶ କରନ୍ତି । ମୋଟ ଉପରେ ଶିଶୁଟିର ହୃଦ୍‌ବୋଧ ହେବା ଉଚିତ୍ ଯେ, ସେ ନିଜର ଭଲକାମ ପାଇଁ ପୁରସ୍କାର ପାଉଛି । ଏହାର ଅର୍ଥ ନୁହେଁ ଯେ ଶିଶୁର କୃତିତ୍ୱ ପାଇଁ ବାପ ମା’ ମାତ୍ରାଧିକ ପୁରସ୍କାର ଦେବେ । ଅତି ବେଶୀ ପୁରସ୍କାର ଶିଶୁର କ୍ଷତି କରିପାରେ । ସେହିପରି କିଛି ପୁରସ୍କାର ନ ଦେବା ଓ ତିରସ୍କାର କରିବା ମଧ୍ୟ

କ୍ଷତିକାରକ । କାମ ଦେଖି ପୁରସ୍କାର ଦେବା ଓ ଆନନ୍ଦ ପ୍ରକାଶ କରିବା ଶିଶୁର ସଫଳକାମୀ ମନୋଭାବକୁ ଦୃଢ଼ କରେ ।

ସ୍ଥୂଳତଃ, ସଫଳକାମୀ ଶିଶୁ ସଫଳତା ନେଇ ଜନ୍ମ ହୋଇ ନଥାଏ । ଉପଯୁକ୍ତ ଶିକ୍ଷା ଓ ଅନୁକୂଳ ପରିବେଷ୍ଟନୀ ମଧ୍ୟରେ ତାର ସଫଳକାମୀ ମନୋବୃତ୍ତିର ବିକାଶ ଘଟେ, ଉପଯୁକ୍ତ ଶିକ୍ଷାର ଏକ ବିଶିଷ୍ଟ ଅଂଶ ହେଉଛି ପିତାମାତାଙ୍କ ଲାଳନ ପାଳନ ଭଙ୍ଗୀ । ଉପର ବର୍ଣ୍ଣିତ ତଥ୍ୟାନୁସାରେ ଲାଳନ ପାଳନ ଦାୟିତ୍ୱ ଶିଶୁର ବିକାଶ ଦିଗରେ ଯଥେଷ୍ଟ ସହାୟକ ହୋଇଥାଏ ।

## କେଉଁ ବାଟରେ ଯିବେ ?

୧. ଶିଶୁକୁ ସଫଳକାମୀ କରିବାକୁ ହେଲେ ଆପଣ ନିଜର ଖୁସି, ପ୍ରଶଂସା ଓ ଅନୁମୋଦନ ପ୍ରକାଶ୍ୟ ଭାବରେ ବ୍ୟକ୍ତ କରନ୍ତୁ । ଆପଣଙ୍କ ମନୋଭାବ ଓ ପ୍ରଶଂସା କେବଳ ଅନ୍ତର୍ନିହିତ ନ ହୋଇ ଆପଣଙ୍କ ଆଦର (ଯଥା–କାଖେଇବା, କୋଳେଇବା ଇତ୍ୟାଦି) ବ୍ୟବହାର ମାଧମରେ ସ୍ପଷ୍ଟ ରୂପେ ପ୍ରକାଶ ପାଇବା ଆବଶ୍ୟକ ।

୨. ଆପଣ ଶିଶୁଠାରୁ ଉଚ୍ଚ ଧରଣର ପ୍ରତ୍ୟାଶା ଗଠନ କରନ୍ତୁ ।

୩. ସଫଳତାର ଉଚ୍ଚମାନଦଣ୍ଡ ବୁଝାଇବା ପାଇଁ ବିଭିନ୍ନ ଜନନାୟକ (Role models) ଏବଂ ସଫଳକାମୀ ବ୍ୟକ୍ତିମାନଙ୍କର ଜୀବନୀ ଶିଶୁମାନଙ୍କୁ ଶୁଣାନ୍ତୁ ।



# ଅନନ୍ୟ ସାଧାରଣ ଶିଶୁ ଓ ତାର ଶିକ୍ଷା ବ୍ୟବସ୍ଥା

ପଞ୍ଚମ ଷଷ୍ଠ ଶ୍ରେଣୀରେ ପଢୁଥିବା ପିଲାଟି ବଡ଼ ବଡ଼ ହିସାବ କରିଦେଉଥିବାର ଦେଖିଲେ, ଆମେ ବିସ୍ମିତ ହେବା ସ୍ୱାଭାବିକ, ମାତ୍ର ଏହା ଯେ ଯାଦୁକରର ଯାଦୁ-ପ୍ରସ୍ତୁତ ସେକଥା ନୁହେଁ । ଆମର ପାରିପାର୍ଶ୍ୱରେ କେତେକ ମୁଷ୍ଟିମେୟ ପିଲା ଅଛନ୍ତି, ଯେଉଁମାନଙ୍କ ବୁଦ୍ଧିମତ୍ତା ଅସାଧାରଣ, କାର୍ଯ୍ୟଦକ୍ଷତା ଅନନ୍ୟ ସାଧାରଣ ଏବଂ ଚିନ୍ତାଧାରା ଗତାନୁଗତିକତାରୁ ମୁକ୍ତ । ଏପରି ପିଲାମାନେ ନିଜର କଥା, କାର୍ଯ୍ୟ ଓ ଶିକ୍ଷାଗ୍ରହଣରେ ଯେଉଁ ପ୍ରତିଭାର ସୂଚନା ଦିଅନ୍ତି, ତାହା ସାଧାରଣ ପିଲାଙ୍କଠାରୁ ସଂପୂର୍ଣ୍ଣ ଭିନ୍ନ । ଏପରି ପିଲାମାନେ ଶିକ୍ଷା ଦୀକ୍ଷା ଓ ପରିଚାଳନା କ୍ଷେତ୍ରରେ ଅଭିଭାବକ, ଶିକ୍ଷାନୁଷ୍ଠାନ ତଥା ସମାଜର ଯେ ଏକ ଗୁରୁଦାୟିତ୍ୱ ରହିଛି, ଏଥିରେ ସନ୍ଦେହ ନାହିଁ । ଅନନ୍ୟ ସାଧାରଣ ଶିଶୁମାନଙ୍କ ପାଇଁ ଉପଯୋଗୀ ଶିକ୍ଷା ବ୍ୟବସ୍ଥା କରା ନ ଗଲେ, ସମାଜ କେବଳ ସେମାନଙ୍କର ଭବିଷ୍ୟତ ଦାନରୁ ବଞ୍ଚିତ ହୁଏ ନାହିଁ, ଅନ୍ୟ ଗୋଟିଏ ସମସ୍ୟା ମଧ୍ୟ ସୃଷ୍ଟି ହୁଏ । ବହୁଦେଶରେ ଗବେଷଣାରୁ ଦେଖାଯାଇଛି ଯେ, ସାଧାରଣ ଜନବସତିରେ ଆତ୍ମହତ୍ୟାର ଶତାଙ୍କ ଯାହା, ଅନନ୍ୟ ସାଧାରଣ ପିଲା ଓ ବ୍ୟକ୍ତିଙ୍କ ମଧ୍ୟରେ ଆତ୍ମହତ୍ୟାର ଶତକଡ଼ା ହାର ତା'ଠାରୁ ଯଥେଷ୍ଟ ଅଧିକ । ଏପରି କ୍ଷତିର ସମ୍ଭାବନା ଥିବା ସ୍ଥଳେ ଅନନ୍ୟ ସାଧାରଣ ପିଲାମାନଙ୍କର ଶିକ୍ଷା ଦୀକ୍ଷାର ପରିକଳ୍ପନା ନ କରିବା ଦାୟିତ୍ୱହୀନତାର ପରିଚାୟକ ।



(ଅନନ୍ୟତାର ଆକର୍ଷଣ)

ଅନନ୍ୟ ସାଧାରଣ ପିଲାମାନଙ୍କୁ ଚିହ୍ନଟ କରିବା ସହଜ ନ ହେଲେହେଁ ଅତି ବେଶି କଷ୍ଟ ନୁହେଁ । ସେମାନଙ୍କର କଥାବାର୍ତ୍ତା, କାର୍ଯ୍ୟକଳାପ ତଥା ଆଗ୍ରହ ପ୍ରକାଶରେ ଅସାଧାରଣର ପରିଚୟ ମିଳେ । ଏମାନଙ୍କ ବୁଦ୍ଧି ସ୍ତର ଖୁବ୍ ବେଶି । ମନୋବିଜ୍ଞାନୀମାନେ ବ୍ୟବହାର କରୁଥିବା ବୁଦ୍ଧିମାପକରେ ଏମାନଙ୍କ ବୁଦ୍ଧି ମାପିଲେ ଖୁବ୍ ଉଚ୍ଚ ବୁଦ୍ଧିମତ୍ତାର ପରିଚୟ ମିଳେ । ଜନବସତିରେ ହାରାହାରି ବୁଦ୍ଧିର ସ୍ତର ୧୦୦ ବୁଦ୍ଧିଅଙ୍କ ହେବା ସ୍ଥଳେ ଏପରି ଅନନ୍ୟ ସାଧାରଣ ଶିଶୁମାନଙ୍କର ବୁଦ୍ଧିଅଙ୍କ ୧୪୦ ରୁ ୧୮୦ ପର୍ଯ୍ୟନ୍ତ ହୋଇପାରେ । ଏମାନଙ୍କୁ ଚିହ୍ନଟ କଲା ପରେ ଯେଉଁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟଟି ବିଚାରକୁ ଆସେ ତା' ହେଉଛି ଏମାନଙ୍କର ପରିଚାଳନା ଓ ଶିକ୍ଷାଦୀକ୍ଷାର ଦାୟିତ୍ୱ । ଅନନ୍ୟ ସାଧାରଣ ଶିଶୁମାନଙ୍କର ଶିକ୍ଷାଦୀକ୍ଷା ପାଇଁ ତିନୋଟି ମାର୍ଗ ରହିଛି ।

**ତ୍ୱରାନ୍ୱିତକରଣ :**

ଅନନ୍ୟ ସାଧାରଣ ଶିଶୁର ଶିକ୍ଷା ବ୍ୟବସ୍ଥାର ତ୍ୱରାନ୍ୱିତକରଣ ଏକ ବିଶିଷ୍ଟ ପର୍ଯ୍ୟାୟ । ସାଧାରଣ ପିଲାଙ୍କ ତୁଳନାରେ ଅଳ୍ପ ବୟସରୁ ଏପରି ପିଲାକୁ ସ୍କୁଲରେ ଭର୍ତ୍ତି କରାଇବା ଏବଂ ପ୍ରଚଳିତ ଶିକ୍ଷାବ୍ୟବସ୍ଥା ମଧ୍ୟରେ ଶୀଘ୍ର ଶୀଘ୍ର ତାକୁ ଗତି କରାଇବା ଏ ଯୋଜନାର ମୌଳିକ ଦିଗ । ଖୁବ ଛୋଟବେଳେ ତାକୁ ନର୍ସରୀ ବା ପ୍ରାକ୍ ବିଦ୍ୟାଳୟରେ ଭର୍ତ୍ତି କରାଇବା ଏବଂ ଦରକାର ବେଳେ କେତେକ ଶ୍ରେଣୀକୁ ବାଦ୍‌ଦେଇ ଉପରଶ୍ରେଣୀକୁ ଉଠାଇଦେବା କାର୍ଯ୍ୟକାରୀ କରାଯାଇପାରେ । ଏହା କରା ନ ଗଲେ ଅନନ୍ୟ ସାଧାରଣ ଶିଶୁର ଆଗ୍ରହ ବ୍ୟାହତ ହୁଏ । କାରଣ ଯେ କୌଣସି ଶ୍ରେଣୀର ଶିକ୍ଷକର ଶିକ୍ଷାଦାନ ସାଧାରଣ ଛାତ୍ରକୁ ଭିତ୍ତି କରି ହୋଇଥାଏ । ଫଳରେ ଅନନ୍ୟ ସାଧାରଣ ଶିଶୁ ସେ ବ୍ୟବସ୍ଥାରେ କୌଣସି ଆହ୍ୱାନର ସମ୍ମୁଖୀନ ନ ହୋଇ ଆଗ୍ରହ ହରାଇ ବସେ । କିମ୍ବା ବିରକ୍ତିକର ପରିବେଶର ଶରବ୍ୟ ହୁଏ । ଆମ ଦେଶରେ ଏପରି ତ୍ୱରାନ୍ୱିତକରଣ ବ୍ୟବସ୍ଥା ଖୁବ୍ କମ୍ । କୌଣସି ଛାତ୍ରକୁ ଏକାବେଳକେ ଦୁଇଟି ପ୍ରମୋଶନ ଦେବାର ଦୃଷ୍ଟାନ୍ତ ଆମ ଦେଶରେ ଖୁବ କମ୍ । ଅବଶ୍ୟ ତ୍ୱରାନ୍ୱିତକରଣ ବ୍ୟବସ୍ଥାର ଏକ କୁଫଳ ରହିଛି ବୋଲି କେତେକ ସମାଲୋଚକ ଅନୁଭବ କରନ୍ତି । ଅନନ୍ୟ ସାଧାରଣ ପିଲାର ଶିକ୍ଷାବ୍ୟବସ୍ଥା ଖୁବ ଅଳ୍ପ ବୟସରୁ ଆରମ୍ଭ କଲେ ଏବଂ କେତେକ ଶ୍ରେଣୀକୁ ବାଦ୍ ଦେଲେ ଛାତ୍ରଟି ଯେଉଁ ଶ୍ରେଣୀରେ ଭର୍ତ୍ତି ହୁଏ, ସେଠାରେ ତା'ଠାରୁ ଅଧିକ ବୟସର ଛାତ୍ରମାନେ ଥାଆନ୍ତି । ଅଧିକ ବୟସର ଛାତ୍ରମାନଙ୍କ ସହିତ ସାମାଜିକ ମିଳାମିଶାରେ କେତେକ ଅସୁବିଧା ସୃଷ୍ଟି ହୋଇ ଅନନ୍ୟ ସାଧାରଣ ପିଲାର ଭାବଗତ ଓ ସାମାଜିକ ବିକାଶ ବ୍ୟାହତ ହୁଏ । ଗବେଷଣାରୁ ଦେଖାଯାଇଛି ଯେ

କେତେକ ଅନନ୍ୟ ସାଧାରଣ ପିଲାଙ୍କ ପାଇଁ ତ୍ୱରାନ୍ୱିତକରଣ କ୍ଷତିକାରକ ହେଲେହେଁ ପୁରାପୂରି ଏ ଯୋଜନା ମନ୍ଦ ନୁହେଁ । ଅବଶ୍ୟ ଶିକ୍ଷାବିତ୍‌ମାନେ ଅନ୍ୟ ଦୁଇଟି ମାର୍ଗ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ।

ପାଠ୍ୟକ୍ରମର ସମୃଦ୍ଧି :

ଏ ଯୋଜନାରେ ପ୍ରତିଭାଶାଳୀ ଛାତ୍ରକୁ ସାଧାରଣ ପିଲାଙ୍କ ପରି ତାର ବୟସ ଉପଯୋଗୀ ଶ୍ରେଣୀରେ ଭର୍ତ୍ତି କରାହେବ ଏବଂ ସାଧାରଣ ପିଲାଙ୍କ ପରି ବର୍ଷକୁ ଥରେ ପ୍ରମୋଶନ ଦିଆଯିବ । କିନ୍ତୁ ତାକୁ ଶ୍ରେଣୀର ପାଠ୍ୟକ୍ରମ ବାହାରେ ଅନ୍ୟାନ୍ୟ ଅଭିଜ୍ଞତାର ସୁଯୋଗ ଦିଆଯିବ । ସ୍ୱତନ୍ତ୍ର କାର୍ଯ୍ୟ ଅଧିକ ପଢ଼ା ଏବଂ ପାଠ୍ୟକ୍ରମ ବାହାରେ ଅନ୍ୟ ପ୍ରତିଯୋଗିତାପୂର୍ଣ୍ଣ ଅଭ୍ୟାସକୁ ଉତ୍ସାହ ଦିଆଯିବ । ବିଶେଷକରି ଶିଶୁଟି ଯେପରି ନିଜ ଉଦ୍ୟମରେ କାମ କରେ ଏବଂ ସ୍ୱାଧୀନତାର ସହିତ କାମ କରେ, ତା' ଉପରେ ଗୁରୁତ୍ୱ ଦିଆଯିବ । ଏପରି ସମୃଦ୍ଧିକରଣ ଯୋଜନାଟି ଲୋକପ୍ରିୟ ହେବାର ଏକ ମୁଖ୍ୟ କାରଣ ହେଉଛି ଯେ ସାଧାରଣ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ଶିକ୍ଷା ବ୍ୟବସ୍ଥାର ଆମୂଳଚୂଳ ପରିବର୍ତ୍ତନ ନ କରି ଏ ଯୋଜନାଟି କାର୍ଯ୍ୟକାରୀ କରାଯାଇପାରେ । ଅଧିକନ୍ତୁ ଏ ଯୋଜନାଟି ମଧ ବ୍ୟୟସାପେକ୍ଷ ନୁହେଁ ।

ବିଶ୍ୱର ବିଭିନ୍ନ ସ୍ଥାନରେ ଏ ବ୍ୟବସ୍ଥାଟିର କାର୍ଯ୍ୟକାରିତା ଲକ୍ଷ୍ୟ କରାଯାଇଛି । ପ୍ରାୟ ଦଶବର୍ଷ ତଳେ ଯୁକ୍ତରାଷ୍ଟ୍ର ଆମେରିକାର ସାନ୍‌ଫ୍ରାନ୍‌ସିସ୍କୋ ନଗରରେ ବୃହତ୍ ଆକାରରେ ଏ ଯୋଜନାଟି କାର୍ଯ୍ୟକାରୀ କରାଯାଇଥିଲା । ନଗରର ସ୍କୁଲମାନଙ୍କରେ ପଞ୍ଚମ ଶ୍ରେଣୀରେ ପଢୁଥିବା ଅନନ୍ୟ ସାଧାରଣ ପିଲାଙ୍କୁ ଚିହ୍ନଟ କରାଯିବା ପରେ ସେମାନଙ୍କୁ ନେଇ ସାନ୍‌ଫ୍ରାନ୍‌ସିସ୍କୋରେ ଥିବା ବିଭିନ୍ନ ସଂଗ୍ରହାଳୟରେ (ମ୍ୟୁଜିୟମ) ଜୁନିଅର ଗାଇଡ୍ ହିସାବରେ ରଖାଗଲା । ଏହି ଜୁନିଅର ଗାଇଡ୍‌ମାନଙ୍କର କାମ ହେଲା ସ୍ୱେଚ୍ଛାସେବୀ ରୂପେ କାମ କରିବା । ପ୍ରଥମେ ସଂଗ୍ରହାଳୟର କର୍ମକର୍ତ୍ତାମାନେ ଏହି ସ୍ୱେଚ୍ଛାସେବୀମାନଙ୍କୁ ତାଲିମ ଦେବେ । ତାଲିମ ପ୍ରାପ୍ତି ପରେ ଜୁନିଅର ଗାଇଡ୍‌ମାନେ ସଂଗ୍ରହାଳୟକୁ ଆସୁଥିବା ପରିଦର୍ଶକମାନଙ୍କୁ ବୁଲାଇ ନେଇ ବିଭିନ୍ନ କଳାତ୍ମକ ତଥା ବୈଜ୍ଞାନିକ ପରିଦର୍ଶନୀୟ ବସ୍ତୁ ଦେଖାଇବେ । ପରିଦର୍ଶନୀୟ ବସ୍ତୁ ସମ୍ପର୍କରେ କିଛି କିଛି ସୂଚନା ମଧ ଦେବେ । ଏହା ସହଜରେ ଅନୁମେୟ ଯେ ବିଜ୍ଞାନରେ ଆଗ୍ରହ ଥିବା ଛାତ୍ର ପକ୍ଷେ ବୈଜ୍ଞାନିକ ଭାବଧାରା ସମ୍ପର୍କରେ ଅଧିକ ଜ୍ଞାନଲାଭ କରିବାର ଏହା ଏକ ପ୍ରକୃଷ୍ଟ କ୍ଷେତ୍ର । ସେହିପରି କଳାପ୍ରିୟ ଛାତ୍ରର ମାନସିକ ବିକାଶ ପାଇଁ ସଂଗ୍ରହାଳୟର ପରିପ୍ରେକ୍ଷୀ ଏକ ବିଶିଷ୍ଟ ସୁଯୋଗ । ଏତଦ୍‌ବ୍ୟତୀତ ବିଭିନ୍ନ ଭାବଭଙ୍ଗୀର

ପରିଦର୍ଶକଙ୍କର ସାକ୍ଷାତ ଲାଭ କରି ଅଭିଜ୍ଞତାର ପରିସର ବୃଦ୍ଧି କରିବା, ବିଭିନ୍ନ ଧରଣର ଆହ୍ୱାନର ସମ୍ମୁଖୀନ ହେବା ଏବଂ ନେତୃତ୍ୱ ନେବାରେ ଦକ୍ଷତା ବୃଦ୍ଧି କରିବାର ସୁଯୋଗ ଏ ପରିବେଶରେ ମିଳିପାରିବ ।

ସାନ୍‌ଫ୍ରାନ୍‌ସିସ୍କୋର ଏ ଯୋଜନାର ପରବର୍ତ୍ତୀ ଅନୁଧ୍ୟାନରୁ ଜଣାଗଲା ଯେ ବହୁ ଅନନ୍ୟ ସାଧାରଣ ଛାତ୍ର ଏହାଦ୍ୱାରା ଉପକୃତ ହୋଇଛନ୍ତି । ଏହା ବିଭିନ୍ନ ରୂପରେଖ ନେଇ କାର୍ଯ୍ୟକାରୀ କରାଯାଇପାରେ । ମାତ୍ର ଏଥିରୁ ଅଧିକ ସୁଫଳ ମିଳିବା ପାଇଁ ଶିକ୍ଷକ ଓ ଶିକ୍ଷାବିତ୍‌ମାନଙ୍କୁ ଖୁବ ଅଧିକ ସମୟ ଯତ୍ନ ଓ ନିଷ୍ଠା ଦେଇ କାର୍ଯ୍ୟସୂଚୀ ପ୍ରସ୍ତୁତ କରିବାକୁ ହେବ ।

**ସ୍ୱତନ୍ତ୍ର ଗୋଷ୍ଠୀକରଣ :**

ଅନନ୍ୟ ସାଧାରଣ ଶିଶୁମାନଙ୍କର ଉପଯୋଗୀ ଶିକ୍ଷାବ୍ୟବସ୍ଥାର ଅନ୍ୟ ଏକ ପରିକଳ୍ପନା ହେଉଛି ସ୍ୱତନ୍ତ୍ର ଗୋଷ୍ଠୀକରଣ । ଅନନ୍ୟ ସାଧାରଣ ପିଲାଙ୍କୁ ଦୃଷ୍ଟିରେ ରଖି ସେମାନଙ୍କ ପାଇଁ ସ୍ୱତନ୍ତ୍ର ଶ୍ରେଣୀ ବା ଶିକ୍ଷାକ୍ରମର ବ୍ୟବସ୍ଥା କରାଯାଇପାରେ । କେତେକ ସାଧାରଣ ସ୍କୁଲରୁ ଅନନ୍ୟ ସାଧାରଣ ପିଲାଙ୍କୁ ଚିହ୍ନଟ କରି ସେମାନଙ୍କ ପାଇଁ ଉକ୍ତ ଅଞ୍ଚଳରେ ଗୋଟିଏ ସ୍ୱତନ୍ତ୍ର ସ୍କୁଲ ପ୍ରତିଷ୍ଠା କରାଯାଇପାରେ । ବିକଳ୍ପ ବ୍ୟବସ୍ଥାରୂପେ ଅନନ୍ୟ ସାଧାରଣ ପିଲାଙ୍କୁ ନେଇ ଦୂରବର୍ତ୍ତୀ ସ୍ଥାନରେ ସରକାରୀ ସହାୟତାରେ ସ୍ୱତନ୍ତ୍ର ସ୍କୁଲରେ ଭର୍ତ୍ତି କରାଯାଇପାରେ । ଏପରି ସ୍ୱତନ୍ତ୍ର ସ୍କୁଲରେ ପାଠ୍ୟକ୍ରମ ସାଧାରଣ ସ୍କୁଲର ପାଠ୍ୟକ୍ରମଠାରୁ ଭିନ୍ନ ଓ ଉନ୍ନତ । ଏପରି ସ୍କୁଲରେ ବ୍ୟକ୍ତିଗତ ଉଦ୍ୟମ ଓ ବୌଦ୍ଧିକ ପାରିଦର୍ଶିତା ଉପରେ ପ୍ରାଧାନ୍ୟ ଦିଆଯାଏ ।

ଆମ ଦେଶରେ କିଛି ପରିମାଣରେ ଏ ବ୍ୟବସ୍ଥାର ପ୍ରଚଳନ ଅଛି । ରାଜସ୍ଥାନର ବନସ୍ଥଳୀ ବିଦ୍ୟାପୀଠ ଏ ଦିଗରେ ଏକ ପରିକଳ୍ପନା । ପାଶ୍ଚାତ୍ୟ ଦେଶମାନଙ୍କରେ ଏ ଯୋଜନାକୁ କାର୍ଯ୍ୟକାରୀ କରାଯାଉଛି । ଏପରି ସ୍ୱତନ୍ତ୍ର ସ୍କୁଲରେ ଅନନ୍ୟ ସାଧାରଣ ଛାତ୍ର ନିଜର ଶିକ୍ଷାବ୍ୟବସ୍ଥାର ପରିକଳ୍ପନାରେ ଭାଗ ନିଏ । ଆଲୋଚନା ଚକ୍ର ଓ ସ୍ୱାଧୀନ କାର୍ଯ୍ୟକ୍ରମର ଅଂଶ ଗ୍ରହଣ କରେ ଏବଂ ପ୍ରଚଳିତ ଶିକ୍ଷାପଦ୍ଧତିର ବାହାରେ କେତେକ ଅଭିନବ ପ୍ରଣାଳୀରେ ଶିକ୍ଷାଗ୍ରହଣ କରେ । କେତେକ ବ୍ୟକ୍ତିବିଶେଷ ମନେକରନ୍ତି ଯେ ଅଳ୍ପ କେତେକ ପିଲାଙ୍କୁ ଏପରି ସୁଯୋଗ ଦେଲେ ସେମାନେ ନିଜର ଦକ୍ଷତା ବିଷୟରେ ଅତିରଂଜିତ ଭାବନା ଆଣି ଆତ୍ମଗର୍ବ କରନ୍ତି ଓ ଅନ୍ୟମାନଙ୍କୁ ହେୟ ମନେ କରନ୍ତି । ମାତ୍ର ଏହା ପ୍ରକୃତରେ ସତ୍ୟ ନୁହେଁ । ଗବେଷଣାରୁ ଦେଖାଯାଇଛି ଯେ ସ୍ୱତନ୍ତ୍ର ସ୍କୁଲରେ ଶିକ୍ଷାଲାଭ କରୁଥିବା ଛାତ୍ରଛାତ୍ରୀମାନେ ଅନେକ ସମୟରେ ବିନମ୍ର ହୋଇଥାନ୍ତି ଏବଂ

ଅନ୍ୟମାନଙ୍କ ଗହଣରେ ନିଜକୁ ଜଣେ ସାଧାରଣ ବ୍ୟକ୍ତି ହିସାବରେ ଗ୍ରହଣ କରିଥାନ୍ତି ।

ଅନନ୍ୟ ସାଧାରଣ ଶିଶୁମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ବିପକ୍ଷରେ ବେଳେବେଳେ ପ୍ରତିବାଦ ହୁଏ । କେହି କେହି ଅନୁଭବ କରନ୍ତି ଯେ ଅନନ୍ୟ ସାଧାରଣ ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ବ୍ୟୟସାପେକ୍ଷ ଏବଂ ଗଣତନ୍ତ୍ର ପନ୍ଥାର ବିରୋଧୀ । ଯେଉଁ ପିଲାମାନଙ୍କର ଅଧିକ ବୁଦ୍ଧିମତ୍ତା ମୂଳରୁ ରହିଛି ସେମାନଙ୍କର ମାନସିକ ଅଭିବୃଦ୍ଧି ପାଇଁ ପୁଣି ଅଧିକ ସୁବିଧାସୁଯୋଗ ଦେବା ସାମାଜିକ ନ୍ୟାୟର ଅନ୍ତରାୟ ନୁହେଁକି ? ମାତ୍ର ଗଭୀର ଅନୁଧ୍ୟାନ କଲେ ଜଣାଯାଏ ଯେ ଏ ଧରଣର ଯୁକ୍ତି ଗୋଷ୍ଠୀଗତ ସ୍ୱାର୍ଥର ବିରୋଧୀ । ଅନନ୍ୟ ସାଧାରଣ ପିଲାପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଦ୍ୱାରା କେବଳ ପିଲା ଓ ତାର ପିତାମାତା ଉପକୃତ ହୁଅନ୍ତି ନାହିଁ; ସମାଜରେ ଭବିଷ୍ୟତ ସୁଖର ସମ୍ଭାବନା ବହୁଗୁଣିତ ହୁଏ । ଏ ଦୃଷ୍ଟିରୁ ଅନନ୍ୟ ସାଧାରଣ ଶିଶୁ ଶିକ୍ଷାବ୍ୟବସ୍ଥାରେ ପ୍ରତି ସମାଜ ଅଙ୍ଗୀକାରବଦ୍ଧ ହେବା ନିତାନ୍ତ ବିଧେୟ ।

**କେଉଁ ବାଟରେ ଯିବେ ?**

୧. ଅନନ୍ୟ ସାଧାରଣ ଶିଶୁ ଦର୍ଶାଉଥିବା ଦକ୍ଷତାର କ୍ଷେତ୍ରକୁ ଚାହିଁ ତାହା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥାର ଆୟୋଜନ କରନ୍ତୁ ।

୨. ଏହା କରିବା ସଙ୍ଗେ ସଙ୍ଗେ ପରିବାରର ଅନ୍ୟ ଶିଶୁମାନେ ଯେପରି ଅବହେଳିତ ମନେ ନ କରନ୍ତି, ସେ ଦିଗପ୍ରତି ସତର୍କ ଦୃଷ୍ଟି ଦିଅନ୍ତୁ ।



# ଶିଶୁର ଭାଷାଗତ ସାମର୍ଥ୍ୟ

ଶିଶୁର ଭାଷା ସାମର୍ଥ୍ୟ କ୍ଷେତ୍ରରେ ଜନ୍ମଗତ କ୍ଷମତାର ପରିକଳ୍ପନା ମୂଳରେ ଦୁଇ ତିନୋଟି କାରଣ ରହିଛି । ଶିଶୁର ଜନ୍ମଗତ ସାମର୍ଥ୍ୟ ଉପରେ ଗୁରୁତ୍ୱ ଦେଉଥିବା ବିଶେଷଜ୍ଞମାନେ କହନ୍ତି ଯେ, ଅଳ୍ପ ବୟସରେ ଶିଶୁ ଯେଉଁ ଭାଷାଗତ ପରିବେଶର ସମ୍ମୁଖୀନ ହୁଏ, ଯେଉଁ ବାତାବରଣର ସମ୍ମୁଖୀନ ହୁଏ, ସେ ବାତାବରଣଟି ଅନେକ ଦୃଷ୍ଟିରୁ ଅସମ୍ପୂର୍ଣ୍ଣ । ଶିଶୁମାନେ ଶୁଣୁଥିବା ଅନେକ ବାକ୍ୟର ବ୍ୟାକରଣଗତ ଶୁଦ୍ଧି ନଥାଏ । ବାପା ମା' ଅନେକ ସମୟରେ ଅସମ୍ପୂର୍ଣ୍ଣ ବାକ୍ୟ ବ୍ୟବହାର କରନ୍ତି । ପୁଣି ବାକ୍ୟଗୁଡ଼ିକରେ ବ୍ୟାକରଣଗତ ତ୍ରୁଟି ରହିଥାଏ । ବେଳେବେଳେ ପ୍ରଶ୍ନର ଉତ୍ତର ନଦେଇ ବାପା ମା' ଚୁପ୍ ରହନ୍ତି । ଶୁଦ୍ଧ ଭାଷାର ଏପରି ଅଭାବ ସତ୍ତ୍ୱେ ପିଲାମାନେ ଭାଷାର ପ୍ରୟୋଗ ଠିକ୍ ରୂପେ ଶିଖିଥାନ୍ତି ।

ଶିଶୁମାନଙ୍କର ଭାଷାର ପରିସର ଓ ଭାଷାଶୈଳୀ ଅନୁଶୀଳନ କଲେ ଦେଖାଯିବ ଯେ, ଏସବୁ କେବଳ ସେମାନଙ୍କର ପିତାମାତାଙ୍କ ଦ୍ୱାରା ବ୍ୟବହୃତ ଶବ୍ଦ ସମ୍ଭାର ଓ କଥନ ଶୈଳୀ ମଧ୍ୟରେ ସୀମିତ ନୁହେଁ । ପୂର୍ବରୁ ବିଶେଷଭାବେ



(ଶ୍ରବଣରୁ ମନନ ଏବଂ ମନନରୁ ଭାଷାଜ୍ଞାନ)

ଶୁଣିନଥିବା କିମ୍ବା ବ୍ୟବହାର କରିନଥିବା 'ବହୁବଚନ'ର ହଠାତ୍ ପ୍ରୟୋଗ ଅନ୍ୟମାନଙ୍କୁ ବିସ୍ମିତ କରିଥାଏ ।

ଅବଶ୍ୟ ଭାଷା-ଶିକ୍ଷା କରିବାର ଏକ ଜନ୍ମଗତ ସାମର୍ଥ୍ୟର ସୂଚନା ଦେଲେ ମଧ୍ୟ ଅନୁଭୂତିର ଭୂମିକାକୁ ଅସ୍ୱୀକାର କରିହେବ ନାହିଁ । ଯମଜ ଓ ଅବହେଳିତ ଶିଶୁମାନଙ୍କର ଭାଷା ପ୍ରୟୋଗ ପ୍ରତି ଲକ୍ଷ୍ୟ କଲେ ଜଣାଯିବ ଯେ, ଭାଷା ଶିକ୍ଷା କ୍ଷେତ୍ରରେ କୌଶଳ ଓ ପ୍ରାକ୍ ବିଦ୍ୟାଳୟ ସ୍ତରରେ କେତେକ ଅନୁଭବ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଅନ୍ୟମାନଙ୍କ କଥା ଶୁଣିବାର ସୁଯୋଗ ଏବଂ ପ୍ରଶ୍ନର ଉତ୍ତର ଦେବାର ଅନୁଭୂତି ଶିଶୁର ଭାଷା ଶିକ୍ଷାକୁ ସମୃଦ୍ଧ କରେ । ପୁଣି ଶିଶୁ ଲାଳିତପାଳିତ ହେଉଥିବା ଭାଷା ସମ୍ପ୍ରଦାୟ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୁଏ । ଏସବୁକୁ ଲକ୍ଷ୍ୟ ରଖି କୁହାଯିବ ଯେ, ଶିଶୁ ଭାଷା ଶିକ୍ଷାର କେତେକ ସମ୍ଭାବନା ନେଇ ଜନ୍ମ ହୋଇଥିଲେ ମଧ୍ୟ ବାସ୍ତବ ଜଗତର ଅନୁଭବ ତା'ର ଭାଷା ଦକ୍ଷତାକୁ ନିର୍ଦ୍ଦିଷ୍ଟ ରୂପ ଦିଏ ।

ଭାଷା ଶିକ୍ଷାର ପରିବେଶ ମଧ୍ୟରେ ପିତାମାତାଙ୍କର ଅନୁକ୍ରିୟା ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରେ । ପିତାମାତା ସହଜ ସରଳ ବାକ୍ୟ କହି ଶିଶୁକୁ ଅଧିକ ସାହାଯ୍ୟ କରନ୍ତି । ଅଧିକ ପରିମାଣରେ 'ସର୍ବନାମ' ବ୍ୟବହାର କରିବା ପରିବର୍ତ୍ତେ ଦୃଶ୍ୟମାନ ବିଶେଷ୍ୟପଦର ବହୁଳ ପ୍ରୟୋଗ ଅଧିକ ସହାୟକ ହୁଏ । ଜଣେ ପିତା ବା ମା' ହୁଏତ କହିଥାନ୍ତି—''ଜୋତା ବାହାର କରିଦିଅ । ତା' ପରେ ଜୋତାକୁ ବାହାର ଘରେ ରଖ । ହାତ ଧୋଇନିଅ । ତା' ପରେ ମୋ ପାଖରେ ଖାଇନିଅ ।'' ଏପରି ନକହି ଅନ୍ୟ ଜଣେ ପିତା ବା ମା' ହୁଏତ କହିପାରନ୍ତି— ''ଜୋତାକୁ ଖୋଲି ସେସବୁ ବାହାର ଘରେ ରଖି ହାତଧୋଇ ମୋ ପାଖରେ ଖାଇନିଅ ।'' ଏ କ୍ଷେତ୍ରରେ ପ୍ରଥମ ବ୍ୟକ୍ତିଙ୍କ ବାକ୍ୟ ସହଜ ଓ ସରଳ । ଶିଶୁର ଭାଷା ଶିକ୍ଷା ପାଇଁ ଏହା ଅଧିକ ସହାୟକ । ଏପରି ଭାଷା ପ୍ରୟୋଗ ଅଧିକ ମାତ୍ରାରେ ଶିଶୁକେନ୍ଦ୍ରିତ ।

ସେହିପରି ଶିଶୁକୁ ଭାଷା ଶିକ୍ଷା ଦେବାର ଆଉ ଗୋଟିଏ ଦିଗ ହେଉଛି ପୁନଃ ପ୍ରକାଶ । ଅନେକ ସମୟରେ ଶିଶୁ ନିଜର ଭାବବ୍ୟକ୍ତ କରିବା ପାଇଁ ଗୋଟିଏ ଦୁଇଟି ଶବ୍ଦ କିମ୍ବା ଅସମ୍ପୂର୍ଣ୍ଣ ବାକ୍ୟାଂଶଟି କହିଥାଏ । ଶିଶୁଟି ହୁଏତ କହିପାରେ, 'ମା' ଭାତ ।' ପୁନଃପ୍ରକାଶର ସୁଯୋଗ ଦେଇ ମା' କହିପାରନ୍ତି— 'ତୋର ଭାତ ଦରକାର କି ?' ସେହିପରି ଶିଶୁଟି ତ୍ରୁଟିପୂର୍ଣ୍ଣ ବାକ୍ୟ ମା' ଚଟି କହିଲା ବେଳେ ମା' ସଂଶୋଧନ କରି 'ମା' ଚଟି ପିନ୍ଧୁଛନ୍ତି' ବୋଲି କହିପାରନ୍ତି । ଏପରି ସବୁ ପୁନଃପ୍ରକାଶ ଶିଶୁର ଅଭିବ୍ୟକ୍ତିକୁ ପ୍ରାଞ୍ଜଳ କରେ ।

ଅନ୍ୟ କେତେକ ସ୍ଥଳରେ ଶିଶୁର ଭାଷାଗତ ଦକ୍ଷତାର ବୃଦ୍ଧି ପାଇଁ ଭାବ ସମ୍ପ୍ରସାରଣ ପଦ୍ଧତି ପ୍ରୟୋଗ କରାଯିବା ଉଚିତ । ପିଲାଟି 'ଫୁଲ' କହି ସାରିବା ପରେ ବୟସ୍କ ବ୍ୟକ୍ତି 'ସୁନ୍ଦର ଫୁଲ' କହିପାରନ୍ତି । ଶିଶୁର ମୂଳ ଶବ୍ଦଟିକୁ ଆଧାର କରି ତାହାକୁ ପରିବର୍ଦ୍ଧିତ କରି କହିବା ଫଳରେ ଶିଶୁ ନୂଆ ନୂଆ ଶବ୍ଦ ଶିକ୍ଷାକରେ ଏବଂ ସେସବୁର ପ୍ରାସଙ୍ଗିକତା ମଧ୍ୟ ଶିକ୍ଷା କରିଥାଏ ।

ସ୍ଥୂଳତଃ ଶିଶୁର ଶୈଶବ ଓ ପ୍ରାକ୍ ବିଦ୍ୟାଳୟ ସ୍ତରରେ ପିତାମାତାଙ୍କର ଭାଷା ପ୍ରୟୋଗ ଓରା ପରି କାର୍ଯ୍ୟ କରେ । ବଡ଼ ବଡ଼ କୋଠା ତିଆରି ସମୟରେ ଛାତ ଓ କାନ୍ଥକୁ ସହାୟତା ଦେବାପାଇଁ ସାମୟିକ ଭାବରେ କାଠପଟା ଦେଇ ସହାୟକ ବ୍ୟବସ୍ଥା ସ୍ୱରୂପ ଓରା ତିଆରି କରାଯାଏ । ଛାତ ଓ କାନ୍ଥସବୁ ଶୁଖିଗଲେ ଏସବୁ କାଠପଟା ଧୀରେ ଧୀରେ ବାହାର କରିଦିଆଯାଏ । ସେହିପରି ଶିଶୁର ଭାଷା-ଶିକ୍ଷା ପାଇଁ ପିତାମାତା, ଅଭିଭାବକ ଏବଂ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କର ସହାୟତା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଶିଶୁକେନ୍ଦ୍ରିତ ଭାଷାର ବ୍ୟବହାର, ଶିଶୁ ସହିତ କଥାବାର୍ତ୍ତା ଏବଂ ପ୍ରଶ୍ନୋତ୍ତର ମାଧ୍ୟମରେ ଭାଷା ବିକାଶକୁ ତ୍ୱରାନ୍ୱିତ କରାଯାଇପାରିବ । ଶିଶୁକୁ ପ୍ରଶ୍ନ ପଚାରିବା ସମୟରେ ମଧ୍ୟ ଏକ ବିଶେଷ ଦିଗ ପ୍ରତି ଦୃଷ୍ଟି ଦେବାକୁ ହେବ । 'ହଁ' କିମ୍ବା 'ନାହିଁ'ରେ ଉତ୍ତର ଦିଆଯାଇ ପାରିବାର ପ୍ରଶ୍ନ ଅପେକ୍ଷା ନିର୍ଦ୍ଦିଷ୍ଟ ଶବ୍ଦ ଦ୍ୱାରା ଉତ୍ତର ମିଳିବାର ପ୍ରଶ୍ନସବୁ ଅଧିକ ଉପଯୋଗୀ । ସ୍ୱାଭାବିକ ଶିଶୁ ନିଜର ଅନ୍ତର୍ନିହିତ ସାମର୍ଥ୍ୟ ବଳରେ ଭାଷା ଶିକ୍ଷା କରୁଥିଲେ ମଧ୍ୟ ଆମର ଦାୟିତ୍ୱଶୀଳ ଓ ପ୍ରେରଣାଦାୟକ କ୍ରିୟା ଅନୁକ୍ରିୟା ଶିଶୁର ଭାଷା ଦକ୍ଷତାକୁ ଅଧିକ ବିକଶିତ କରିବ ।



# ଭାଷାଗତ ଦକ୍ଷତାର ବିକାଶ ସମ୍ପର୍କରେ

ଶିଶୁର ଭାଷାଗତ ସାମର୍ଥ୍ୟ ସମ୍ପର୍କରେ ଦୁଇଟି ପୃଥକ୍ ମତ ରହିଛି । ଚମୋସ୍କିଙ୍କ ପରି ବିଶ୍ୱବିଖ୍ୟାତ ମନୋଭାଷା ତତ୍ତ୍ୱବିତ୍ ଶିଶୁର ଏପରି ଦକ୍ଷତାକୁ ଏକ ସ୍ୱଭାବଗତ ଅନ୍ତର୍ନିହିତ ଦକ୍ଷତା ରୂପେ ବିଚାର କରନ୍ତି । ଏ ଦୃଷ୍ଟିରୁ ଶିଶୁର ଭାଷା ଦକ୍ଷତାକୁ ସ୍ୱାଭାବିକ ପ୍ରକାଶ (ଲାଙ୍ଗୁଏଜ୍ ଆକ୍ୟୁଜିସନ ବା ଡ଼ିଭାଇସ୍ ବା ଲ୍ୟାଡ଼) ସପକ୍ଷରେ ମତ ଦିଅନ୍ତି । ଅନ୍ୟପକ୍ଷରେ ଅନ୍ୟସବୁ ବିଶେଷଜ୍ଞମାନେ ଶିଶୁର ପରିବେଶ ଏବଂ ବିଶେଷ କରି ପିତାମାତାଙ୍କ ସହିତ ଶିଶୁର କ୍ରିୟା ଅନୁକ୍ରିୟା ଉପରେ ପ୍ରାଧାନ୍ୟ ଦିଅନ୍ତି । ସେମାନଙ୍କ ଦୃଷ୍ଟିଭଙ୍ଗୀରେ ଭାଷାଶିକ୍ଷା ପାଇଁ ଏକ ସହାୟକ ଅବସ୍ଥା ଅଧିକ ପ୍ରୟୋଜନ ।

ପ୍ରକୃତରେ ଦେଖିବାକୁ ଗଲେ ଲ୍ୟାଡ଼ର ଅନ୍ତର୍ନିହିତ ପ୍ରକ୍ରିୟା ପୁରାପୁରି ଭୁଲ ନହେଲେ ମଧ୍ୟ ଶିଶୁର ଭାଷାଗତ ଦକ୍ଷତାର ଅଭିବୃଦ୍ଧି ପାଇଁ ଉପଯୋଗୀ ପରିବେଶ ନିତାନ୍ତ ଆବଶ୍ୟକ । ନିଜର ଅଜ୍ଞାତସାରରେ ପିତାମାତା ଓ ଅନ୍ୟାନ୍ୟ ବୟସ୍କ ବ୍ୟକ୍ତିମାନେ ଶିଶୁର ଏହି ଦକ୍ଷତାର ଅଭିବୃଦ୍ଧି ଦିଗରେ ସହାୟକ ଭୂମିକା ନିର୍ବାହ କରିଥାନ୍ତି । ଶିଶୁ ସହିତ କାରବାର କରିବାର କେତୋଟି ପ୍ରକ୍ରିୟା ଶିଶୁର ଦକ୍ଷତାକୁ ପରିପୁଷ୍ଟ କରେ । କେଉଁ କେଉଁ ଉପାୟରେ ପିତାମାତା ଓ ବୟସ୍କମାନେ ଶିଶୁର ଭାଷା ଦକ୍ଷତାକୁ ଅଧିକ ପରିପୁଷ୍ଟ କରିପାରିବେ, ସେସବୁ ସୂଚନା ବେଶ୍ ଶିକ୍ଷାପ୍ରଦ ।

ପ୍ରଥମତଃ ଭାଷା ବ୍ୟବହାର ନକରି ପିତାମାତା ପିଲାମାନଙ୍କ ସହିତ ଖେଳୁଥିବା କେତେକ ଖେଳ ମଧ୍ୟ ପ୍ରକାରାନ୍ତରେ ଭାଷା ଶିକ୍ଷାକୁ ସକ୍ରିୟ କରେ । ମନେ କରାଯାଉ କିଛି କଥା ନକହି ମଧ୍ୟ ମା' ଗୋଟିଏ ଜିନିଷକୁ ଲୁଚାଇ ଦେଉଛନ୍ତି ଏବଂ ଶିଶୁଟି ଚାଦର ତଳୁ ତାହାକୁ ବାହାର କରିଛି । ପୁଣି ମା' ଜିନିଷଟିକୁ ତକିଆ ତଳେ ଲୁଚାଇ ଦେଉଛନ୍ତି ଏବଂ ଶିଶୁଟି ପୁଣି ଖୋଜି ତାହାକୁ ବାହାର କରୁଛି । ବାହ୍ୟ ଦୃଷ୍ଟିରୁ ଏପରି ଖେଳ ସହିତ ଭାଷା ଶିକ୍ଷାର କୌଣସି ସମ୍ପର୍କ ନଥିଲେ ମଧ୍ୟ ଏହାର ଅନ୍ତରାଳରେ ଏକ ତାତ୍ପର୍ଯ୍ୟ ରହିଛି । ଜିନିଷଟି ଶିଶୁ ଆଖି ଆଗରୁ ଲୁଚିଯିବା ଏବଂ ପୁଣି ବାହାର କରିବାର ପୁନରାବୃତ୍ତି ଫଳରେ ଶିଶୁ ନିଜର ପାଳିପଡ଼ିବା ପର୍ଯ୍ୟନ୍ତ ଅପେକ୍ଷା କରିବାର ବ୍ୟବହାରଟି ଶିଖେ । ପ୍ରଥମେ ମା' ଲୁଚାଇବେ ଏବଂ ତା'ପରେ ଶିଶୁ ଖୋଜିବ, ଏପରି ଏକ ଢାଞ୍ଚା ଭାଷା ଶିକ୍ଷା କ୍ଷେତ୍ରରେ ଏକ ପ୍ରାରମ୍ଭିକ ପ୍ରସ୍ତୁତି । ଭାଷା ଶିକ୍ଷା କରିବା ପାଇଁ କହିବା ଓ ଶୁଣିବା ପୁଣି ଶୁଣିବା ଓ କହିବା ଏହିପରି ପାଳିକରି ଆଗେଇବାର ଅଭ୍ୟାସ ଶିଶୁ ପାଇଁ ଉପଯୋଗୀ ହୋଇଥାଏ ।

ଦ୍ୱିତୀୟତଃ ପିତାମାତା ବସ୍ତୁ ସବୁ ବ୍ୟବହାର କଲାବେଳେ ଶିଶୁ ସମ୍ମୁଖରେ ବସ୍ତୁଗୁଡ଼ିକର ନାମ କହିଥାନ୍ତି । ରୁଟି ଖୁଆଇଲା ବେଳେ ରୁଟି ଶବ୍ଦଟିକୁ ବାରମ୍ବାର କହିବା, ବଲ୍ ଖେଳାଇଲା ବେଳେ ବଲ ଶବ୍ଦଟିକୁ ବାରମ୍ବାର କହିବାର ଅଭ୍ୟାସ ଫଳପ୍ରଦ ହୁଏ । ଏପରି ସଂଯୋଗର ପୁନରାବୃତ୍ତି ଫଳରେ ଶିଶୁଟି ନିଜ ପରିବେଶର ଦୃଶ୍ୟମାନ ପଦାର୍ଥ ସବୁର ନାମ ଭାଷାରେ ପ୍ରକାଶ କରିବାର ସାମର୍ଥ୍ୟ ହାସଲ କରେ ।

ତୃତୀୟତଃ ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ ଶିଶୁକୁ ଭାଷା ଶିକ୍ଷା ଦେଲାବେଳେ ଦାୟିତ୍ୱଶୀଳ ପିତାମାତା ଓ ବୟସ୍କମାନେ ପ୍ରଥମେ ପ୍ରଥମେ ସହଜ ସରଳ ଶବ୍ଦ ବାକ୍ୟାଂଶ ଓ ବାକ୍ୟସବୁ ବ୍ୟବହାର କରନ୍ତି । ସଂକ୍ଷିପ୍ତ ବାକ୍ୟଟି କହିଲା ବେଳେ ବିଭିନ୍ନ ଶବ୍ଦ ମଧ୍ୟରେ ଥିବା ସମ୍ପର୍କକୁ ଶିଶୁ ଯେପରି ବୁଝିପାରିବ, ସେଥିପ୍ରତି ଦୃଷ୍ଟି ଦିଅନ୍ତି । ଉଦାହରଣ ସ୍ୱରୂପ କୁହାଯାଇପାରେ ସେ ବଲ୍‌ଟି ଖଟ ଉପରେ ପଡ଼ିଛି । କହିବା ସମୟରେ ମା' 'ଉପରେ' ଶବ୍ଦଟି ଉପରେ ଜୋର ଦେଇପାରନ୍ତି । ଏପରି ଭାବରେ ଶିଶୁଟି "ଉପର" ଓ "ତଳ" ଶବ୍ଦ ଦୁଇଟି ସହିତ ଖଟର ସମ୍ପର୍କ ଠିକ୍ ବୁଝିପାରିବ । ସେହିପରି ଶିଶୁଟିକୁ କୌଣସି ବସ୍ତୁଟିର ନାମ ଶିଖାଇବାକୁ ଚେଷ୍ଟା କଲାବେଳେ "ଏହା ଗୋଟିଏ ଫୁଲ" କହିବା ସମୟରେ ଉଚ୍ଚସ୍ୱରରେ ଗୁରୁତ୍ୱ ଦେଇ ଫୁଲଟି ଉଚ୍ଚାରଣ କରିବେ । ଫୁଲଟି ଉପରେ ଗୁରୁତ୍ୱାରୋପ ଏବଂ ଏହାର ପୁନରାବୃତ୍ତି ଫଳରେ ଶିଶୁଟି କେଉଁ ବସ୍ତୁକୁ ଫୁଲ କୁହାଯିବ—ତାହା ଶିକ୍ଷାକରି ଉପଯୁକ୍ତ ଭାଷା ପ୍ରୟୋଗ କରିବ । କହିବା ସମୟରେ "ଫୁଲ" ଶବ୍ଦଟିକୁ ଅତିରଂଜିତ କରାଯାଉଥିଲେ ମଧ୍ୟ ଏହା ଶିଶୁର ଭାଷାଗତ ସାମର୍ଥ୍ୟ ଲାଭରେ ସହାୟକ ହୋଇଥାଏ ।

ଶିଶୁକୁ ଭାଷା ଶିଖାଇବାର ଅନ୍ୟତମ କୌଶଳଟି ହେଉଛି ଭାବବିସ୍ତାର ଓ ପୁନରାବୃତ୍ତି । ଶିଶୁ ଅନେକ ସମୟରେ ଖଣ୍ଡିତ ବାକ୍ୟ କହିଥାଏ । ଶିଶୁର ବାକ୍ୟରେ ବ୍ୟାକରଣଗତ ଅଶୁଦ୍ଧି ଥାଇପାରେ । ଉଦାହରଣ ସ୍ୱରୂପ, କୁକୁରଟି ଭାତ ଖାଉଛି ନକହି "କୁକୁର ଭାତ ଖାଉଛିଁ" ବୋଲି ଏକାଧିକ ବାର କହିବା ସମୁଚିତ ହେବ । ସେହିପରି ଶିଶୁର କେତେକ ବାକ୍ୟରେ ଅର୍ଥଗତ ତ୍ରୁଟି ଥାଇପାରେ । ଗୋଟିଏ ବିରାଡ଼ିକୁ ଦେଖି ଶିଶୁ "କୁକୁର ଠିଆ" ବୋଲ କହିପାରେ । ଏ କ୍ଷେତ୍ରରେ ପିତାମାତା ସଂଶୋଧନ କରି "ବିରାଡ଼ିଟି ଠିଆ ହୋଇଛି" କହିପାରନ୍ତି ।

ମୋଟ ଉପରେ ଭାବପ୍ରକାଶ ପାଇଁ ଶିଶୁ ବ୍ୟବହାର କରିଥିବା ପାଇଁ ଶିଶୁ ବ୍ୟବହାର କରିଥିବା ଶବ୍ଦ, ବାକ୍ୟାଂଶ ବା ବାକ୍ୟସବୁକୁ ସମ୍ପୂର୍ଣ୍ଣ ଭାବରେ ବିସ୍ତାରିତ

କରି ପୁନଃପ୍ରକାଶ କରାଯିବାର ଉଦ୍ୟମ ଶିଶୁ ପାଇଁ ସହାୟକ ଅବସ୍ଥା ସୃଷ୍ଟିକରେ ଏତଦ୍ ବ୍ୟତୀତ ଶିଶୁଟି ପିତାମାତା କିମ୍ୱା ବୟସ୍କମାନଙ୍କଠାରୁ ଶୁଣିସାରିବା ପରେ ଠିକ୍ ଭାବରେ ପ୍ରକାଶ କଲାପରେ ବୟସ୍କମାନେ ସ୍ମିତହସି କିମ୍ୱା ନିଜର ସ୍ନେହଶ୍ରଦ୍ଧା ଜଣାଇ ସମ୍ମତି ଆଭାସ ଦେବା ବିଶେଷ ଫଳପ୍ରଦ ହୁଏ । ଶିଶୁ ଠିକ୍ ଭାବରେ ନିଜକୁ ବ୍ୟକ୍ତ କରିପାରିଛି, ବଡ଼ମାନେ ଏ ସମ୍ପର୍କରେ ସ୍ପଷ୍ଟ ସୂଚନା ଦେବେ । ଶିଶୁର ବକ୍ତବ୍ୟରେ ତ୍ରୁଟିଥିଲେ ତାହା ସଂଶୋଧନ କରାଯାଇ ଶିଶୁର ଗ୍ରହଣଯୋଗ୍ୟ ଭାଷାରେ ପ୍ରକାଶ କରାଯିବ ଏବଂ ଠିକ୍‌ଥିଲେ ସେ ସମ୍ପର୍କରେ ଆଖିର ଚାହାଣୀ ଦେହର ଅଙ୍ଗଭଙ୍ଗୀ କିମ୍ୱା କଥା ମାଧ୍ୟମରେ ସ୍ପଷ୍ଟ ସଂକେତ ଦିଆଯିବ । ବୟସ୍କମାନଙ୍କର ଏପରି ସଚେତନଶୀଳ ବ୍ୟବହାର ଷିଶୁର ଭାଷାଗତ ସାମର୍ଥ୍ୟକୁ ବିକଶିତ କରିବ ।

## କେଉଁ ବାଟରେ ଯିବେ ?

୧. ଆପଣ ଶିଶୁକୁ ନୂତନ ଶବ୍ଦଟିଏ ଶିଖାଇବା ସମୟରେ ଏହି ଶବ୍ଦ ସହିତ କୌଣସି ବସ୍ତୁ ଜଡ଼ିତ ଥିଲେ, ବସ୍ତୁଟି ପ୍ରତି ଦୃଷ୍ଟି ଆକର୍ଷଣ କରାନ୍ତୁ । ଉଦାହରଣସ୍ୱରୂପ, 'କୁକୁର' ଶବ୍ଦଟି ଶିଖାଇବା ସମୟରେ କୁକୁର ଦେଖାଇପାରନ୍ତି ।

୨. ଭାବ ସଂପ୍ରସାରଣ ପାଇଁ ଧୀରେ ଧୀରେ ବିଶେଷଣ ପଦ ବ୍ୟବହାର କରନ୍ତୁ । ଶିଶୁଟି 'ଫୁଲ' କହିବା ସମୟରେ ଆପଣ 'ଲାଲଫୁଲ' କିମ୍ୱା 'ସୁନ୍ଦର ଫୁଲ' କହିପାରନ୍ତି ।

୩. ଶିଶୁର ଅସମାପ୍ତ ବାକ୍ୟଟିକୁ ଆପଣ ଛାଡ଼ି ନଦେଇ ତାହାକୁ ସମ୍ପୂର୍ଣ୍ଣ କରନ୍ତୁ । ଶିଶୁଟି "ମା' ବ୍ୟାଗ୍" କହିବା ସମୟରେ ଆପଣ "ମା' ବ୍ୟାଗ୍ ଧରିଛନ୍ତି" ବୋଲି କହିପାରନ୍ତି ।

୪. ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ଶିଶୁର ବୟସକୁ ଚାହିଁ ବୁଝିପାରିବା ଭଳି ଗପଟିଏ କହିବା ଏବଂ କିଛି ସମୟ ବ୍ୟବଧାନରେ ଗପଟି କହିବା ପାଇଁ ଶିଶୁକୁ ସୁଯୋଗ ଦେବା ଉଚିତ । ଏହାର ନିୟମିତ ବ୍ୟବହାର କରନ୍ତୁ ।



# ଶିଶୁର ଶାରୀରିକ ବିକାଶକୁ ପ୍ରଭାବିତ କରୁଥିବା କେତୋଟି ଉପାଦାନ

ଅନେକଙ୍କର ଧାରଣା ଯେ କେବଳ ସୁଷମ ଖାଦ୍ୟ ପ୍ରାଚୁର୍ଯ୍ୟ ଶିଶୁର ଶାରୀରିକ ବିକାଶକୁ ତ୍ୱରାନ୍ୱିତ କରେ । ମାତ୍ର ଏହା ସତ୍ୟ ନୁହେଁ । ଏକାଧିକ ମନସ୍ତାତ୍ତ୍ୱିକ ଉପାଦାନ ଶିଶୁର ଶାରୀରିକ ବିକାଶରେ ପ୍ରଭାପ ପକାଏ । ଉଦାହରଣସ୍ୱରୂପ କୁହାଯାଇପାରେ ଯେ, କେତେକ ସଂସ୍କୃତିରେ ପିଲାମାନେ ନିଜର ଦର୍ଶନେନ୍ଦ୍ରିୟ (ଚକ୍ଷୁ)ର ବହୁଳ ବ୍ୟବହାରରୁ ବଂଚିତ ହେବାସ୍ଥଳେ ଅନ୍ୟ କେତେକ ସଂସ୍କୃତିରେ ପିଲାମାନେ ଦର୍ଶନେନ୍ଦ୍ରିୟର ବହୁଳ ବ୍ୟବହାରର ସୁଯୋଗ ପାଆନ୍ତି । ପ୍ରଥମ ପ୍ରକାର ସଂସ୍କୃତିରେ ମା'ମାନେ କାମକୁ ଗଲାବେଳେ ଛୋଟ ପିଲାମାନଙ୍କୁ ସେମାନଙ୍କ ପିଠିରେ ଥିବା ଏକ ଥଳୀ ମଧରେ ରଖିଥାନ୍ତି । କେବଳ ନିଶ୍ୱାସ ପ୍ରଶ୍ୱାସ ପାଇଁ ଛିଦ୍ର ବ୍ୟତୀତ ଥଳୀଟି ସମ୍ପୂର୍ଣ୍ଣ ଭାବରେ ଶିଶୁକୁ ଆବୃତ୍ତ ରଖିଥିବାରୁ ଶିଶୁ ବାହାର ଜଗତର ବିଶେଷ କିଛି ଦୃଶ୍ୟ ଦେଖିପାରେ ନାହିଁ । ଅନ୍ୟପକ୍ଷରେ ଭିନ୍ନ ସଂସ୍କୃତିରେ ମା' ମାନେ ଶିଶୁକୁ କାନ୍ଧ କିମ୍ବା ପିଠିରେ ଥିବା ଥଳୀ ସାହାଯ୍ୟରେ ବୋହିବା ବେଳେ ଶିଶୁର ମୁହଁ ବାହାରକୁ ରହିଥାଏ । ଫଳରେ ସେ ଦୃଶ୍ୟ ସବୁ ଦେଖେ ଏବଂ ଶବ୍ଦ ରୂପେ ଶୁଣିପାରେ । ଅନୁଧ୍ୟାନରୁ ଦେଖାଯାଇଛି ଯେ, ଦ୍ୱିତୀୟ ପ୍ରକାର ପରିବେଶ ମଧ୍ୟରେ ଲାଳିତପାଳିତ ଶିଶୁର ଶାରୀରିକ ବିକାଶ ମଧ୍ୟ ଦ୍ରୁତତର ହୁଏ । ଶାରୀରିକ ବିକାଶ ପାଇଁ କେବଳ ଉତ୍ତମ ଖାଦ୍ୟ ଯଥେଷ୍ଟ ନୁହେଁ । ଅନୁଭବର ପରିସର ମଧ୍ୟ ବ୍ୟାପକ ହେବା ଉଚିତ । ଛୋଟ ଆକାରର ପରିବାରରେ ବଢୁଥିବା ପିଲାମାନେ ବଡ଼ ଆକାରର ପରିବାରର ପିଲାମାନଙ୍କ ତୁଳନାରେ ଅଧିକ ସୁଯୋଗ ପାଆନ୍ତି । ଅନ୍ୟପକ୍ଷରେ ବହୁତ ଗୁଡ଼ିଏ ପିଲାପିଲି ଥିବା ପରିବାରରେ ଶିଶୁମାନେ ଉନ୍ନତ ପରିବେଶ ଓ ଉଚ୍ଚତର ସୁବିଧା ସୁଯୋଗ ପାଇନଥାନ୍ତି । ଅନେକ ସମୟରେ ଗୋଟିଏ ପିଲାକୁ ଥଣ୍ଡା କାଶ ଛାଡ଼ିବା ପରେ ପରେ ଅନ୍ୟ ଶିଶୁଟି ଏଥିରେ ଆକ୍ରାନ୍ତ ହୁଏ । ଶିଶୁପାଳନ ବେଳେ ମଧ୍ୟ ଏପରି ସମସ୍ୟା ସୃଷ୍ଟି ହୁଏ । ଶିଶୁର ଯତ୍ନକାରୀ କେତୋଟି ଦିଗ ପ୍ରତି ସତର୍କତାମୂଳକ ପଦକ୍ଷେପ ନେଇ ଶିଶୁମାନଙ୍କର ଅସୁସ୍ଥତାର ସମ୍ଭାବନାକୁ ଅଧାଅଧି କମାଇ ପାରିବେ । ଶୌଚାଳୟ ବ୍ୟବହାର ପରେ ପରେ ଶିଶୁମାନଙ୍କର ଧୁଆଇବାର ଶିକ୍ଷା ଦେବା ଏବଂ ଖାଇବା ପୂର୍ବରୁ ହାତ ଧୋଇବା ଶିଶୁମାନଙ୍କୁ ତାଲିମ ଦେବା ଏ ଧରଣର ସତର୍କତା । ସାଧାରଣ ପରିଷ୍କାର ପରିଚ୍ଛନ୍ନତା ରକ୍ଷା

କରିବାର ତାଲିମ ଦେଲେ ଶିଶୁ କେତେକ ସମସ୍ୟା ଏଡ଼ାଇ ଯାଆନ୍ତି । ପିତାମାତା ଓ ଯତ୍ନକାରୀମାନଙ୍କର ଏପରି ସମୟୋଚିତ ତାଲିମ ଶାରୀରିକ ସୁସ୍ଥତା ରକ୍ଷାରେ ସହାୟକ ହୁଏ ।



(ବିକାଶର ଉନ୍ମେଷ)

ଗୁଣାତ୍ମକ ପରିବେଶର ଅଭାବ ବ୍ୟତୀତ ପିତାମାତାଙ୍କର ମାନସିକ ଚାପ ମଧ୍ୟ ଶିଶୁର ଶାରୀରିକ ବିକାଶକୁ କ୍ଷତିଗ୍ରସ୍ତ କରେ । ପରିବାରରେ କୌଣସି ବ୍ୟକ୍ତି ଦୀର୍ଘଦିନ ଧରି ପୀଡ଼ିତ ରହିବା, କୌଣସି ଆତ୍ମୀୟସ୍ୱଜନଙ୍କ ମୃତ୍ୟୁ, ଚାକିରୀରେ ବଦଳି, ଗୋଟିଏ ଭଡ଼ାଘର ଛାଡ଼ି ଅନ୍ୟ ଭଡ଼ାଘରକୁ ଯିବା ଏବଂ ଆର୍ଥିକ କ୍ଷତି ସବୁ ଗୋଟିଏ ଗୋଟିଏ ଚାପକ । ସର୍ବକ୍ଷେଣରୁ ଦେଖାଯାଇଛି ଯେ, ବାରଟି କିମ୍ବା ତଦୁର୍ଦ୍ଧ୍ୱ ଚାପର ଶରବ୍ୟ ହୋଇଥିବା ପରିବାରର ପିଲାମାନେ ଚାରୋଟି କିମ୍ବା ତା'ଠାରୁ କମ୍ ସଂଖ୍ୟକ ଚାପର ଶୀକାର ହେଉଥିବା ପରିବାରର ପିଲାମାନଙ୍କ ତୁଳନାରେ ଅଧିକ ରୋଗରେ ପଡ଼ନ୍ତି । ଥଣ୍ଡାକାଶ ଓ ସର୍ଦ୍ଦି ପରି ସାଧାରଣ ରୋଗ ସବୁ ଚାପଗ୍ରସ୍ତ ପରିବାରରେ ବେଶୀ ଲାଗିରହେ ।

ମାନସିକ ଚାପର ଶରବ୍ୟ ହୋଇ ପିତାମାତା ଓ ଅଭିଭାବକ ପିଲାମାନଙ୍କ ପ୍ରତି କେତୋଟି ଦାୟିତ୍ୱ ଭୁଲିଯାଆନ୍ତି । ଠିକ୍ ସମୟରେ ସେମାନଙ୍କୁ ଖାଇବାକୁ ଦେବା, ପିଲାମାନେ ଶୌଚାଳୟ ବ୍ୟବହାର କଲାପରେ ସେମାନଙ୍କୁ ପରିଷ୍କାର ପରିଚ୍ଛନ୍ନ ରଖିବାରେ ସାହାଯ୍ୟ କରିବା ଏବଂ ପିଲାମାନଙ୍କୁ ସ୍ୱାସ୍ଥ୍ୟସୂଚକ ପରାମର୍ଶ ଦେବାରେ ଅବହେଳା କରନ୍ତି । ଏପରି ଅବହେଳା ଇଚ୍ଛାକୃତ ନହେଲେ ମଧ୍ୟ

ଏସବୁ ଶାରୀରିକ ବିକାଶରେ ବାଧା ସୃଷ୍ଟି କରେ । ପରିବାରର ଦାରିଦ୍ର୍ୟ ଶିଶୁର ଶାରୀରିକ ବିକାଶ କ୍ଷେତ୍ରରେ ଯଥେଷ୍ଟ ବାଧା ସୃଷ୍ଟିକରେ । ଦାରିଦ୍ର୍ୟ ଫଳରେ ଶିଶୁ ଠିକ୍ ସମୟରେ ଏବଂ ଠିକ୍ ଭାବରେ ଖାଦ୍ୟ ପାଇନଥାଏ । ଏହା ତାହାର ଶାରୀରିକ ଅଭିବୃଦ୍ଧିକୁ ବ୍ୟାହତ କରେ । ଦୀର୍ଘଦିନ ଧରି ଭଲ ଖାଦ୍ୟ ନ ପାଇବା ଫଳରେ ଶରୀରର କେତେକ ଆଭ୍ୟନ୍ତରୀଣ ଅଂଶ ତାହାର ସ୍ୱଭାବସୁଲଭ କାର୍ଯ୍ୟକୁଶଳତା ହରାଇଥାଏ । ପରବର୍ତ୍ତୀ ସମୟରେ ଭଲ ଖାଦ୍ୟ ଦେଲେ ମଧ୍ୟ ପାକସ୍ଥଳୀ ସହଜରେ ତାହାକୁ ଗ୍ରହଣ କରି ତାହାକୁ ଉପଯୋଗ କରିବାର ସାମର୍ଥ୍ୟ ନଥାଏ । ପୁଷ୍ଟିହୀନତା ଫଳରେ କେତେକ ସମସ୍ୟା ସୃଷ୍ଟିହୁଏ । ଦାରିଦ୍ର୍ୟର ବଳୟ ମଧ୍ୟରେ ଥିବା ପିଲାମାନେ ଠିକ୍ ସମୟରେ ରୋଗ ପ୍ରତିରୋଧକ ଇଞ୍ଜେକ୍ସନ ମଧ୍ୟ ପାଇନଥାନ୍ତି ।

ଦାରିଦ୍ର୍ୟ ସହିତ ବାସଗୃହର ଅଭାବ ସମସ୍ୟାକୁ ଜଟିଳତର କରେ । ଘର ନଥାଇ ପଦାରେ ବୁଲୁଥିବା ଏବଂ ଏଠି ସେଠି ଖାଉଥିବା ପିଲାମାନଙ୍କର ବିକାଶ ଯଥେଷ୍ଟ ବାଧାପ୍ରାପ୍ତ ହୁଏ । ଶାରୀରିକ କ୍ଷତି ସହିତ ଏମାନଙ୍କର ବିକଶିତ ଅସ୍ୱାଭାବିକତା ଏବଂ ବ୍ୟବହାରଗତ ସମସ୍ୟା ସୃଷ୍ଟି ହେବାର ଯଥେଷ୍ଟ ସମ୍ଭାବନା ରହିଛି । ଏ ଦୃଷ୍ଟିରୁ ଶାରୀରିକ ବିକାଶ ପାଇଁ କେବଳ ଖାଦ୍ୟ ଓ ସ୍ୱଚ୍ଛଳତା ପ୍ରତି ଦୃଷ୍ଟି ସୀମିତ ନ ରଖି ଅନ୍ୟ କେତୋଟି ଦିଗ ପ୍ରତି ସଚେତନ ରହିବା ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଯୁକ୍ତିଯୁକ୍ତ ହେବ ।



# ଶିଶୁ ଦକ୍ଷତାର ବିକାଶ

ଶିଶୁ ଦକ୍ଷତାର ବିକାଶ ସହିତ ଜଡ଼ିତ ପ୍ରଶ୍ନମାନ ସବୁ ସମାଜରେ ଓ ସବୁ ସମୟରେ ମନୁଷ୍ୟ ମନରେ ଆଲୋଡ଼ନ ସୃଷ୍ଟି କରିଛି । କି ପ୍ରକାର ଶିଶୁପାଳନ ବ୍ୟବସ୍ଥା ଶିଶୁ ଦକ୍ଷତାକୁ ତ୍ୱରାନ୍ୱିତ କରେ ସେ ସମ୍ପର୍କୀୟ ଅନିଶ୍ଚିତତା ଓ ବାଦ ବିସମ୍ବାଦର ତୀବ୍ରତା ଦିନକୁ ଦିନ ବୃଦ୍ଧି ପାଇଛି । ଏହା ମୂଳରେ କେତୋଟି କାରଣ ରହିଛି । ପ୍ରଥମତଃ ସମୟକ୍ରମେ ପିଲାମାନଙ୍କୁ ପିତାମାତାଙ୍କ ଆଶାକାଂକ୍ଷାର ପ୍ରତୀକରୂପେ ବିଚାର କରାଯାଉଛି । ସମାଜରେ ପିତାମାତାଙ୍କ ସାମାଜିକ ଆସନର ସୂଚକ ରୂପେ ଗ୍ରହଣ କରାଯାଉଛି । ପିତାମାତା ଯେଉଁସବୁ ଶିକ୍ଷାସୁଯୋଗରୁ ବଞ୍ଚିତ ହୋଇଥିଲେ ସେପରି ଶିକ୍ଷାସୁଯୋଗ ଗ୍ରହଣ କରିବାରେ ପିଲାଟିକୁ ସକ୍ଷମ କରିବା ଏବଂ ପରିପୂର୍ଣ୍ଣ ହୋଇନଥିବା ସ୍ୱାଚ୍ଛନ୍ଦ୍ୟ ଯୋଗାଇବା ପାଇଁ ପିଲାଟିକୁ ପାରଙ୍ଗମ କରିବା ଦିଗରେ ପିତାମାତାଙ୍କର ଉଦ୍ୟମ ଅବ୍ୟାହତ ରହୁଛି । ଶିଶୁଦକ୍ଷତାର ବିକାଶ ଓ ଶିଶୁର ସମ୍ମାନ ଲାଭରେ ପ୍ରାୟ ପ୍ରତି ଅଭିଭାବକ ପ୍ରସନ୍ନତା ପ୍ରକାଶ କରନ୍ତି ।

ଦ୍ୱିତୀୟତଃ ପିତାମାତାଙ୍କର ମନରେ ଦୃଢ଼ ଧାରଣା ଜନ୍ମିଛି ଯେ ସେମାନେ ନିୟନ୍ତ୍ରଣ ନକଲେ ପାରିପାର୍ଶ୍ୱିକ ଅବସ୍ଥା ଶିଶୁଟିକୁ ନିଜମତେ ଅକାମି କରି ଛାଡ଼ି ଦେବ । ଶିଶୁ ସ୍ୱାଭାବିକ ଅସହାୟ ହୋଇଥିବାରୁ ନିଜକୁ ପରିବେଶର ପ୍ରଭାବରୁ ରକ୍ଷା କରିପାରିବ ନାହିଁ । ପରିବେଶର ଚାପ ଶିଶୁର କୋମଳ ମନ ଉପରେ ନିଜର ଛାୟା ବିସ୍ତାର କରି ଏହାକୁ ନିଜ ଅନୁସାରେ ରୂପ ଦେବ । ସୁତରାଂ ପିତାମାତାଙ୍କ ମନରେ ଶିଶୁକୁ ନିଜ ଅନୁସାରେ ଗଢ଼ିବା ପାଇଁ ତତ୍ପରତା ବୃଦ୍ଧିପାଉଛି । ଏ ତତ୍ପରତା ଯେତେବେଶି ବଢୁଛି ଶିଶୁପାଳନ ସମ୍ପର୍କରେ ନାନା ପ୍ରଶ୍ନ ନାନା ସନ୍ଦେହର ଲୁଚକାଳି ସେତେବେଶି ବୃଦ୍ଧିପାଉଛି ।

ମାନସିକ ଦ୍ୱନ୍ଦ୍ୱକୁ ତୀବ୍ର କରିବାରେ ସାମାଜିକ ଓ ସାଂସ୍କୃତିକ ପରିବର୍ତ୍ତନ ମଧ୍ୟ ଏକ ଭୂମିକା ଗ୍ରହଣ କରିଛି । ବୈଜ୍ଞାନିକ ଓ ବୈଷୟିକ ଉନ୍ନତି ଫଳରେ ଗତାନୁଗତିକ ଜୀବନଧାରାର ପରିବର୍ତ୍ତନ ଘଟିଛି । ଅମଲାତନ୍ତ୍ରର ପରିବ୍ୟାପ୍ତି ଜୀବନଯାତ୍ରାକୁ ପୃଥକ୍ ରୂପରେଖ ଦେଇଛି । ଜୀବନର ଗତିଶୀଳତା ଓ ମୂଲ୍ୟବୋଧର ଦ୍ରୁତ ପରିବର୍ତ୍ତନ ଫଳରେ ମନୁଷ୍ୟ ନିଜର ବ୍ୟକ୍ତିଗତ ନିୟନ୍ତ୍ରଣତା ଜାରି କରି ଘଟଣାର ଦିଗ ପରିବର୍ତ୍ତନ କରିବାରେ ସକ୍ରିୟ ହୋଇ ଉଠିଛି । ଫଳରେ କେଉଁ ପ୍ରକାର ଶିଶୁପାଳନ ବ୍ୟବସ୍ଥାରୁ ପିଲାମାନଙ୍କ ପାଇଁ ଉପଯୋଗୀ ଦକ୍ଷତାର ବିକାଶ ଘଟିବ—ସେ ପ୍ରଶ୍ନର ସମାଧାନ ଲାଗି ତା' ମନରେ ବ୍ୟାକୁଳତା ପ୍ରକାଶ ପାଇଛି । କେବଳ ପରିବାର ନୁହେଁ, ସ୍କୁଲ, ଧର୍ମାନୁଷ୍ଠାନ ଓ ସେବାନୁଷ୍ଠାନଗୁଡ଼ିକ ମଧ ଏ ଦିଗରେ ସକ୍ରିୟ ହୋଇ ପଡ଼ିଛନ୍ତି ।

କାରଣ ଯାହା ହେଉ ନା କାହିଁକି, ଏକ ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନର ସମାଧାନ ଦିଗରେ ବାଟ ଦେଖାଇବା ପାଇଁ ବହୁ ଦାୟିତ୍ୱଶୀଳ ବ୍ୟକ୍ତି, ଗୋଷ୍ଠୀ ଓ ଅନୁଷ୍ଠାନ ଉଦ୍ୟମ କରିଛନ୍ତି । ସମସ୍ତଙ୍କଠାରୁ ସମାନ ପ୍ରକାର ଉତ୍ତର ମିଳି ନାହିଁ । ଏପରିକି ଦୀର୍ଘଦିନ ଧରି ମନୋବିଜ୍ଞାନୀମାନେ ଏ ଦିଗରେ ଅନୁଶୀଳନ କରିଥିଲେ ହେଁ ସେମାନଙ୍କ ମଧ୍ୟରେ ମତଭେଦ ରହିଛି । ତଥାପି ମତଗୁଡ଼ିକ ପୃଥକ୍ ପୃଥକ୍ ଭାବରେ ଆଲୋଚନା ନ କରି ସେଗୁଡ଼ିକ ମୂଳରେ ଥିବା ଯୋଗସୂତ୍ରଟିକୁ ଚିହ୍ନଟ କରିପାରିଲେ ଯେଉଁ ଅଳ୍ପ କେତୋଟି ତଥ୍ୟର ପରିଚୟ ମିଳେ, ତାହାର କାର୍ଯ୍ୟକାରୀତା ଯଥେଷ୍ଟ ବେଶି ।

ଏହା ଅବଶ୍ୟ ସତ୍ୟ ଯେ ଶିଶୁ ଦକ୍ଷତାର ସହାୟକ ପାଳନ ବ୍ୟବସ୍ଥାକୁ ଏକ ଅପରିବର୍ତ୍ତିତ ନିୟମରୂପେ ଉପସ୍ଥାପନ କରିବାରେ କ୍ଷତିର ସମ୍ଭାବନା ରହିଛି । ଦେଶ ଭେଦରେ ଲାଳନପାଳନ ବ୍ୟବସ୍ଥାର କାର୍ଯ୍ୟକାରୀତା ଭିନ୍ନ ହୋଇଥାଏ । ତା' ଛଡ଼ା ଏକ ନିର୍ଦ୍ଦିଷ୍ଟ ଦେଶରେ ମଧ୍ୟ ପରିବାରର ସାମାଜିକ ସ୍ଥିତି, ଆର୍ଥିକ ଅବସ୍ଥା, ଈଶ୍ୱର ବିଶ୍ୱାସ, ପରିବାରର ଆକାର ଏବଂ ପିଲାଟିର ଜନ୍ମ କ୍ରମାନ୍ୱୟତା ଉପରେ ନିର୍ଭର କରି ଶିଶୁପାଳନର ପ୍ରଭାବଶୀଳତା ଭିନ୍ନ ଭିନ୍ନ ହୁଏ । ତଥାପି ଶିଶୁପାଳନର ଗୁରୁତ୍ୱ ଦୁଇଟି ଦିଗରେ ବହୁ ଗବେଷଣାରେ ସ୍ପଷ୍ଟ ହୋଇଛି ।

ସ୍ନେହ ମମତାର ଦିଗ :

ପିତାମାତାଙ୍କର ସ୍ନେହମମତା ବିଭିନ୍ନ ରୂପରେ ପ୍ରକାଶ ପାଇଥାଏ । ଏହାର ଗୋଟିଏ ପାର୍ଶ୍ୱରେ ଗଭୀର ଅନୁରାଗ ଏବଂ ଅନ୍ୟପାର୍ଶ୍ୱରେ ବିରକ୍ତି ଓ ଅନୁଭୂତିହୀନତା ପ୍ରକାଶପାଏ । ପିଲାଟି ପ୍ରତି ସ୍ନେହ ପ୍ରକାଶ କରିବାକୁ ଯାଇ ପିତାମାତା ପିଲାର ଦୋଷଗୁଣ ସମ୍ବେଦନଶୀଳତା ସହ ଗ୍ରହଣ କରନ୍ତି । ତାକୁ ବିଭିନ୍ନ କାର୍ଯ୍ୟରେ ଉତ୍ସାହ ଦିଅନ୍ତି, ତାକୁ କୋଳେଇ କାଖେଇ ଓ ଆଦରକରି ସ୍ନେହଶ୍ରଦ୍ଧା ଦର୍ଶାନ୍ତି ଏବଂ ବନ୍ଧୁରୂପେ ତା' ସହିତ ଖେଳାଖେଳି ମଧ୍ୟ କରନ୍ତି । ପିଲାମାନଙ୍କର ସାମୟିକ ଚାହିଦା ପ୍ରତି ସଚେତନ ହେବା ମଧ୍ୟ ସ୍ନେହଶ୍ରଦ୍ଧା ପ୍ରକାଶର ଏକ ସୂଚକ । ପିଲାମାନଙ୍କର ଉପସ୍ଥିତିରେ ଆନନ୍ଦ ପ୍ରକାଶ କରିବା ଏବଂ ସେମାନଙ୍କ କୃତିତ୍ୱ ପ୍ରଦର୍ଶନରେ ସେମାନଙ୍କୁ ପ୍ରୋତ୍ସାହନ ଦେବା ସ୍ନେହ ଶ୍ରଦ୍ଧାର ଅନ୍ତର୍ଭୁକ୍ତ ।

ଅନ୍ୟ ପାର୍ଶ୍ୱରେ ପିଲାଟି ପ୍ରତି ବିରକ୍ତି ମଧ୍ୟ ବିଭିନ୍ନ ରୂପରେ ପ୍ରକାଶପାଏ । ପିଲାଟି ଯାହା କହିଲେ ମଧ୍ୟ ତା' ପ୍ରତି ମାରଦ୍ଦୂର ଭାବ ପୋଷଣ କରିବା ଏହାର ଏକ ମୁଖ୍ୟ ରୂପ । ତା' ଛଡ଼ା ପିଲାଟିର ଚାହିଦା ପ୍ରତି ଆଦୌ ଦୃଷ୍ଟି ନ ଦେବା ଏବଂ ପିଲାଟିର ବୟସ ଯାହାହେଉନା କାହିଁକି ତାର ଯେ ମୂଲ୍ୟ ଓ ସମ୍ମାନ ରହିଛି- ଏ ଚିନ୍ତାପ୍ରତି ସଚେତନ ନ ହେବା ସ୍ନେହହୀନତାର ସୂଚକ । ଅନେକ କ୍ଷେତ୍ରରେ ସ୍ନେହଶ୍ରଦ୍ଧା ଅଭାବରୁ ପିଲା ଅବହେଳିତ ହୁଏ ଏବଂ ଦୁର୍ବ୍ୟବହାରର ଶରବ୍ୟ ହୁଏ ।

ଶିଶୁ ଦକ୍ଷତାର ବିକାଶ କ୍ଷେତ୍ରରେ ସ୍ନେହଶ୍ରଦ୍ଧାର ଗୋଟିଏ ଭୂମିକା ସରଳ ଏବଂ ସର୍ବସମ୍ମତ । ଅନ୍ୟ ଗୋଟିଏ ଦିଗ ଜଟିଳ ଏବଂ ଅନ୍ୟ ପ୍ରଶ୍ନସହ ଜଡ଼ିତ । ପ୍ରଥମେ ସରଳ ଦିଗଟି ବିଚାର କରାଯାଉ । ପ୍ରାୟ ସବୁ ମନୋବିଜ୍ଞାନୀ ମତ ଦେଇଛନ୍ତି ଯେ, ପିତାମାତାଙ୍କ ସ୍ନେହଶ୍ରଦ୍ଧା ଶିଶୁ ଦକ୍ଷତା ବିକାଶକୁ ତ୍ୱରାନ୍ୱିତ କରେ । ଏପରିକି ବହୁ ମନୋବୈଜ୍ଞାନିକ ପରୀକ୍ଷାରେ ଦର୍ଶାଯାଇଛି ଯେ ଖୁବ୍ ଅଳ୍ପ ବୟସରେ ପିତାମାତା ବା ଯତ୍ନକାରୀଙ୍କ ସ୍ପର୍ଶ ଏକ ବିଶିଷ୍ଟ ଜୈବିକ ଆବଶ୍ୟକତା । ପ୍ରଖ୍ୟାତ ମନୋବିଜ୍ଞାନୀ ହାର୍ଲୋ ଦୀର୍ଘଦିନଧରି ନବଜନ୍ମିତ ବିକାଶ ପର୍ଯ୍ୟବେକ୍ଷଣ କରି ପ୍ରମାଣ କରିଛନ୍ତି ଯେ ଅଳ୍ପ ବୟସରେ ସ୍ପର୍ଶଜନିତ ଶାରୀରିକ ଅନୁଭୂତି ମାନସିକ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରେ । ପରବର୍ତ୍ତୀକାଳୀନ ଶାରୀରିକ ଓ ସାମାଜିକ ବ୍ୟବହାର ବିକାଶରେ ସ୍ପର୍ଶଜନିତ ଅନୁଭୂତି ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିଏ । ପ୍ରକାରାନ୍ତରେ ଏପରି ସୁଯୋଗରୁ ବଞ୍ଚିତ ଶିଶୁର ସାମାଜିକ ବ୍ୟବହାରରେ ସ୍ୱଚ୍ଛନ୍ଦତା ପ୍ରକାଶ ପାଇ ନଥାଏ ।

ମଣିଷ ଶିଶୁ କ୍ଷେତ୍ରରେ ମଧ୍ୟ ଶାରୀରିକ ସଂସର୍ଗ ଓ ସ୍ପର୍ଶଜନିତ ଅନୁଭୂତିର ଗୁରୁତ୍ୱ ବହୁଭାବରେ ପ୍ରମାଣିତ ହୋଇଛି । ପିତାମାତା ଓ ଅନ୍ୟ ଯତ୍ନକାରୀର ସ୍ନେହଶ୍ରଦ୍ଧାରୁ ବଞ୍ଚିତ ହୋଇ ଅନାଥାଶ୍ରମରେ ପ୍ରତିପାଳିତ ଶିଶୁ ମାନଙ୍କର ମାନସିକ ପର୍ଯ୍ୟବେକ୍ଷଣ କରାଯାଇ ଏହାର ପ୍ରଭାବକୁ ସ୍ପଷ୍ଟ କରାଯାଇଛି ।

ସ୍ନେହ ପ୍ରକାଶର ଗୁରୁତ୍ୱ ବିଶେଷ ଭାବରେ ଉପଲବ୍ଧି କରାଯାଏ ଶିଶୁଟିକୁ ଲକ୍ଷ୍ୟ ସାଧନମୁଖୀ କରିବାରେ । ଦକ୍ଷ ଓ ଲକ୍ଷ୍ୟ ସାଧନମୁଖୀ ପିଲାମାନଙ୍କର ପିତାମାତାଙ୍କୁ ପର୍ଯ୍ୟବେକ୍ଷଣ କରି ଦେଖାଯାଇଛି ଯେ ଏପରି ଅଭିଭାବକମାନେ ସେମାନଙ୍କ ପିଲାମାନଙ୍କୁ ସ୍ୱାଧୀନତା ଶିକ୍ଷା ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ପ୍ରତି ପ୍ରକାଶ୍ୟ ଭାବରେ ସ୍ନେହ ଶ୍ରଦ୍ଧା ଦର୍ଶାନ୍ତି । ପିଲାଟି ନିଜର କୃତିତ୍ୱ କହୁଥିଲା ବେଳେ ମୁହଁରେ ହସ ଫୁଟାଇବା, ପିଲାଙ୍କୁ ଆଲିଙ୍ଗନ କରି ନିଜର ଆନନ୍ଦ ପ୍ରକାଶ କରିବା ଏବଂ ତାଙ୍କୁ ପ୍ରଶଂସା କରିବାର ବ୍ୟବହାର ପିତାମାତାଙ୍କଠାରେ ଦେଖାଯାଇଥାଏ । ପୁଣି ପିଲାମାନଙ୍କୁ ସେମାନଙ୍କ ଆଗାମୀ କର୍ମ ଯୋଜନାର ନକ୍ସା ଦେଲାବେଳେ ସେମାନଙ୍କୁ ପ୍ରସନ୍ନତାର ସହ ପିତାମାତା ସେଗୁଡ଼ିକ ବର୍ଣ୍ଣନା କରନ୍ତି ।

ସ୍ନେହ ଶ୍ରଦ୍ଧା ଫଳରେ ଶିଶୁ ମନରେ ପିତାମାତାଙ୍କ ପ୍ରତି ଯେଉଁ ଅନୁରକ୍ତି ଅଙ୍କୁରିତ ହୁଏ, ତାହାର ପ୍ରଭାବରେ ପିଲାମାନେ ପିତା କିମ୍ୱା ମାତା ଅଥବା ଉଭୟଙ୍କୁ ଆଦର୍ଶ (Model) କରି ସେମାନଙ୍କୁ ଅନୁକରଣ କରିବାରେ ପ୍ରବୃତ୍ତ ହୁଅନ୍ତି । ଫଳରେ ପିତାମାତା ଯେଉଁସବୁ ଶିକ୍ଷା ଦେବାର ଯୋଜନା କରନ୍ତି ସେଗୁଡ଼ିକର ଗ୍ରହଣଶୀଳତା ଯଥେଷ୍ଟ ବୃଦ୍ଧିପାଏ । ପିତାମାତା ଯେଉଁସବୁ ଦକ୍ଷତା

ଉପରେ ଗୁରୁତ୍ୱ ଦେଇ ସେଗୁଡ଼ିକର ନମୁନା ସ୍ୱଷ୍ଟରୂପେ ଉପସ୍ଥାପନ କରନ୍ତି ସେଗୁଡ଼ିକର ଅନୁସରଣ ଓ କାର୍ଯ୍ୟକରଣରେ ଶିଶୁ ଯଥେଷ୍ଟ ଆଗ୍ରହ ପ୍ରକାଶ କରେ ଏବଂ ଉଦ୍ୟମ ମଧ୍ୟ କରେ ।

ମୂଳତଃ ପିତାମାତାଙ୍କ ଅନୁରାଗ ଶିଶୁ ଦକ୍ଷତା ବିକାଶର ବିଶେଷ ସହାୟକ ହୋଇଥାଏ । କିନ୍ତୁ ଏହାର ଅର୍ଥ ନୁହେଁ ଯେ ପିଲାଟି ଯାହା କରୁଛି ତାହା ତାକୁ କରିବାକୁ ଛାଡ଼ି ଦେଇ ନିର୍ବିକାର ଭାବରେ ରହିଯିବା ଶିଶୁ ଦକ୍ଷତା ବିକାଶର ସହାୟକ ହେବ । ସେହିପରି ଖାମଖେୟାଲୀ ଭାବରେ ପିଲାର ସବୁକଥା ମାନିନେବା, ତାକୁ ସବୁବେଳେ ଅତ୍ୟଧିକ ଆଶ୍ରୟ ଦେଇ ଛୋଟ ଛୋଟ କଷ୍ଟକର ଅନୁଭୂତିରୁ ଦୂରରେ ରଖିବା ଏବଂ ଅଯଥା ପ୍ରଶଂସା କରିବାରେ ଯେଉଁ ଭାବାବେଗ ପ୍ରକାଶ ପାଏ ତାହା ଶିଶୁ ଦକ୍ଷତାର ବିକାଶରେ ଅନ୍ତରାୟ ସୃଷ୍ଟି କରିଥାଏ । ଏଇଟି ସ୍ନେହଶ୍ରଦ୍ଧା ପ୍ରକାଶର ଏକ ଜଟିଳ ଦିଗ । ଅନ୍ୟ ଭାଷାରେ କହିଲେ ଶିଶୁପ୍ରତି ସ୍ନେହଶ୍ରଦ୍ଧା ପ୍ରଦର୍ଶନ ଓ ଶିଶୁର ପରିଚାଳନା ଶୈଳୀ ଏକା କଥା ନୁହେଁ । ଶିଶୁ ପରିଚାଳନା ଶୈଳୀ ସ୍ନେହଶ୍ରଦ୍ଧା ପ୍ରକାଶ ସହିତ ସମ୍ପର୍କିତ ହେଲେ ମଧ୍ୟ ଏହା ଏକ ସ୍ୱତନ୍ତ୍ର ଦିଗ ।

ପରଚାଳନା ଶୈଳୀ :

ଶିଶୁ ପରିଚାଳନାର ଶୈଳୀ କହିଲେ କେଉଁପରି ଭାବରେ ଶିଶୁଟିକୁ ନିୟନ୍ତ୍ରଣ (Control) କରି ହେବ, ତାହାର ଶୈଳୀ ବୁଝାଇଥାଏ । ଅନେକଙ୍କର ଧାରଣା ଯେ, ଶିଶୁଟି ପ୍ରତି ଗଭୀର ସ୍ନେହଶ୍ରଦ୍ଧା ଦର୍ଶାଉଥିବା ପିତାମାତାମାନେ ଶିଶୁଟି ଉପରେ କୌଣସି ନିମନ୍ତ୍ରଣ ଜାରି କରନ୍ତି ନାହିଁ ଏବଂ ଶିଶୁଟି ପ୍ରତି ବିରକ୍ତି ଦର୍ଶାଉଥିବା ପିତାମାତା ଶିଶୁଟିକୁ ଅଧିକ ନିୟନ୍ତ୍ରଣ ମଧ୍ୟରେ ରଖନ୍ତି । କିନ୍ତୁ ଏହା ଠିକ୍ ନୁହେଁ । ସ୍ନେହଶ୍ରଦ୍ଧା ଦର୍ଶାଉଥିବା ପିତାମାତାଙ୍କ ପରିଚାଳନା ଭଙ୍ଗୀ ଦୁଇ ପ୍ରକାରର ହୋଇପାରେ । ସେମାନେ ଗଭୀର ସ୍ନେହଶ୍ରଦ୍ଧା ଦର୍ଶାଇବା ସଙ୍ଗେ ସଙ୍ଗେ ଶିଶୁର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ପ୍ରତି ସଚେତନ ହୋଇ ତାକୁ ବଡ଼ ହେବାରେ ସାହାଯ୍ୟ କରିପାରନ୍ତି । ଏ କ୍ଷେତ୍ରରେ ପିତାମାତା, ସହଯୋଗୀ ଓ ଗଣତାନ୍ତ୍ରିକ ଭାବରେ ଶିଶୁ ପାଇଁ ଉପଦେଶାବଳୀ ପ୍ରସ୍ତୁତ କରନ୍ତି ଏବଂ ଶିଶୁଟିର ସ୍ୱାଧୀନତା ଅତୁଟରଖି ଯେପରି ଏ ଦିଗରେ ଅଗ୍ରସର ହେବ ସେ ଦିଗ ପ୍ରତି ଧ୍ୟାନ ଦିଅନ୍ତି । ସାଧାରଣତଃ ସ୍ନେହଶ୍ରଦ୍ଧା ସହିତ ଏଭଳି ସମବେଦନାଶୀଳ ନିୟନ୍ତ୍ରଣର ସଂଯୋଗ ଘଟିଲେ ଶିଶୁ ଦକ୍ଷତାର ପ୍ରଭୂତ ବିକାଶ ଘଟେ ।

ଅନ୍ୟ ପକ୍ଷରେ ସ୍ନେହଶ୍ରଦ୍ଧା ଦର୍ଶାଉଥିବା ପିତାମାତା ଅନ୍ୟ ପ୍ରକାର ପରିଚାଳନାଶୈଳୀ ମଧ୍ୟ ପ୍ରୟୋଗ କରିପାରନ୍ତି । ଅତିବେଶି ନିୟନ୍ତ୍ରଣରେ ରଖିବାକୁ ଯାଇ ପିଲାମାନଙ୍କୁ ପ୍ରତି କଥାରେ 'ଏଇଟି କର ସେଇଟି କର ନାହିଁ'ର

ନିର୍ଦ୍ଦେଶ ଦେବା, ସେମାନଙ୍କୁ ନିଜର ବାହୁଛାୟାତଳେ ସଦାସର୍ବଦା ଘୋଡ଼ାଇ ରଖିବା ଏବଂ ଶିଶୁର ସ୍ୱାତନ୍ତ୍ର୍ୟକୁ ପୁରାପୂରି ଭୁଲି ତାକୁ ନିଜ ନିୟନ୍ତ୍ରଣରେ ରଖିବା ଇତ୍ୟାଦି ଦକ୍ଷତା ବିକାଶରେ ଅନ୍ତରାୟ ସୃଷ୍ଟି କରେ ।

ଠିକ୍ ସେହିପରି ଶିଶୁ ପ୍ରତି ସ୍ନେହଶ୍ରଦ୍ଧା ନଥିବା (କିମ୍ବା ବିରକ୍ତି ରଖିଥିବା) ପିତାମାତାଙ୍କର ପରିଚାଳନା ଶୈଳୀ ଉପରୋକ୍ତ ଦୁଇ ପ୍ରକାର ହୋଇପାରେ । ପ୍ରଥମ ଶୈଳୀର ବଶବର୍ତ୍ତୀ ହୋଇ ସେମାନେ ଶିଶୁକୁ ସମୟ ନ ଦେଇ, ପାରିବାରିକ କାର୍ଯ୍ୟକ୍ରମରୁ ଦୂରେଇ ରଖି ପିଲାକୁ ସ୍ୱାଧୀନତା ଦେଲେ ମଧ୍ୟ ଶିଶୁର ସ୍ୱାଧୀନତା କେଉଁ ଦିଗରେ ଗତି କରିବ ସେଥିରେ ନିଶ୍ଚିତତା ନଥାଏ । ଫଳରେ ସୁଫଳ ଅପେକ୍ଷା ବହୁ କ୍ଷେତ୍ରରେ ସମସ୍ୟା ସୃଷ୍ଟି ହୁଏ ।

ପରିଶେଷରେ ସ୍ନେହଶ୍ରଦ୍ଧା ବିହୀନ ପିତାମାତା ଦ୍ୱିତୀୟ ପ୍ରକାର ପରିଚାଳନା ଶୈଳୀରେ ଶିଶୁଟି ପ୍ରତି ମନଇଚ୍ଛା ଅଯଥା ବହୁସଂଖ୍ୟକ କଡ଼ାକଡ଼ି ନିୟମ ଓ ନିୟନ୍ତ୍ରଣ ଜାରି କରିଥାନ୍ତି । ଶିଶୁମାନଙ୍କୁ ବହୁକ୍ଷେତ୍ରରେ ଶାସ୍ତି ମଧ୍ୟ ଦିଆଯାଏ । ଶିଶୁମାନେ ନିୟମ ବହିର୍ଭୂତ କାମ କଲେ ସେମାନଙ୍କୁ ଦଣ୍ଡ ଦିଆଯାଏ । ଏପରି କ୍ଷେତ୍ରରେ ଶିଶୁର ଶିକ୍ଷାସୁଯୋଗ ଓ ବିଚାର କ୍ଷମତା ବହୁଭାବରେ ବିପର୍ଯ୍ୟସ୍ତ ହୋଇ ଦକ୍ଷତା ବିକାଶରେ ବାଧା ସୃଷ୍ଟି ହୋଇଥାଏ ।

ମୋଟଉପରେ ଶିଶୁ ଲାଳନପାଳନ ବ୍ୟବସ୍ଥାରେ ସ୍ନେହଶ୍ରଦ୍ଧା ଓ ପରିଚାଳନାରେ ଯେଉଁ ପୃଥକ୍ ଭୂମିକା ରହିଛି ସେଥିପ୍ରତି ସଚେତନଶୀଳତା ଏକ ମୌଳିକ ତତ୍ତ୍ୱ । ଶିଶୁ ଦକ୍ଷତାର ବିକାଶ ପାଇଁ ପ୍ରଚୁର ସ୍ନେହଶ୍ରଦ୍ଧାର ଭୂମିକା ରହିଛି ଏବଂ ଏଗୁଡ଼ିକର ପ୍ରକାଶ୍ୟ ବ୍ୟବହାର ଖୁବ୍ ଉପଯୋଗୀ । ଏହା ସହିତ ଗଣତାନ୍ତ୍ରିକ ପଦ୍ଧତିରେ ଶିଶୁର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତାକୁ ସମ୍ମାନ ଦେଇ ଏକ ସମ୍ବେଦନଶୀଳ ପରିପ୍ରେକ୍ଷୀରେ ଶିଶୁକୁ ଉପଦେଶାବଳୀ ଦେଲେ ସେଗୁଡ଼ିକର କାର୍ଯ୍ୟକାରିତା ବୃଦ୍ଧି ପାଇଥାଏ । ଅନ୍ୟ ଭାଷାରେ କହିଲେ ସ୍ନେହଶ୍ରଦ୍ଧା ସୂଚାଇବା ସଙ୍ଗେ ସଙ୍ଗେ ଶିଶୁର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତାକୁ ସମ୍ମାନ ଦେଇ ନିୟନ୍ତ୍ରଣ ଜାରି କରିବା ପ୍ରକ୍ରିୟାରେ ଶିଶୁ ଦକ୍ଷତାର ସୁସମଞ୍ଜସ ବିକାଶ ଘଟେ । ଗତିଶୀଳ ଜୀବନ ସହିତ ସମନ୍ୱୟ ରକ୍ଷା କରିବାକୁ ନିଜର ସନ୍ତାନସନ୍ତତିମାନଙ୍କର ଦକ୍ଷତା ବିକାଶର ପରିକଳ୍ପନା ଏକ ଜଟିଳ କାର୍ଯ୍ୟକ୍ରମ । ସ୍ନେହଶ୍ରଦ୍ଧା ପୂର୍ଣ୍ଣ ଏବଂ ପରିଚାଳନା ଭଙ୍ଗୀରେ ସ୍ୱାତନ୍ତ୍ର୍ୟ ଉପଲବ୍ଧି କରି ଏ ଦିଗରେ ଉପଯୋଗୀ ପଦକ୍ଷେପ ନିଆଯାଇପାରିବ ।



# ଶିଶୁର ଦକ୍ଷତା ବିକାଶରେ ମା'ର ଭୂମିକା

ଶିଶୁର ଦକ୍ଷତା ତିନୋଟି ଦିଗରୁ ବିଚାର କରାଯାଇପାରେ । ପ୍ରଥମତଃ ଶିଶୁର ମାନସିକ ଓ ଶାରୀରିକ ବିକାଶ । ନବ ଜନ୍ମିତ ଶିଶୁ ପ୍ରାଥମିକ ଅବସ୍ଥାରେ ଅସହାୟ ଓ ଅସମର୍ଥ ଥାଏ । ଏଭଳି ଅବସ୍ଥାରେ ଶିଶୁର ଦୃଷ୍ଟି ଆକର୍ଷଣ କରୁଥିବା ବସ୍ତୁଟି ପାଖରେ ଶିଶୁ ପହଞ୍ଚିପାରେ ନାହିଁ କି ବସ୍ତୁଟିର ଅବଧାରଣା କରିପାରେ ନାହିଁ । ପରବର୍ତ୍ତୀ କାଳରେ ଶିଶୁର ଦ୍ରୁତଗତି, ନିୟନ୍ତ୍ରଣ ଏବଂ ବସ୍ତୁଜଗତ ସହିତ କାରବାର ବୃଦ୍ଧିପାଏ । ଶିଶୁ ଦକ୍ଷତାର ଦ୍ୱିତୀୟ ଦିଗଟି ହେଉଛି ତାହାର ସମବୟସୀ ଶିଶୁମାନଙ୍କ ତୁଳନାରେ ତା'ର କାର୍ଯ୍ୟ ଦକ୍ଷତା । ପ୍ରତି ସମାଜରେ ଗୋଟିଏ ତିନି ମାସର ଶିଶୁ, ଚାରିମାସର ଶିଶୁ, ପାଞ୍ଚମାସର ଶିଶୁ ଏବଂ ପ୍ରତି ବୟସର ଶିଶୁ କିଭଳି କାର୍ଯ୍ୟସବୁ କରିପାରନ୍ତି, ତା'ର ଏକ ମୋଟାମୋଟି ଧାରଣା ଥାଏ । ଏହି ଧାରଣା ତୁଳନାରେ ଗୋଟିଏ ନିର୍ଦ୍ଦିଷ୍ଟ ଶିଶୁର କାର୍ଯ୍ୟଧାରା କେଉଁ ସ୍ତରର, ତା'ଉପରେ ନିର୍ଭର କରି ଏକ ନିର୍ଦ୍ଦିଷ୍ଟ ଶିଶୁର ଦକ୍ଷତା ବିଚାର କରାଯାଏ ।

ଶିଶୁ ଦକ୍ଷତାର ଆଉ ଗୋଟିଏ ସୂକ୍ଷ୍ମ ଦିଗ ରହିଛି । ନିଜର କ୍ରିୟାକଳାପ ମାଧ୍ୟମରେ ଶିଶୁ, ନିଜ ନିକଟସ୍ଥ ପରିବେଶ ମଧ୍ୟରୁ ଚାହିଦାଗୁଡ଼ିକ କିପରି ହାସଲ କରୁଛି ତାହା ମଧ୍ୟ ବିଚାର୍ଯ୍ୟ । ନିଜର ନିୟନ୍ତ୍ରଣ ଜାରି କରି ପରିବେଶକୁ ଆବଶ୍ୟକମତେ ପରିବର୍ତ୍ତନ କରି ଯେଉଁ ଶିଶୁ ଯେତେ ବେଶି ପ୍ରଭାବ ସୃଷ୍ଟି କରିପାରେ, ତା'ର ସେତେ ବେଶି ଦକ୍ଷତା ସୂଚିତ ହୁଏ । ଏ ଦୃଷ୍ଟିରୁ ସେ କେତେବେଳେ ଏବଂ କିପରି ଭାବରେ ଖାଦ୍ୟଦ୍ରବ୍ୟ ପାଉଛି, ନିଜର ଚାହିଁବା ଅନୁସାରେ ସାଙ୍ଗସାଥୀମାନଙ୍କର ସଂସର୍ଗ ପାଉଛି କି ନାହିଁ, ନିଜର ପ୍ରିୟ ବସ୍ତୁଟିକୁ ଦେଖିବା ବା ତା'ର ଶବ୍ଦ ଶୁଣିବାରେ ସୁଯୋଗ ଇଚ୍ଛା ଅନୁସାରେ ପାଉଛି କି ନାହିଁ, ଏହା ଉପରେ ନିର୍ଭର କରି ଶିଶୁର ଦକ୍ଷତା ସ୍ଥିର କରାଯାଏ । ମୋଟ ଉପରେ ନବଜନ୍ମିତ ଶିଶୁର ଅସହାୟତା ଧୀରେ ଧୀରେ କମେ ଏବଂ ନିକଟସ୍ଥ ପରିବେଶରେ ସେ ଧୀରେ ଧୀରେ ନିଜର ନିୟନ୍ତ୍ରଣ ଜାରି କରେ । ଅଧିକ ଦକ୍ଷତାସମ୍ପନ୍ନ ଶିଶୁମାନେ ଏପରି ନିୟନ୍ତ୍ରଣ ଅଧିକ ବେଗରେ କାର୍ଯ୍ୟକାରୀ କରନ୍ତି ।

ଶିଶୁ ଦକ୍ଷତାର ଏହି ତୃତୀୟ ବିଚାରଟି ଶିଶୁ ଜନନୀ ମଧ୍ୟରେ ପାରସ୍ପରିକ ଯୋଗାଯୋଗର ତାତ୍ପର୍ଯ୍ୟପୂର୍ଣ୍ଣ ଦିଗ ଉପରେ ଗୁରୁତ୍ୱ ଆରୋପ କରେ । ସବୁ ଶିଶୁ ଜନ୍ମବେଳେ ଅସହାୟ ଅବସ୍ଥାରେ ଥାଆନ୍ତି । ମାତ୍ର ଶିଶୁଟି ଏକ ସମ୍ବେଦନଶୀଳ ମା'ର ସଂସର୍ଗ ପାଇଲେ ତା'ର ନିୟନ୍ତ୍ରଣ କ୍ଷମତା କ୍ରମଶଃ ବୃଦ୍ଧିପାଏ । ଶିଶୁ ନିଜର କାନ୍ଦିବା, ହାତଗୋଡ଼ ହଲାଇବା ଇତ୍ୟାଦି ମାଧ୍ୟମରେ ଯେଉଁସବୁ ସଙ୍କେତ ଦିଏ,

ସମ୍ବେଦନଶୀଳ ମା' ସେସବୁ ସଙ୍କେତକୁ ଗ୍ରହଣ କରି ସେହି ଅନୁସାରେ ନିଜର ବ୍ୟବହାର ବ୍ୟକ୍ତ କଲେ ଶିଶୁର ନିୟନ୍ତ୍ରଣ କ୍ଷମତା ଧୀରେ ଧୀରେ ବୃଦ୍ଧିପାଏ । ଅନ୍ୟପକ୍ଷରେ ଶିଶୁ ବ୍ୟବହାର ଅନ୍ତରାଳରେ ଥିବା ସଙ୍କେତ ସବୁକୁ ଉପେକ୍ଷା କରି ମା' ନିଜର ଇଚ୍ଛା ମୁତାବକ ବ୍ୟବହାର ଦର୍ଶାଇଲେ ଶିଶୁର ନିୟନ୍ତ୍ରଣ କ୍ଷମତା ହ୍ରାସ ପାଏ । ପରିବେଶ ଉପରେ ଶିଶୁଟି ଯେ ପ୍ରଭାବ ପକାଇପାରିବ—ଏ ବିଶ୍ୱାସବୋଧ ଶିଶୁଟି ପାଇଁ ଖୁବ୍ ଉପଯୋଗୀ । ଶିଶୁ ଦର୍ଶାଉଥିବା ସଙ୍କେତଗୁଡ଼ିକ ପ୍ରତି ଧ୍ୟାନ ଦେଉଥିବା ମା' ଶିଶୁର ଏ ବିଶ୍ୱାସବୋଧ ଦୃଢ଼ କରନ୍ତି ଏବଂ ଶିଶୁର ମାନସିକ ଓ ଶାରୀରିକ ବିକାଶକୁ ତ୍ୱରାନ୍ୱିତ କରନ୍ତି । ପ୍ରଭାବଶୀଳତା ବୃଦ୍ଧିପାଉଥିବା ସମ୍ପର୍କରେ ଶିଶୁର ବିଶ୍ୱାସବୋଧ ଦୁଇଟି ଭାବରେ କାର୍ଯ୍ୟ କରେ । ପ୍ରଥମତଃ, ଶିଶୁର ବିଶ୍ୱାସ ହୁଏ ଯେ ସେ ବାହ୍ୟ ପରିବେଶରେ କେତେକ ପରିବର୍ତ୍ତନ ସୃଷ୍ଟି କରିପାରିବ । ଦ୍ୱିତୀୟତଃ, ଶିଶୁର ମଧ୍ୟ ବିଶ୍ୱାସ ଜନ୍ମେ ଯେ ସେ ଅନ୍ୟମାନଙ୍କ ବ୍ୟବହାରରେ ପରିବର୍ତ୍ତନ ଆଣିପାରିବ ଏବଂ ଅନ୍ୟମାନଙ୍କ ମନରେ ସହଯୋଗମୂଳକ ମନୋଭାବ ସୃଷ୍ଟି କରିପାରିବ । ଶିଶୁ ନିଜର ବ୍ୟବହାର ମାଧ୍ୟମରେ ନିଜର ମା'ଠାରୁ ଯେଉଁ ସହଯୋଗ ପାଏ, ତାହା ଶିଶୁର ଆସ୍ଥା ବୃଦ୍ଧି କରେ । ସେ ଅନ୍ୟମାନଙ୍କର ସାହାଯ୍ୟ ସହଯୋଗ ପାଇବା ପାଇଁ ଅନ୍ୟମାନଙ୍କ ବ୍ୟବହାର ମଧ୍ୟ ସୃଷ୍ଟି କରିପାରିବ ବୋଲି ଶିଶୁର ବିଶ୍ୱାସ ଦୃଢ଼ ହୁଏ । ସୁତରାଂ ସହଯୋଗୀ ସହାନୁଭୂତି ସମ୍ପନ୍ନ ଜନନୀ ଶିଶୁର ପ୍ରଭାବଶୀଳତା ବୃଦ୍ଧି କରିବାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରନ୍ତି । ଶିଶୁ ମନରେ ଦକ୍ଷତାର ମନୋଭାବ ଏବଂ ଆତ୍ମବିଶ୍ୱାସ ଅଙ୍କୁରିତ ହୋଇ ଜନନୀର ଅନୁକୂଳ ସହାୟତା ମଧ୍ୟରେ ସମୃଦ୍ଧ ହୁଏ । ଏ ପ୍ରକ୍ରିୟା ଆରମ୍ଭ ହେଲାପରେ ଶିଶୁର ଶାରୀରିକ ଏବଂ ମାନସିକ ବିକାଶ ସମନ୍ୱୟ ରକ୍ଷା କରି ପ୍ରସାରିତ ହେବାକୁ ଲାଗେ ।

ଶିଶୁ ମନର ସାମାଜିକ ବିକାଶର ଏକ ମୁଖ୍ୟ ବିଭବ ହେଉଛି ଯଥାର୍ଥ ଯୋଗାଯୋଗ । ଶିଶୁ ଓ ମା' ମଧ୍ୟରେ ଯେଉଁ ଯୋଗାଯୋଗ ସ୍ଥାପିତ ହୁଏ ତାହା ମୂଳଭିତ୍ତି ସ୍ଥାପନ କରେ । ପ୍ରଥମେ ଶିଶୁଟି କାନ୍ଦ ସାହାଯ୍ୟରେ ନିଜର ମା'କୁ ପାଖକୁ ଆଣିବାକୁ ଚେଷ୍ଟା କରିଥାଏ । ଶିଶୁର କାନ୍ଦ ଶୁଣି ମା' ଶିଶୁର ପାଖକୁ ନଗଲେ କିମ୍ବା ଶିଶୁର କାନ୍ଦକୁ ପୁରାପୁରି ଉପେକ୍ଷା କଲେ ଶିଶୁର ଅନ୍ୟସବୁ ସଂକେତ ପ୍ରଦର୍ଶନ କରିବାର ଇଚ୍ଛା କମିଯାଏ । ଜଣେ ସମ୍ବେଦନଶୀଳ ମା' ଶିଶୁର ସବୁ ପ୍ରକାର ସଙ୍କେତର ତାତ୍ପର୍ଯ୍ୟ ବୁଝି ଅନୁରୂପ ବ୍ୟବହାର ଦର୍ଶାନ୍ତି । କିନ୍ତୁ ପ୍ରାଥମିକ ସ୍ତରରେ ଶିଶୁର କାର୍ଯ୍ୟପ୍ରତି ଅନୁକୂଳ ମନୋଭାବ ଦର୍ଶାଇବା ଆବଶ୍ୟକ ହୋଇପଡ଼େ ।

ଅବଶ୍ୟ ଏହାର ଅର୍ଥ ନୁହେଁ ଯେ, ଖୁବ୍ ଛୋଟ ବୟସରେ ଶିଶୁ କାନ୍ଦିବା ସମୟରେ ଶିଶୁଟି ଯୋଗାଯୋଗ ସ୍ଥାପନ ପାଇଁ ନିଜର ମନୋଭାବ ପ୍ରକାଶ କରେ । ହୁଏତ ସେ ଅକାରଣରେ କାନ୍ଦିଥାଇପାରେ । ମାତ୍ର ନିଜର କାନ୍ଦ ଏବଂ ମା'ର

ସଂସର୍ଗ ଲାଭ ଦୁଇଟିର କ୍ରମ ମିଳନ ଫଳରେ ଶିଶୁଟି ନିଜର ଅଭିପ୍ରାୟ ଧୀରେ ଧୀରେ ବୁଝିବାକୁ ଶିକ୍ଷାକରେ । ପରବର୍ତ୍ତୀ ସମୟରେ ଶିଶୁ ନିଜର ଚାହିଦା ଦର୍ଶାଇବାକୁ ଭିନ୍ନ ଭିନ୍ନ ସଂକେତର ପ୍ରୟୋଗ କରେ । ସ୍ଥୂଳତଃ ଶିଶୁର କାନ୍ଦ ସମେତ ଅନ୍ୟାନ୍ୟ ସଙ୍କେତଗୁଡ଼ିକ ପ୍ରତି ମା'ର ଅଭିନିବେଶ ଓ ଅନୁକୂଳ ବ୍ୟବହାର ପ୍ରଦର୍ଶନ ଶିଶୁ ଓ ମା' ମଧ୍ୟରେ ଏକ ଦୃଢ଼ ସଂଯୋଗ ପ୍ରତିଷ୍ଠା କରେ । ଏକ ପ୍ରଭାବଶୀଳ ସଂଯୋଗ ଶିଶୁର ଶାରୀରିକ ଓ ସାମାଜିକ ବିକାଶକୁ ତ୍ୱରାନ୍ୱିତ କରେ ।

ଶିଶୁ ତା'ର ନିକଟସ୍ଥ ଭୌତିକ ପରିବେଶକୁ ନିୟନ୍ତ୍ରଣ କରିବାର ଯେଉଁ ଦକ୍ଷତା ଲାଭକରେ ତାହା ତିନୋଟି ଉପାୟରେ ମା'ଠାରୁ ଶିକ୍ଷା ଲାଭକରେ । ପ୍ରଥମତଃ, ମା' ଶିଶୁକୁ କୋଳରେ ଧରିଥିବାବେଳେ ବା କାଖେଇଥିବା ସମୟରେ ନିଜର ଅଙ୍ଗଚାଳନା ପରିବର୍ତ୍ତନ କଲାବେଳେ ଶିଶୁଟିର ମଧ୍ୟ ଅନୁରୂପ ସ୍ଥିତି ପରବର୍ତ୍ତିତ ହୁଏ । ଶିଶୁଟି ଧୀରେ ଧୀରେ ନିଜ ମୁଣ୍ଡ ଓ କାନ୍ଧରେ ସମନ୍ୱୟ ରକ୍ଷା କରିବାକୁ ପ୍ରଥମେ ଶିଖେ ଏବଂ ପରେ ପରେ ନିଜର ଗତିଶୀଳତା ବୃଦ୍ଧିକରେ । ପରବର୍ତ୍ତୀ ସମୟରେ ନିକଟସ୍ଥ ପରିବେଶର ଅନ୍ୱେଷଣ ଆରମ୍ଭ କରେ ଏବଂ ଚଲାବୁଲା କରି ବାହ୍ୟ ଜଗତର ବସ୍ତୁସବୁ ନିରୀକ୍ଷଣ କରେ । ବିଶେଷତଃ ମା' ସହିତ ଶିଶୁର ଖେଳାବୁଲା ଶିଶୁର ଅନୁସନ୍ଧିତ୍ସା ବୃଦ୍ଧିକରେ ଏବଂ ଭୌତିକ ଜଗତର ବସ୍ତୁସବୁ କାରବାର କରିବା ମାଧମରେ ଶିଶୁ ନିଜର ଦକ୍ଷତା ବୃଦ୍ଧିକରେ ।

ଦ୍ୱିତୀୟତଃ, ମା' ଶିଶୁ ସହିତ ଖେଳାବୁଲା କରିପାରୁ ନଥିବା ସମୟରେ ମଧ୍ୟ ଶିଶୁର ଅନୁଭୂତିର ବିସ୍ତୃତି ପାଇଁ ସୁଯୋଗ ସୃଷ୍ଟି କରିପାରନ୍ତି । ଶିଶୁକୁ ଦୃଷ୍ଟି ଆକର୍ଷକ ବସ୍ତୁ ଦେଇ, ଶିଶୁ ହାତ ଦୁଇଟିର ଚାଳନା ପାଇଁ କିଛି ଯୋଗାଇ ଦେଇ ଏବଂ ସୁରକ୍ଷା ବିପନ୍ନ ନ କରି ଶିଶୁକୁ କିଛି ବିସ୍ତୃତ ଜାଗାଦେଇ ମା' ଶିଶୁ ଅନୁଭୂତିର ଗୁଣାତ୍ମକ ଦିଗପ୍ରତି ଦୃଷ୍ଟି ଦେଇପାରନ୍ତି । ଏପରି ସୁଯୋଗ ଲାଭ କରି ଶିଶୁ ନିଜ ପରିବେଶର କୌତୂହଳପୂର୍ଣ୍ଣ ବସ୍ତୁଗୁଡ଼ିକର ଅନ୍ୱେଷଣ କରିବାର ଅନୁଭୂତି ଲାଭ କରେ ଏବଂ ଭୌତିକ ପରିବେଶ ଉପରେ ନିଜର ନିୟନ୍ତ୍ରଣ ଜାରି କରିବାର କୌଶଳ ଶିକ୍ଷା କରେ ।

ତୃତୀୟତଃ, ମା' ସହିତ ଶିଶୁର ଅନୁଭୂତି ପରୋକ୍ଷଭାବରେ ଶିଶୁମନରେ ଆତ୍ମବିଶ୍ୱାସ ସଞ୍ଚାର କରେ ଏବଂ ପୃଥିବୀର ଅନ୍ୟମାନଙ୍କ ସହିତ ସେ ଉପଯୋଗୀ କାରବାରରେ ଭାଗନେଇପାରିବ ବୋଲି ଆତ୍ମପ୍ରତ୍ୟୟ ସୃଷ୍ଟି ହୁଏ । ଏ ବିଶ୍ୱାସର ଦୁଇଟି ଦିଗ ରହିଛି—ମା' ଉପରେ ବିଶ୍ୱାସ ଓ ନିଜ ଉପରେ ବିଶ୍ୱାସ । ମା' ଉପରେ ଶିଶୁର ଯେଉଁ ପ୍ରାଥମିକ ବିଶ୍ୱାସ ଗଢ଼ିଉଠେ ତାହା ଶିଶୁକୁ ବାହ୍ୟଜଗତର ଅନ୍ୱେଷଣରେ ଉତ୍ସାହ ଦିଏ । ମା' ସହିତ ପାରସ୍ପରିକ କ୍ରିୟାକଳାପ ଫଳରେ ଶିଶ ମନରେ ନିଜ ଉପରେ ଯେଉଁ ଆତ୍ମବିଶ୍ୱାସ ଅଙ୍କୁରିତ ହୁଏ, ତାହା ଶିଶୁ ମନରେ

ଏକ ଦକ୍ଷତା ମନୋଭାବ ସୃଷ୍ଟି କରେ । ଶିଶୁଟି କିଛି କଲାପରେ ତା'ର ପ୍ରତ୍ୟାଶିତ ଫଳାଫଳ ପାଇବାର ଅନୁଭୂତି ଯେତେ ବେଶି ମାତ୍ରାରେ ଘଟେ, ସେ ସେତେ ଅଧିକ ସାହସରେ ନୂଆ ନୂଆ ବସ୍ତୁ, ନୂତନ ବ୍ୟକ୍ତି ପ୍ରତି ନିଜର ଆଭିମୁଖ୍ୟତା ଦର୍ଶାଏ । ଅନ୍ୟଭାଷାରେ କହିଲେ ଶିଶୁର ବ୍ୟବହାର ଓ ବାହ୍ୟଜଗତର ଘଟଣା ଭିତରେ ଥିବା ସମ୍ପର୍କକୁ ଠିକ୍ ଭାବରେ ବୁଝିବା ଓ ଅନୁଭବ କରିବାର ସୁଯୋଗ ଶିଶୁ ପ୍ରଥମେ ଶିକ୍ଷା କରେ ନିଜର ମା'ର ବ୍ୟବହାର ମାଧ୍ୟମରେ । ସୁତରାଂ ମା'ର ବ୍ୟବହାର ପ୍ରବଣତା ଓ ଶିଶୁ ପାଳନର ଗୁଣାତ୍ମକ ଦିଗ ବହୁଳ ଭାବରେ ଶିଶୁ ଦକ୍ଷତାକୁ ସମୃଦ୍ଧ କରେ ।

ଶିଶୁ ଦକ୍ଷତାରେ ମା'ର ଭୂମିକା ବିଚାର କଲାବେଳେ ଗୋଟିଏ ପ୍ରଶ୍ନ ବେଶ ତାତ୍ପର୍ଯ୍ୟପୂର୍ଣ୍ଣ । ତାହା ହେଉଛି ମା'ର କେଉଁ ପରିମାଣର ଅନୁରାଗ (attachment) ଏବଂ କେଉଁ ପରିମାଣର ସ୍ୱାଧୀନତା ପ୍ରଦାନ ଶିଶୁର ଦକ୍ଷତା ବୃଦ୍ଧି କରେ ? ବହୁ ସ୍ଥଳରେ ଏ ଦୁଇଟି ଅପାତତଃ ପରସ୍ପର ବିରୋଧୀ ହୋଇଥିବାରୁ ଏ ପ୍ରଶ୍ନଟି ବେଶି ଆଲୋଡ଼ନ ସୃଷ୍ଟି କରେ । ପୂର୍ବ ଆଲୋଚନା ଅନୁଯାୟୀ ମା'ର ସମ୍ବେଦନଶୀଳତା ଶିଶୁର ଦକ୍ଷତାର ସହାୟକ । ପୁଣି ଶିଶୁର କ୍ରୀଡ଼ା ଓ ଅନ୍ୱେଷଣମୁଖୀ ବ୍ୟବହାର ମଧ୍ୟ ଦକ୍ଷତାର ଅନୁକୂଳ । ଗବେଷଣାରୁ ଦେଖଯାଇଛି ମା' ଶିଶୁଟିକୁ କେତେ ପରିମାଣରେ ଅଭିନିବେଶ (attention) ଦେବେ ଏବଂ କେତେ ପରିମାଣରେ ସ୍ୱାଧୀନ ଅନ୍ୱେଷଣକୁ ଉତ୍ସାହ ଦେବେ ?—ଏହାର ପରିମାଣାତ୍ମକ ଦିଗ ସେପରି ଗୁରୁତ୍ୱପୂର୍ଣ୍ଣ ନୁହେଁ । ତାତ୍ପର୍ଯ୍ୟପୂର୍ଣ୍ଣ ହେଉଛି ଏ ଦୁଇଟି ମଧ୍ୟରେ ଭାରସାମ୍ୟ ।

ମା'ର ଅଭିନିବେଶ ଓ ସ୍ୱାଧୀନତା ପ୍ରଦାନର ସହଜ ସ୍ୱଚ୍ଛନ୍ଦ ଗତି ବେଶି ଗୁରୁତ୍ୱପୂର୍ଣ୍ଣ । ଅନୁରାଗ ଓ ଅଭିନିବେଶ ଅବସ୍ଥାରୁ ମା' କିପରି ସହଜ ସ୍ୱାଭାବିକ ଭାବରେ ସ୍ୱାଧୀନତା ପ୍ରଦାନ ଅବସ୍ଥାର ପରିବର୍ତ୍ତନ ଆଣନ୍ତି ତାହା ଖୁବ୍ ପ୍ରଭାବ ପକାଇଥାଏ । ସ୍ନେହ, ଆଦର ଓ ସମୟ ଦେଇ ପିଲାଟିର କଥା ବୁଝୁଥିବା ମା' ପାଖରେ ଶିଶୁଟି ନିଜ ଇଚ୍ଛାରେ କିଛି କରିବା ପାଇଁ ବା ବାହ୍ୟ ପରିବେଶର ଅନ୍ୱେଷଣ କରିବାର ଇଚ୍ଛା ପ୍ରକାଶ କଲେ କେହି କେହି ମା' ହଠାତ୍ ରାଗିଯାଆନ୍ତି ଓ ବିରୋଧ ପ୍ରକାଶ କରନ୍ତି । ଏପରି ସ୍ଥଳରେ ଅବସ୍ଥାର ପରିବର୍ତ୍ତନ ସହଜ ସୁଗମ ନୁହେଁ । ମାତ୍ର ଶିଶୁପ୍ରତି ଅନୁରାଗ ଏବଂ ଶିଶୁ ସ୍ୱାଧୀନ ମନୋଭାବ ପ୍ରତି ଗୁରୁତ୍ୱର ପ୍ରାଧାନ୍ୟ ବୁଝି ଶିଶୁକୁ ସ୍ନେହ ବୁଝାମଣା ଦେବା ସଙ୍ଗେ ସଙ୍ଗେ ତା'ର ଅନ୍ୱେଷଣମୁଖୀ ଚାଲିଚଳନକୁ ଉତ୍ସାହ ଦେଲେ ଶିଶୁଦକ୍ଷତାର ଏକ ସୁସମଞ୍ଜସ ବିକାଶ ଘଟେ ।



# ପିଲାମାନଙ୍କୁ ଉଚ୍ଚାକାଂକ୍ଷୀ କରିବେ କିପରି ?

ନିଜର ସନ୍ତାନ ସନ୍ତତିମାନଙ୍କୁ ଉଚ୍ଚାକାଂକ୍ଷୀ କରିବା ବହୁ ପିତାମାତା ଓ ଅଭିଭାବକମାନଙ୍କର ସ୍ୱପ୍ନ । ମଣିଷ ନିଜର କୃତିତ୍ୱରେ ଯେପରି ଆନନ୍ଦିତ ହୁଏ, ପୁତ୍ରକନ୍ୟାଙ୍କର ସଫଳତାରେ ସେପରି ଅଧିକ ଉଲ୍ଲସିତ ହୁଏ । ପରୀକ୍ଷାରେ ପ୍ରଥମ ହୋଇଥିବା ଛାତ୍ର ବା କ୍ରୀଡ଼ା ପ୍ରତିଯୋଗିତାରେ ପ୍ରଥମ ହୋଇଥିବା ଛାତ୍ରର ପିତା ବା ମାତା ରୂପେ ନିଜକୁ ପରିଚୟ ଦେଇ ସମ୍ମାନ ଲାଭ କରିବାକୁ କିଏ ବା ନ ଚାହେଁ ? କିନ୍ତୁ ବହୁ ସମୟରେ ଏ ସ୍ୱପ୍ନ ସାର୍ଥକ ହୁଏନାହିଁ । ସଙ୍ଗଦୋଷରୁ ହେଉ ବା ଉପଯୁକ୍ତ ନିୟନ୍ତ୍ରଣର ଅଭାବରୁ ହେଉ, ପିଲାମାନେ ବାପମା'ଙ୍କର ଆଶା ଅନୁଯାୟୀ ନିଜକୁ ତିଆରି କରି ପାରନ୍ତି ନାହିଁ ।



(ସଫଳତାର ସ୍ୱୀକୃତି)

"ପିଲାମାନଙ୍କୁ କର୍ମଠ, ପରିଶ୍ରମୀ ଓ ଉଚ୍ଚାକାଂକ୍ଷୀ କରି ଗଢ଼ି ତୋଳିବା କଷ୍ଟକର ହେଲେ ମଧ୍ୟ ସମ୍ପୂର୍ଣ୍ଣ ଅସମ୍ଭବ ନୁହେଁ । ପିଲାମାନଙ୍କର ମାନସିକ ବିକାଶ ନିର୍ଭର କରେ କେତେକ ବଂଶାନୁଗତ ଗୁଣ ଓ ପରିବେଷ୍ଟନୀ ଉପରେ । ବିଶେଷତଃ ପରିବେଷ୍ଟନୀର ପ୍ରଭାବ ଖୁବ୍ ବେଶୀ । ପରିବେଶର ପ୍ରଭାବରେ ପିଲାଟି ଦୁଷ୍ଟ ହୋଇପାରେ, ପୁଣି ପରିବେଶର ପ୍ରଭାବରେ ଅସାଧାରଣ ଗୁଣସମ୍ପନ୍ନ ହୋଇପାରେ । ବାଲ୍ୟକାଳରେ ପିତାମାତାଙ୍କ ସହିତ ପିଲାଟିର ସଂପର୍କ, କଥାବାର୍ତ୍ତା ଓ ଭାବର ଆଦାନ ପ୍ରଦାନ ପିଲାଟିର ମାନସିକ ବିକାଶକୁ ନିୟନ୍ତ୍ରଣ କରେ । ଏ ଦୃଷ୍ଟିରୁ ପିଲାଟିକୁ ଉଚ୍ଚାକାଂକ୍ଷୀ କରି ଗଢ଼ି ତୋଳିବାକୁ ହେଲେ ପିତାମାତାଙ୍କର ଏକ ଗୁରୁ ଦାୟିତ୍ୱ ରହିଛି । ପିଲାମାନଙ୍କୁ ଉଚ୍ଚାକାଂକ୍ଷୀ କରିବାକୁ ହେଲେ ବିଶେଷ କରି ତିନୋଟି ଦିଗପ୍ରତି ଦୃଷ୍ଟି ଦେବାକୁ ହେବ ଏବଂ ସେ ଦିଗରେ

ଚେଷ୍ଟା କରିବାକୁ ହେବ । ପିଲାମାନଙ୍କର ମନ ସମ୍ପର୍କରେ ଦେଶ ବିଦେଶରେ ଯେଉଁ ସମସ୍ତ ଗବେଷଣା ହୋଇଛି, ଏ ତିନୋଟି ସେସବୁ ଅନୁଶୀଳନର ଫଳ । ଏ କ୍ଷେତ୍ରରେ ମନୋବିଜ୍ଞାନୀମାନଙ୍କର ଦାନ ସୁସ୍ପଷ୍ଟ ।

**ସ୍ନେହ ସହାନୁଭୂତିର ପ୍ରକାଶ :**

ପିଲାମାନଙ୍କୁ ଖୋଲାଖୋଲି ଭାବରେ ସ୍ନେହ ଦେଖାଇବାରେ ପିତାମାତାଙ୍କ ମଧ୍ୟରେ ବିଶେଷ ତଫାତ୍ ଦେଖାଯାଏ । କେତେକ ପିତାମାତା ତାଙ୍କ ଘରକୁ କେହି ଅତିଥି ଆସିବା ମାତ୍ରେ ନିଜ ପୁତ୍ର କନ୍ୟାଙ୍କର ସୁଗୁଣ ବଖାଣି ବସନ୍ତି । ପିଲାଟି ସେଠାରେ ଉପସ୍ଥିତ ଥିଲେ ତାହାର ସୁଗୁଣ ଅଧିକ ବୟାନ କରନ୍ତି । ଏପରି ପିତାମାତାମାନେ କେବଳ ଭାଷାରେ ନୁହେଁ, ଅନ୍ୟ ପ୍ରକାରରେ ମଧ୍ୟ ନିଜ ଭାବର ଆଧିକ୍ୟ ଦେଖାନ୍ତି । ପିଲାର କୃତିତ୍ୱ ପାଇଁ ତାକୁ ତା'ର ପ୍ରିୟ ବସ୍ତୁ କିଣିଦେବା, ବେଶୀ ହାତ ଖର୍ଚ୍ଚ ଯୋଗାଇ ଦେବା ଓ ଏପରିକି ରେଡ଼ିଓ ଆଦି ଦାମିକା ଜିନିଷ କିଣିଦେବା ପର୍ଯ୍ୟନ୍ତ ଆଗେଇ ଯାଆନ୍ତି । ଅନ୍ୟ ପକ୍ଷରେ କେତେକ ବାପ-ମା' ନିଜ ପୁତ୍ରକନ୍ୟାଙ୍କର ଯେ କିଛି ସୁଗୁଣ ଅଛି, ଏ କଥା ଭାବି ପାରନ୍ତି ନାହିଁ । ଘରକୁ ଆଗନ୍ତୁକ ଆସିଲା ମାତ୍ରେ ପିଲାଟିର ଦୁର୍ଗୁଣ କହି ବସନ୍ତି । ଅନ୍ୟମାନଙ୍କ ସମ୍ମୁଖରେ ପୁତ୍ରକନ୍ୟାଙ୍କୁ ତିରସ୍କାର କରନ୍ତି, ଏପରିକି ଶାରୀରିକ ଦଣ୍ଡ ମଧ୍ୟ ଦିଅନ୍ତି ।

ପ୍ରକୃତରେ ଦେଖା ଯାଇଛି ଯେ, ଏ ଦୁଇଟିଯାକ ପନ୍ଥା ପିଲାଟିର କ୍ଷତି କରେ । ପିଲାଟି ମନରେ ଉଚ୍ଚ ଅଭିଳାଷ ସୃଷ୍ଟି କରିବାକୁ ହେଲେ ପରିମିତ ପରିମାଣରେ ସ୍ନେହ ପ୍ରଦର୍ଶନ କରିବାକୁ ହେବ । ପିଲାଟି ସ୍କୁଲ୍‌ରୁ ଫେରି ଶ୍ରେଣୀରେ ଦ୍ୱିତୀୟ କିମ୍ୱା ତୃତୀୟ ହୋଇଛି କହିବା ମାତ୍ରେ ନିଜ ମୁଖରେ ହସ ଫୁଟାଇ ପିଲାଟିକୁ ଜଣାଇ ଦେବାକୁ ହେବ ଯେ ପିଲାଟି ବାପମା'ଙ୍କ ମନରେ ଆନନ୍ଦ ଦେଇଛି । ପିଲାଟିକୁ କୋଳାଇ ନେଇ ବା ପିଠି ଥାପୁଡ଼ାଇ ନିଜ ଆନନ୍ଦର ସଙ୍କେତ ଦିଆଯାଇ ପାରେ । ସ୍ନେହ ପ୍ରଦର୍ଶନ କ୍ଷେତ୍ରରେ ଦୁଇଟି ଜିନିଷ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରଥମଟି ହେଉଛି ପ୍ରକାଶ୍ୟ ଭାବରେ ସ୍ନେହ ସହାନୁଭୂତି ଦେଖାଇବାକୁ ହେବ । କେତେକ ଅଭିଭାବକ ଭାବନ୍ତି ଯେ ପିଲାର ଭଲ ଗୁଣ ପାଇଁ ତା' ସାମନାରେ ନିଜର ଆନନ୍ଦ ପ୍ରକାଶ କରିବା ବା ପ୍ରଶଂସା କରିବା କ'ଣ ଦରକାର ? କିନ୍ତୁ ଏହାର ମନସ୍ତାତ୍ତ୍ୱିକ ଆବଶ୍ୟକତା ରହିଛି । ପ୍ରକାଶ୍ୟ ଭାବରେ ପରିମିତ ପରିମାଣରେ ପ୍ରଶଂସା ଓ ଆଦର ପିଲାଟିକୁ ଉତ୍ସାହ ଦିଏ । ଏହା ଏକ ଶକ୍ତିଶାଳୀ ପୁରସ୍କାର ରୂପେ କାର୍ଯ୍ୟକରେ । ଦ୍ୱିତୀୟରେ ପ୍ରଶଂସା କଲାବେଳେ ଏକ ପ୍ରକାର ଭାରସାମ୍ୟ ରକ୍ଷା କରିବା ଉଚିତ । କେତେକ ପିତାମାତା ନିଜର ପୁଅ ଶ୍ରେଣୀରେ ତୃତୀୟ ହୋଇଛି ଶୁଣି ଆନନ୍ଦରେ ଅଧୀର ହୋଇ ଉଠନ୍ତି, ଭାବର ଆଧିକ୍ୟରେ କ'ଣ ନାହିଁ କ'ଣ

ପ୍ରଶଂସା କରି ଯାଆନ୍ତି । ଅନ୍ୟପକ୍ଷରେ କେତେକ ଅଭିଭାବକ କହନ୍ତି–"ପିଲା ଅଛନ୍ତି ଶ୍ରେଣୀରେ ପ୍ରଥମ ହେଉଛନ୍ତି ତୁମେ ତୃତୀୟ ସ୍ଥାନ ଅଧିକାର କରି କ'ଣ ବେଶୀ କରି ପକାଇଲ ?" ଏ ଉଭୟ ପ୍ରକାର ମନୋଭାବ ପିଲାଟିକୁ ନିରୁତ୍ସାହିତ କରେ । ପିଲାଟିକୁ ଶ୍ରେଣୀରେ ପ୍ରଥମ ହେବା ପାଇଁ ଆଶା ପ୍ରତ୍ୟାଶାର ବାଣୀ ଶୁଣାଇବା ସଙ୍ଗେ ସଙ୍ଗେ ତା'ର ତୃତୀୟ ସ୍ଥାନ ପାଇଁ ପ୍ରଶଂସା କରିବାକୁ ହେବ । ସ୍ନେହ ପ୍ରଦର୍ଶନର ଏ ଭାରସାମ୍ୟ ସୁସ୍ଥ ମାନସିକ ଅବସ୍ଥା ଗଠନରେ ସହାୟକ ହୁଏ ।

**ଉଚ୍ଚ ମାନଦଣ୍ଡର ସୂଚନା :**

ପିଲାମାନଙ୍କ ମନରେ ଉଚ୍ଚସଂକଳ୍ପ ସୃଷ୍ଟି କରିବାକୁ ହେଲେ ପିଲାମାନଙ୍କ ଲାଳନପାଳନ ବେଳେ ଅନ୍ୟ ଗୋଟିଏ ପନ୍ଥା ଗ୍ରହଣ କରିବାକୁ ହେବ । ଉଚ୍ଚ ସଙ୍କଳ୍ପ କହିଲେ ପ୍ରକୃତରେ କ'ଣ ବୁଝାଯାଏ ସେ ବିଷୟରେ ପିଲାଟି ଯେପରି ସ୍ୱଚ୍ଛ ଧାରଣା ପାଏ, ତାହା ଦେଖିବାକୁ ହେବ । ଅନ୍ୟ ଭାଷାରେ କହିଲେ ପିଲାମାନଙ୍କ ମନରେ ଉଚ୍ଚ ମାନଦଣ୍ଡର ଆଦର୍ଶ ବା ଉତ୍କର୍ଷର ଛବି ସୃଷ୍ଟି କରିବାକୁ ହେବ । ଆମେ ଜାଣୁ, ବହୁ ମହାପୁରୁଷମାନଙ୍କ ଜୀବନରେ ଦେଖାଯାଇଛି ଯେ, ବାଲ୍ୟକାଳରେ ସେମାନଙ୍କ ମନରେ ସାଧନା ପାଇଁ ମନୋଭାବ ସୃଷ୍ଟି ହୋଇଛି । ଶିବାଜୀଙ୍କର ମା' ବୀର ପୁରୁଷମାନଙ୍କର କାହାଣୀ କହି ଶିବାଜୀଙ୍କ ମନରେ ଅସାଧାରଣ ବୀରତ୍ୱ ପାଇଁ ମନୋବଳ ଯୋଗାଇଥିଲେ । ବହୁ ଇତିହାସ ପ୍ରସିଦ୍ଧ ଲୋକମାନଙ୍କର ଜୀବନରେ ସେମାନଙ୍କର ମା'ମାନଙ୍କର କହିଥିବା ପ୍ରେରଣାପୂର୍ଣ୍ଣ କଥାମାନ ପ୍ରଭାବ ସୃଷ୍ଟି କରିଥିଲା ।

ଜ୍ଞାନ, କ୍ରୀଡ଼ା, ନୃତ୍ୟ, ଗୀତ ବା ଅନ୍ୟାନ୍ୟ ଲଳିତ କଳାରେ ପାରଦର୍ଶିତା ଲାଭ କରିଥିବା ବ୍ୟକ୍ତିମାନଙ୍କର କଥା କହି ପିଲା ମନରେ ଆତ୍ମପ୍ରତ୍ୟୟ ସୃଷ୍ଟି କରିବା ଉଚିତ । ଗବେଷଣା କରି ଦେଖାଯାଇଛି ଯେ ପିଲାମାନେ କେତେକ ମହାପୁରୁଷଙ୍କ ଜୀବନୀ ଓ କାର୍ଯ୍ୟଧାରା ସମ୍ପର୍କରେ ପ୍ରେରଣା ଲାଭ କଲା ପରେ ଉକ୍ତ ମାନଦଣ୍ଡକୁ ନିଜ ମନରେ ରଖି ନିଜର କାର୍ଯ୍ୟଧାରା ତିଆରି କରନ୍ତି । ପିତା ମାତାମାନେ ପିଲାର ଏ ସୁଯୋଗକୁ ବଢ଼ାଇବା ସଙ୍ଗେ ସଙ୍ଗେ ନିଜେ ସକ୍ରିୟ ଭାଗ ନେଇ ପିଲାମାନଙ୍କୁ ଅନ୍ୟମାନଙ୍କର ସାଫଲ୍ୟର କାହାଣୀ ଓ ପାରଦର୍ଶିତାର କଥା ଶୁଣାଇବା ବାଞ୍ଛନୀୟ ।

**ସ୍ୱାଧୀନ ମନୋଭାବ ପାଇଁ ଶିକ୍ଷା :**

ଉପରୋକ୍ତ ଆଲୋଚିତ ଦୁଇଟି ମାର୍ଗ ବ୍ୟତୀତ ଆଉ ଗୋଟିଏ ପନ୍ଥା ଏ କ୍ଷେତ୍ରରେ ବେଶ୍ କାର୍ଯ୍ୟ କରେ । ପିଲା ପାଖରେ ନିଜର ସ୍ନେହ ଦେଖାଇବା ଓ ପିଲା ମନରେ ଉଚ୍ଚ ଭାବଧାରା ସୃଷ୍ଟି କରିବା ବ୍ୟତୀତ ତା' ମନରେ ସ୍ୱାଧୀନ

ମନୋଭାବ ସୃଷ୍ଟି କରିବାକୁ ହେବ ଏବଂ ତାକୁ ସ୍ୱାଧୀନ ଭାବରେ କାର୍ଯ୍ୟ କରିବା ପାଇଁ ଉତ୍ସାହ ଦେବାକୁ ହେବ । ଅନେକ ପିତାମାତା ନିଜ ପୁତ୍ରକନ୍ୟାଙ୍କୁ ସ୍ୱାଧୀନ ମନୋଭାବର ବିକାଶ ପାଇଁ ସୁଯୋଗ ଦିଅନ୍ତି ନାହିଁ । ପିଲାର ଜୋତାରେ ଫିତା ବାନ୍ଧିବାଠାରୁ ଆରମ୍ଭ କରି ସ୍କୁଲରେ ଛାଡ଼ିବା ପର୍ଯ୍ୟନ୍ତ ସବୁ କାର୍ଯ୍ୟ ପିତାମାତା କରନ୍ତି । ଧୀରେ ଧୀରେ ପିଲାଟିକୁ କାମ କରିବାରେ ସୁଯୋଗ ଦିଅନ୍ତି ନାହିଁ । ମାଆମାନଙ୍କର ନିଜ ସନ୍ତାନକୁ ପଣତକାନି ମଧ୍ୟରେ ବାନ୍ଧି ରଖିବାର ଅଭ୍ୟାସ ଶିଶୁର ମାନସିକ ବିକାଶରେ ବାଧା ସୃଷ୍ଟି କରେ ।

କେଉଁ ପିତା ମାତାମାନେ ଶିଶୁର ସ୍ୱାଧୀନ ମନୋଭାବ ବିକାଶକୁ ତ୍ୱରାନ୍ୱିତ କରନ୍ତି, କେତୋଟି ପ୍ରଶ୍ନ ପଚାରି ତାହା ସ୍ଥିର କରାଯାଇପାରେ । ବିଶେଷତଃ ମାଆମାନଙ୍କୁ କେତୋଟି ପ୍ରଶ୍ନ ପଚରାଯାଇପରେ, ଆପଣଙ୍କ ସନ୍ତାନର କେତେ ବର୍ଷ ବୟସ ବେଳେ ଆପଣ ତାକୁ ରାସ୍ତା ପାରି ହେବାକୁ ଅନୁମତି ଦେବେ ? ପିଲାର କେତେ ବର୍ଷ ବୟସ ବେଳେ ଆପଣ ତାକୁ କଇଁଚିରେ ଖେଳିବାକୁ ମନା କରିବେ ନାହିଁ ? ପିଲାର କେତେ ବର୍ଷ ବୟସ ବେଳେ ଆପଣ ତାକୁ ମହମବତୀ ଲଗାଇବାକୁ ମନା କରିବେ ନାହିଁ ? ଏହିପରି ପ୍ରଶ୍ନର ଉତ୍ତରରୁ ଜାଣି ହେବ କେଉଁ ମାଆମାନେ ପିଲାମାନଙ୍କୁ ସ୍ୱାଧୀନ କାର୍ଯ୍ୟକୁ ଉତ୍ସାହିତ କରନ୍ତି ବା ନାହିଁ । କେତେକ ପିତାମାତା ଅଳ୍ପ ବୟସରେ ପିଲାକୁ କିଛି କାମ କରିବାକୁ ସୁଯୋଗ ଦିଅନ୍ତି; ଯଦିଓ କେତେକ ସ୍ଥଳରେ କାମ କରିବା ଭିତରେ କିଛି କ୍ଷତିର ସମ୍ଭାବନା ଥାଏ ।

ପିଲାମାନଙ୍କୁ ସ୍ୱାଧୀନ ଭାବରେ କାମ କରିବାର ଶିକ୍ଷା ଦେବା ଏକ ବିଶିଷ୍ଟ ଦିଗ । ଅନେକ ସମୟରେ ପିଲାମାନଙ୍କୁ ଉପଦେଶ ଦେଇ କିଛି କିଛି କାମ କରିବାକୁ ସୁଯୋଗ ଦେବା ଉଚିତ । କୌଣସି କ୍ଷେତ୍ରରେ ପିଲାଟି କିଛି ଭୁଲ୍ କଲେ ମଧ୍ୟ ସେଥିରେ ବିରକ୍ତ ନ ହୋଇ ତ୍ରୁଟିଟି ସୁଧାରି ନେବାକୁ ବତାଇ ଦେବା ଉଚିତ । ଏହା ସଙ୍ଗେ ସଙ୍ଗେ ନୂଆ ନୂଆ କାମରେ ହାତ ଦେବାପାଇଁ ପ୍ରେରଣା ଓ ଶିକ୍ଷା ଦେବା ଖୁବ୍ ଭଲ କଥା । ମୋଟ୍ ଉପରେ ପିଲାଟି ନିଜର ମନୋବୃତ୍ତିରେ ଓ କାର୍ଯ୍ୟଧାରାରେ ଯେପରି ସ୍ୱାଧୀନ ମନର ପରିଚୟ ଦିଏ, ତାହା ପାଇଁ ସୁପରିକଳ୍ପିତ ଯୋଜନା ପିତାମାତା କରିବା ଉଚିତ ।

ପରିଶେଷରେ କୁହାଯାଇପାରେ ଯେ, ଆଲୋଚିତ ତିନୋଟି ମାର୍ଗ ପରସ୍ପରର ପରିପୂରକ ।



# ଶିଶୁକୁ କୁପ୍ରଭାବମୁକ୍ତ ରଖିବେ କିପରି ?

ଭୌଗଳିକ ଦୃଷ୍ଟିକୋଣରୁ ପୃଥିବୀ ବହୁ ପରିମାଣରେ ସଂକୁଚିତ ହୋଇଛି । ମନୁଷ୍ୟ ସମୟ ଓ ଦୂରତ୍ୱକୁ ଜୟ କରିବା ଫଳରେ ସମଗ୍ର ପୃଥିବୀ ଏକ ବିଶ୍ୱଗ୍ରାମର ରୂପ ନେଇଛି । କିନ୍ତୁ ବାହ୍ୟିକ ଉପାଦାନ ଓ ପ୍ରଭାବ ବହୁ ସଂପ୍ରସାରିତ ହୋଇଛି । ଉନବିଂଶ ଶତକ ଏବଂ ବିଂଶ ଶତକର ପ୍ରଥମ ଭାଗରେ ଜନ୍ମଲାଭ କରିଥିବା ଶିଶୁମାନେ ମୁଖ୍ୟତଃ ନିଜର ଗୃହ, ପିତାମାତା ଓ ବିଦ୍ୟାଳୟର ପ୍ରଭାବରେ ବିଶେଷ ଭାବେ ପ୍ରଭାବିତ ହେଉଥିଲେ । ବାହ୍ୟ ପ୍ରଭାବ ସେମାନଙ୍କୁ ଖୁବ୍ କମ୍ ସ୍ପର୍ଶ କରୁଥିଲା । ଫଳତଃ ପିତାମାତା ନିଜର ରୁଚି ଓ ଆଦର୍ଶ ଅନୁଯାୟୀ ସନ୍ତାନସନ୍ତତିମାନଙ୍କୁ ଯେପରି ଗଢୁଥିଲେ, ସେଥିରେ ସଂପୂର୍ଣ୍ଣ ସଫଳତା ମିଳୁ ନ ଥିଲେ ମଧ୍ୟ ଉଦ୍ୟମ ପୁରାପୁରି ବ୍ୟର୍ଥ ଯାଉନଥିଲା ।

ବର୍ତ୍ତମାନ ଆମେ ସମସ୍ତେ ଭିନ୍ନ ଏକ ପରିପ୍ରେକ୍ଷୀରେ ଜୀବନଯାପନ କରୁଛୁ । ନିଜର ଇଚ୍ଛା ଅନୁଯାୟୀ ଶିଶୁମାନଙ୍କୁ ଗଢ଼ିବାକୁ ଉଦ୍ୟମ କଲେ ମଧ୍ୟ ସଫଳତାର ମାତ୍ରା ସନ୍ତୋଷଜନକ ନୁହେଁ । ଏହି ବ୍ୟର୍ଥତାର କାରଣ ନିର୍ଣ୍ଣୟ କରିବା କଷ୍ଟକର ନୁହେଁ । ସାଙ୍ଗସାଥୀମାନଙ୍କର ଚାପ, ଦୂରଦର୍ଶନର ଆକର୍ଷଣ, ଅନ୍ୟ ଦେଶରେ ବସବାସ କରୁଥିବା ଲୋକମାନଙ୍କର ଜୀବନଧାରା ସହିତ ପରିଚିତି ଏବଂ ମୂଲ୍ୟବୋଧର ଘନଘନ ପରିବର୍ତ୍ତନ ପରି ବହୁ ବାହ୍ୟିକ ପ୍ରଭାବ ଶିଶୁକୁ ଆଲୋଡ଼ିତ ଓ ଆନ୍ଦୋଳିତ କରୁଛି । ଏହି ପରିପ୍ରେକ୍ଷୀରେ ନିଜର କଳ୍ପନା ଅନୁଯାୟୀ ଶିଶୁର ଭବିଷ୍ୟତ ଗଠନର ପରିକଳ୍ପନାର ବାଧାପ୍ରାପ୍ତ ହେବା ସ୍ୱାଭାବିକ । ଅନେକ ସମୟରେ ଶିଶୁ ବହୁ ବିବଦମାନ ଶକ୍ତି ମଧ୍ୟରେ ନିଜର ଭାରସାମ୍ୟ ହରାଇ କୁପଥଗାମୀ ହେଉଛି । ତାତ୍ପର୍ଯ୍ୟପୂର୍ଣ୍ଣ ପ୍ରଶ୍ନଟି ହେଉଛି—ଶିଶୁକୁ କୁପ୍ରଭାବମୁକ୍ତ ରଖାଯାଇ ପାରିବ କି ? ଆଧୁନିକ ମନୋବିଜ୍ଞାନ ଓ ବ୍ୟବହାର ବିଜ୍ଞାନର ଯେଉଁ ସମସ୍ତ ଗବେଷଣାଲବ୍ଧ ତଥ୍ୟ ମିଳିଛି, ସେସବୁକୁ ଆଧାର କରି ଶିଶୁ ପାଳନର ଏକ ସଂହିତା ପ୍ରସ୍ତୁତ କରାଯାଇପାରେ । ସେସବୁକୁ ଭିତ୍ତିକରି ଲାଳନପାଳନ ବ୍ୟବସ୍ଥା ଗ୍ରହଣ କରାଗଲେ ଶିଶୁକୁ କୁପ୍ରଭାବମୁକ୍ତ ରଖିବାର ସମ୍ଭାବନାକୁ ଯଥେଷ୍ଟ ବୃଦ୍ଧି କରାଯାଇପାରେ । ଗୋଟିଏ ପ୍ରବନ୍ଧର ସୀମିତ କଳେବର ମଧ୍ୟରେ ସମସ୍ତ ତଥ୍ୟର ଅବତାରଣା ସମ୍ଭବ ନ ହେଲେ ମଧ ମୁଖ୍ୟ କେତୋଟି ତାତ୍ପର୍ଯ୍ୟପୂର୍ଣ୍ଣ ଦିଗ ଉପରେ ଆଲୋକପାତ କରାଯାଇପାରିବ ।

ଉପଯୋଗୀ ଶିଶୁ ବିକାଶର ପ୍ରଥମ ଉପାଦାନଟି ହେଉଛି ସ୍ପର୍ଶ ଓ ସ୍ପର୍ଶଗତ ଅନୁଭୂତି । ପୂର୍ବରୁ ଧାରଣା ଥିଲା ଯେ, ଶିଶୁ ଓ ଜନନୀ ମଧ୍ୟରେ ଅନୁରାଗର ଯେଉଁ

ସେତୁ ନିର୍ମିତ ହୁଏ, ତାହା ଜନନୀର ଖାଦ୍ୟଦାତ୍ରୀର ଭୂମିକାକୁ କେନ୍ଦ୍ରକରି । ବିଶ୍ୱାସ କରାଯାଉଥିଲା ଯେ, ମା' ସନ୍ତାନକୁ କ୍ଷୁଧାବେଳେ ଖାଦ୍ୟ, ତୃଷାର୍ତ୍ତ ଥିବାବେଳେ ପାନୀୟ, ଗରମ ଓ ଶୀତବେଳେ ଅନୁରୂପ ସହାୟତା ଦେଉଥିବାରୁ ଶିଶୁ ମା' ପ୍ରତି ଅନୁରକ୍ତ ରହେ । କିନ୍ତୁ ଏବେ ଦେଖାଯାଉଛି ଯେ, ସମଗ୍ର ପ୍ରାଣୀଜଗତରେ ସନ୍ତାନ ଓ ପ୍ରତିପାଳକଙ୍କର ସମ୍ବନ୍ଧରେ ଏକ ମୁଖ୍ୟ ଆଧାର ହେଉଛି ସ୍ପର୍ଶ ଓ ସ୍ପର୍ଶ ଅନୁଭୂତି । ଶିଶୁର ଜନ୍ମ ପରେ ପରେ ସେ ମା' କୋଳରେ ଯେଉଁ ସାନ୍ନିଧ ଓ ଉଷ୍ଣତା ଲାଭ କରେ, ତାହା ଅନୁରାଗପୂର୍ଣ୍ଣ ସମ୍ବନ୍ଧକୁ ଦୃଢ଼ କରେ ।

ଜଣେ ମନୋବିଜ୍ଞାନୀ ମାଙ୍କଡ଼ ଛୁଆ ଜନ୍ମ ହେବା ପରେ ସେମାନଙ୍କୁ ଅନ୍ୟ ଗୋଟିଏ କୋଠରିକୁ ନେଇଗଲେ । ଦଳେ ମାଙ୍କଡ଼ଛୁଆକୁ ତାର ନିର୍ମିତ ମା' ମାଙ୍କଡ଼ ଓ ଦୁଗ୍ଧ ବୋତଲ ପାଖରେ ଛାଡ଼ିଦେଲେ । କହିବା ଅନାବଶ୍ୟକ ଯେ, କ୍ଷୁଧା ସମୟରେ ଏହି ମାଙ୍କଡ଼ ଛୁଆମାନେ ତାର ନିର୍ମିତ ମା'ଠାରୁ କ୍ଷୀର ପିଇ କ୍ଷୁଧା ନିବାରଣ କରନ୍ତି । ଅନ୍ୟ ଦଳର ମାଙ୍କଡ଼ଛୁଆଙ୍କୁ ଅନୁରୂପ କନା ନିର୍ମିତ ମା' ମାଙ୍କଡ଼ ପାଖରେ ଛଡ଼ାଗଲା ।

କୌତୁହଳର ବିଷୟ ଯେ, ଦୁଇ ଦଳର ମାଙ୍କଡ଼ ଛୁଆମାନେ ଉଦ୍ଦିଷ୍ଟ ମା'ମାନଙ୍କଠାରୁ କ୍ଷୀର ଖାଉଥିଲେ ମଧ୍ୟ ଶୋଇବା ସମୟରେ ସେମାନେ କନାନିର୍ମିତ ମା' ମାଙ୍କଡ଼ ପାଖକୁ ଆସି ଦେହକୁ ଲାଗି ଶୋଉଥିଲେ । କ୍ଷୁଧା ନ ଥିବା ସମୟରେ ସେମାନେ କନା ନିର୍ମିତ ମା' ମାଙ୍କଡ଼ ପାଖରେ ସମୟ କାଟୁଥିଲେ । କନା ପରି କୋମଳ ବସ୍ତୁ ସହିତ ସ୍ପର୍ଶ ଓ ସ୍ପର୍ଶଜନିତ ଆନନ୍ଦ ଏକ ଜନ୍ମଗତ ପ୍ରବୃତ୍ତି ପରି ମନେହେଲା । ମାଙ୍କଡ଼ଛୁଆମାନଙ୍କର ଅନୁରାଗ କନା ମା' ପ୍ରତି ଅଧିକ ବୋଲି ଏହି ସୂଚନାରୁ ଜଣାପଡ଼ିଲା ।

ଜନ୍ମ ପରେ ପରେ ଜନ୍ମିତ ଶିଶୁକୁ ସ୍ପର୍ଶ କରିବା, ଆଲିଙ୍ଗନ କରିବା ଏବଂ ତାକୁ ପରିଷାର କରିବା ମାଧମରେ ଘନ ଘନ ସ୍ପର୍ଶ କରିବା ଉଭୟ ଶିଶୁ ଓ ଜନନୀ ପାଇଁ ଏକ ମନସ୍ତାତ୍ତ୍ୱିକ ଆବଶ୍ୟକତା । ଏହାଦ୍ୱାରା ଅନୁରାଗର ନିବିଡ଼ତା ବୃଦ୍ଧି ପାଏ । ଅନୁରୂପ ଯତ୍ନକାରୀଙ୍କ ଶିକ୍ଷାକୁ ଗ୍ରହଣ କରିବା ପାଇଁ ମାନସିକତା ସୃଷ୍ଟି ହୁଏ । ପ୍ରୀତିପୂର୍ଣ୍ଣ ସ୍ପର୍ଶ ଓ ସଂସ୍ପର୍ଶ ମାଧମରେ କେବଳ ମା' ନୁହେଁ, ଅନ୍ୟ ଯତ୍ନକାରୀ ମଧ ଏହିପରି ଅନୁରାଗର ବଳୟ ସୃଷ୍ଟି କରିପାରିବେ । କିନ୍ତୁ ବାସ୍ତବ ଦୃଷ୍ଟିରେ ଜନ୍ମ ସମୟରେ ମା' ଉପସ୍ଥିତ ଥିବାରୁ ଏହା ଅଧିକ ସମ୍ଭବ ଓ ସକ୍ରିୟ ହୁଏ ।

ଶିଶୁକୁ କୁପ୍ରଭାବମୁକ୍ତ କରିବାର ଦ୍ୱିତୀୟ ଉପାଦାନଟି ହେଉଛି ଯତ୍ନକାରୀଠାରୁ ମିଳିଥିବା ସମ୍ବେଦନଶୀଳତା । ଜନ୍ମର ପରେ ପରେ ଶିଶୁ ନିଜର ମା' କିମ୍ବା ମୁଖ୍ୟ ଯତ୍ନକାରୀଙ୍କ ସହିତ ପାରସ୍ପରିକ କ୍ରିୟାକଳାପରେ ନିମଗ୍ନ ହୁଏ । ଶିଶୁର କ୍ଷୁଧା ସମୟରେ ମା' ଖାଦ୍ୟ ଦିଅନ୍ତି । ଶୀତ ହେଉଥିଲେ ବସ୍ତ୍ର ଦିଅନ୍ତି । ଏପରି ସବୁ

ଯୋଗାଯୋଗ ଫଳରେ ଶିଶୁଟି ଅନୁଭବ କରେ ଯେ, ବାହ୍ୟ ଜଗତରେ ଏକ ସ୍ଥିରତା ରହିଛି । ଏଠାରେ ଘଟୁଥିବା ଘଟଣାସବୁ ପୂର୍ବରୁ ଅନୁମାନ କରାଯାଇପାରିବ । ମୋଟ ଉପରେ ଶିଶୁ ପ୍ରତି ମା'ର ଅଭିନିବେଶ, ଦାୟିତ୍ୱଶୀଳତା ଓ ସମ୍ବେଦନଶୀଳତା ଶିଶୁର ବିଶ୍ୱାସବୋଧର ବିକାଶରେ ସହାୟକ ହୁଏ । ଶିଶୁର ମାତା ଶିଶୁର ଚାହିଦା ଲକ୍ଷ୍ୟ କରି ତା'ର ପରିପୂରଣରେ ଯେତେ ତତ୍ପର ହୁଅନ୍ତି, ଶିଶୁର ବିଶ୍ୱାସବୋଧ ସେତେ ବେଶୀ ଦୃଢ଼ ହୁଏ । ଏଥିରୁ ବୁଝିବାକୁ ହେବ ନାହିଁ ଯେ, ମା' ଶିଶୁର ସବୁ ଚାହିଦା ଯେ କୌଣସି ଉପାୟରେ ପୂରଣ କରିବା ଆବଶ୍ୟକ । କିମ୍ବା କେବଳ ଅଧିକ ଧନ ଓ ସମ୍ବଳ ଥିବା ପରିବାରରେ ଜନନୀ ଶିଶୁର ସବୁ ଚାହିଦା ପୂରଣ କରିପାରୁଥିବାରୁ ଏପରି ଶିଶୁମାନେ ମାନସିକ ଭାରସାମ୍ୟ ଶିକ୍ଷା କରନ୍ତି । ଭୌତିକ ପଦାର୍ଥ ନ ଥାଇ ମଧ୍ୟ ମନନଶୀଳା ଜନନୀ ନିଜର ସ୍ନେହ, ଅନୁରାଗ ଓ ଦାୟିତ୍ୱବୋଧ ନେଇ ଶିଶୁକୁ ସ୍ୱଷ୍ଟ ସଂକେତ ଦେଇପାରନ୍ତି ଯେ, ଶିଶୁର ଚାହିଦା ପ୍ରତି ସଚେତନ ଅଛନ୍ତି । ପ୍ରତ୍ୟେକ ଥର ଶିଶୁ କାନ୍ଦିବା ସମୟରେ ମା' ଶିଶୁକୁ କୋଳକୁ ନ ନେଇପାରନ୍ତି । ତଥାପି ସାମଗ୍ରିକ ଭାବରେ ଶିଶୁ ଅନୁଭବ କରିପାରେ ଯେ, ତା'ର ମା' ତା'ର ଚାହିଦା ସବୁ ପ୍ରତି ଯତ୍ନଶୀଳ ।

ଶିଶୁର ମାନସିକ ବିକାଶ ଲାଗି ପିତାମାତା ବିଶେଷ କରି ମା' କେତେ ପରିମାଣରେ ସଂସର୍ଗ ସହାନୁଭୂତି ପ୍ରଦାନ କରିବା ଉଚିତ୍ ସେ ବିଷୟରେ କେତେକ ମୌଳିକ ପ୍ରଶ୍ନ ଅଛି । ଗୋଟିଏ ସ୍ୱଷ୍ଟ ଉଦାହରଣ ନିଆଯାଇପାରେ । ଆମ ଦେଶରେ ସାଧାରଣ ଭାବରେ ଶିଶୁ ବଡ଼ ହେବା ପର୍ଯ୍ୟନ୍ତ ମା' ପାଖରେ ଶୁଆଇବାର ବ୍ୟବସ୍ଥା ରହିଛି । ଆମେରିକା ଓ ଇଉରୋପର ଶିକ୍ଷୋନ୍ନତ ଦେଶମାନଙ୍କରେ ଏ ପ୍ରକାର ଶୋଇବା ବ୍ୟବସ୍ଥାର ତୀବ୍ର ବିରୋଧ କରାଯାଏ । ବିଶେଷତଃ ଏଡ୍‌ୱାଡ୍ ଫର୍‌ବର୍ଜ ନାମକ ଜଣେ ଶିଶୁ ବିଶେଷଜ୍ଞ ମୂଳରୁ ଶିଶୁକୁ ଅଲଗା ଶୁଆଇବାର ପରାମର୍ଶ ଦେଇଥିବାରୁ ଏ ବ୍ୟବସ୍ଥାକୁ ଫର୍‌ବର୍‌ଜିଂ କହନ୍ତି ।

ଫର୍‌ବର୍‌ଜିଂ ବ୍ୟବସ୍ଥା ଅନୁଯାୟୀ ଶିଶୁମାନଙ୍କୁ ମା' ବାପାଠାରୁ ପୃଥକ୍ କରି ଗୋଟିଏ ଅଲଗା ଘରେ କାଠରେ ତିଆରି ବାଡ଼ଥିବା ଏକ ଶଯ୍ୟାରେ ଶୁଆଇ ଦିଆଯାଏ । ପରାମର୍ଶ ଦିଆଯାଏ ଯେ, ଶିଶୁଟି କାନ୍ଦିଲେ ମଧ୍ୟ ମା' ଅନ୍ତତଃ ୨୫ ମିନିଟ୍ ୩୦ ମିନିଟ୍ ଅପେକ୍ଷା କରିବେ । ତା'ଠାରୁ ଅଧିକ ସମୟ କାନ୍ଦିଲେ ମା' ଶିଶୁକୁ ସ୍ୱର୍ଶକରି ଥାପୁଡ଼େଇ ପାରନ୍ତି, ମାତ୍ର କୋଳକୁ ନେବେ ନାହିଁ । ଧୀରେ ଧୀରେ ଶିଶୁଟି ଏକାକୀ ଶୋଇବାକୁ ଅଭ୍ୟାସ କରିବ ।

ପୂର୍ବଦିନ ତୁଳନାରେ ଅଧିକ ପାଞ୍ଚ ମିନିଟ୍ ଅପେକ୍ଷା କରିବେ । ସେହିପରି ଅର୍ଦ୍ଧରାତ୍ରିରେ ଶିଶୁର କ୍ରନ୍ଦନକୁ ମୁଖ୍ୟତଃ ଉପେକ୍ଷା କରିବେ । ଶିଶୁର ସ୍ୱାଧୀନ

ମନୋଭାବ ଓ ସ୍ୱକୀୟତାର ବିକାଶ ପାଇଁ ଏପରି ବ୍ୟବସ୍ଥା ପ୍ରୟୋଜନ ବୋଲି ଯୁକ୍ତି କରାଯାଇଥାଏ ।

ମାତ୍ର ଯୁକ୍ତରାଷ୍ଟ୍ର ଆମେରିକାର ମଧ୍ୟ ଏପରି ଚିନ୍ତାଧାରାର ପରିବର୍ତ୍ତନ ଘଟୁଛି । ପ୍ରଥମତଃ ଫର୍‌ବର୍‌ଜିଂ (ଅନ୍ୟତ୍ର ଶୁଆଇବା ବ୍ୟବସ୍ଥା) କରାଯାଉଥିବା ଶିଶୁମାନଙ୍କର ମାନସିକ ଦୃଢ଼ତା ଓ ସ୍ୱକୀୟତା ପିତାମାତାଙ୍କ ନିକଟରେ ଶୋଉଥିବା ଶିଶୁମାନଙ୍କଠାରୁ ଅଧିକ ବୋଲି ଗବେଷଣାଲବ୍ଧ ପ୍ରମାଣ ନାହିଁ । ଅଧିକନ୍ତୁ ମା'ର ସ୍ପର୍ଶ ଗୁରୁତ୍ୱପୂର୍ଣ୍ଣ ବୋଲି ପ୍ରମାଣିତ ହୋଇଥିବା ପରିପ୍ରେକ୍ଷୀରେ ମା' ସହିତ ଶିଶୁର ଶୟନ ଅଧିକ ଉପଯୋଗୀ ବିଚାର କରାଯାଉଛି । ଏତଦ୍ ବ୍ୟତୀତ ମାତୃସ୍ତନ୍ୟପାନର ଗୁରୁତ୍ୱ ପ୍ରତିଷ୍ଠିତ ହେବାପରେ ଫର୍‌ବର୍‌ଜିଂ ସପକ୍ଷରେ ଯୁକ୍ତି ଦୁର୍ବଳ ହୋଇପଡ଼ିଛି ।

ଶିଶୁକୁ କୁପ୍ରଭାବମୁକ୍ତ ରଖିବାର ତୃତୀୟ ଉପାଦାନଟି ହେଉଛି ଶିଶୁର ଆବେଗକୁ ଠିକ୍ ରୂପେ ପରିଚାଳନା କରିବାର ଦକ୍ଷତା ସୃଷ୍ଟି କରିବା । ଅନେକ ମନେ କରନ୍ତି ଯେ, ଆତ୍ମସଂଯମ ବା ଭାବଗତ ସଂଯମର ଅର୍ଥ ହେଉଛି କୌଣସି ଆବେଗ ପ୍ରକାଶ ନ କରିବା । ମାତ୍ର ଏହା ଏକ ଅମୂଳକ ଧାରଣା । ଆବେଗ କ୍ଷେତ୍ରରେ ଦୁଇଟି ସ୍ୱଚ୍ଛ ପୃଥକ୍ ଦିଗ ରହିଛି । ତାହା ହେଉଛି ଆବେଗ ଅନୁଭବ ଓ ଆବେଗର ପରିପ୍ରକାଶ । ଜଣେ ଶିଶୁ ବା ବ୍ୟକ୍ତି ହୁଏତ ଆବେଗ ପ୍ରରିପ୍ରକାଶ କରି ନ ପାରେ । ମାତ୍ର ସେ ଅନ୍ତର ମଧ୍ୟରେ ତୀବ୍ର ଆବେଗ ଅନୁଭବ କରିପାରେ । ମନସ୍ତାତ୍ତିକ ଦୃଷ୍ଟିକୋଣରୁ ପରିମିତ ଓ ନିୟନ୍ତ୍ରିତ ପରିମାଣରେ ଆବେଗର ଅନୁଭୂତି ଓ ପରିପ୍ରକାଶ ଭଲ । ମାତ୍ରାଧିକ ଆବେଗ ପ୍ରକାଶ କରୁଥିବା ବ୍ୟକ୍ତି ନିଜର ତଥା ଅନ୍ୟର କ୍ଷତି ସାଧନ କରିପାରେ । ଆବେଗ ସଞ୍ଚାର କରୁଥିବା ପରିସ୍ଥିତିର ସମ୍ମୁଖୀନ ହେଲେ ବ୍ୟକ୍ତିର ଶାରୀରିକ ସ୍ତରରେ ଆଭ୍ୟନ୍ତରୀଣ ଭାଗରେ କେତେକ ପରିବର୍ତ୍ତନ ନିଶ୍ଚିତଭାବରେ ଘଟେ । ବ୍ୟକ୍ତିର ଉପଯୋଗୀ ପ୍ରକାଶଭଙ୍ଗୀ ଏଗୁଡ଼ିକୁ ନିୟନ୍ତ୍ରିତ ରୂପ ଦିଏ । ଅନ୍ୟ ପକ୍ଷରେ ପ୍ରକାଶକୁ ପୁରାପୁରି ବାଧା ଦେବା ଫଳରେ ଆଭ୍ୟନ୍ତରୀଣ କ୍ଷତିସବୁ ଘଟେ ।

ସୁତରାଂ ପିତାମାତା ନିଜର ସନ୍ତାନ ସନ୍ତତିମାନଙ୍କୁ ସୁନିୟନ୍ତ୍ରିତ ଉପାୟରେ ନିଜର ଆବେଗକୁ ପ୍ରକାଶ କରିବାର ଶିକ୍ଷାଦେବା ପ୍ରୟୋଜନ । ଗୋଟିଏ ଛୋଟ ପିଲାକୁ ସର୍କସ ନେଇଯିବା ସମୟରେ ପିଲାଟି ହୁଏତ ବଡ଼ ବଡ଼ ହାତୀ ଦେଖି ଭୟଭୀତ ହୋଇପାରେ । ଏ କ୍ଷେତ୍ରରେ ବାପା ମା' ପିଲାଟିକୁ ନିଜର କୋଳ ଓ ନିଜର ଲୁଗା ମଧ୍ୟରେ ଲୁଚାଇ ରଖି ତାକୁ ଅନୁଭୂତିଶୂନ୍ୟ କରାଇବା ଠିକ୍ ହେବ ନାହିଁ । ବାପ ମା' ଯେ ତା' ନିକଟରେ ଉପସ୍ଥିତ ଅଛନ୍ତି, ଏପରି ବିଶ୍ୱାସ ଦେଇ ତା'ର ଭୟକୁ ନିୟନ୍ତ୍ରିତ କରିବା ଆବଶ୍ୟକ । ପରିଶେଷରେ କୁହାଯାଇପାରେ ଯେ,

ଶିଶୁକୁ କୁପ୍ରଭାବମୁକ୍ତ ରଖିବାକୁ ପ୍ରଭାବଶୀଳ ଉପାଦାନଟି ହେଉଛି ଶିଶୁର ଆତ୍ମପ୍ରତ୍ୟୟ ଓ ଆତ୍ମସାମର୍ଥ୍ୟ ବୋଧ । ଶିଶୁ ନିଜର ପିତାମାତା, ସାଙ୍ଗସାଥୀ ଓ ପରିବେଶକୁ ଲକ୍ଷ୍ୟ କରି ନିଜ ସମ୍ପର୍କରେ କେତେକ ଧାରଣା ତିଆରି କରେ । ନିଜର ରୂପର ଆକର୍ଷଣଶୀଳତା, ବୁଦ୍ଧିମତ୍ତା, ଶାରୀରିକ ଦକ୍ଷତା ଓ କର୍ମକୁଶଳତା ସମ୍ପର୍କରେ ନିଜସ୍ୱ ଧାରଣାର ଅଂକୁରଣ ଓ ବିକାଶ ଘଟେ । ଏ କ୍ଷେତ୍ରରେ ନିଜ ସମ୍ପର୍କରେ କୌଣସି ଧାରଣା ବା ପ୍ରତ୍ୟୟ ନ ଜନ୍ମିବା ଯେପରି କ୍ଷତିକାରକ, ଶିଶୁ ସଦାସର୍ବଦା ନିଜସ୍ୱ ଭାବନାରେ ବୁଡ଼ି ରହିବା ମଧ୍ୟ ସେପରି କ୍ଷତିକାରକ । ସୁତରାଂ ଉପଯୁକ୍ତ ପରିମାଣରେ ପରାମର୍ଶ ଦିଗ୍‌ଦର୍ଶନ ଦେଇ ପିତାମାତା ଅନୁରୂପ ପରିମାଣର ସ୍ୱପ୍ରତ୍ୟୟ ଶିଶୁ ମନରେ ସୃଷ୍ଟି କରିପାରିବେ । ବିଭିନ୍ନ କ୍ଷେତ୍ରରେ ସଫଳ ହେବାର ସମ୍ଭାବନା ଦେଇ ଶିଶୁ ମନରେ ଆତ୍ମସାମର୍ଥ୍ୟବୋଧ ନିର୍ମାଣ କରିପାରିବେ । ଆକାଶଛୁଆଁ ଆଶା ସବୁ ତା ମନରେ ନ ପୂରାଇ ଉଚ୍ଚଆଶାପୂର୍ଣ୍ଣ (ଅଥଚ ସମ୍ଭବପର) ଲକ୍ଷ୍ୟ ସୃଷ୍ଟି କରିପାରିବେ । ପିତାମାତା ଅତି ବିଷାଦଗ୍ରସ୍ତ ବା ଉନ୍ମତ୍ତ ହୋଇ ରହିଥିଲେ ଏସବୁ କରିପାରିବେ ନାହିଁ । ପିତାମାତାଙ୍କର ବାସ୍ତବମୁଖୀ ମୂଲ୍ୟାୟାନ ତଥା ସହାନୁଭୂତିଶୀଳ ସହଯୋଗ ଏ କ୍ଷେତ୍ରରେ ସର୍ବାଧିକ ପ୍ରୟୋଜନ । ପିଲାଟି ବିଦ୍ୟାଳୟକୁ ଯିବା ଆରମ୍ଭ କରିବାପରେ ଶିକ୍ଷକ ଶିକ୍ଷୟତ୍ରୀମାନଙ୍କଠାରୁ ଏପରି ଉପାଦାନ ପାଇବା ଆବଶ୍ୟକ ।

ଆଧୁନିକ ବିଶ୍ୱରେ ପ୍ରଭାବସବୁ ଜଟିଳ ଏଥିରେ ସନ୍ଦେହ ନାହିଁ । ବିଶେଷ କରି ଗଣମାଧ୍ୟମରେ (ରେଡ଼ିଓ ଓ ଦୂରଦର୍ଶନ) ପ୍ରସାରିତ ବିଜ୍ଞାପନ ଓ ଅନ୍ୟାନ୍ୟ ମାନଦଣ୍ଡ ସବୁ ଶିଶୁର ନିଜସ୍ୱ ମୂଲ୍ୟାୟନ ଉପରେ ଯଥେଷ୍ଟ ପ୍ରଭାବ ବିସ୍ତାର କରେ । ବିଜ୍ଞାପନରେ ମଡ଼େଲ ସବୁ ରୂପର ଯେଉଁ ଆକର୍ଷଣଶୀଳତାର ସୂଚନା ଦିଅନ୍ତି ବା ସେଥିରେ ଯେଉଁ ବୌଦ୍ଧିକତାର ମାନଦଣ୍ଡ ପ୍ରକାଶ ପାଉଛି, ଯେଉଁ ସଫଳତାର କାହାଣୀ ପ୍ରଚାର କରାଯାଉଛି, ସେସବୁ ଜଣେ ଶିଶୁ କରିପାରିବ ନାହିଁ ବୋଲି ଭାବିବା ମାତ୍ରେ ଶିଶୁ ମନରେ ଗଭୀର ନୈରାଶ୍ୟ ଦେଖାଯାଏ ।

ଏ ନୈରାଶ୍ୟର ବଶବର୍ତ୍ତୀ ହୋଇ ଶିଶୁଟି ଅନେକ ଅବାଂଛନୀୟ ବ୍ୟବହାର ଗ୍ରହଣ କରେ । ସୁତରାଂ ଶିଶୁଟିକୁ ପ୍ରଭାବ ମୁକ୍ତ ରଖିବାର ମୌଳିକ ଉପାୟ ହେଉଛି, ଶିଶୁର ମନରେ ଉପଯୋଗୀ ଆତ୍ମପରିଚୟ ସୃଷ୍ଟି କରିବା । ପରିବେଶଟିକୁ ସମୃଦ୍ଧ କରିବା ପାଇଁ ଶିଶୁଟିର ଯେ କିଛି ନା କିଛି ଦକ୍ଷତା ରହିଛି ତା' ମନରେ ଏପରି ଆତ୍ମସାମର୍ଥ୍ୟବୋଧ ଭରି ଦେବାର ସଫଳତା ଶିଶୁପାଳନ ସାଫଲ୍ୟର କେନ୍ଦ୍ରବିନ୍ଦୁ । ଏସବୁ କଷ୍ଟକର ହେଲେ ମଧ୍ୟ ଉପରେ ଆଲୋଚିତ କୌଶଳ ମାଧ୍ୟମରେ ଏହା ସମ୍ଭବ ।



# ପିଲାମାନେ କିଭଳି ସାମାଜିକ ହେବେ ?

ଆମେ ସମସ୍ତେ ସମାଜରେ ବାସ କରୁ । ସମାଜରେ ଆମ ଚାରି ପାଖରେ ବେଳେବେଳେ ଏମିତି ଲୋକଙ୍କୁ ଆମେ ଭେଟୁ ଯେ ସେମାନଙ୍କର କିଛି ବାରିବାର ନାହିଁ, ଦୋଷ ଦେଖାଇବାର ନାହିଁ । ସେମାନଙ୍କ କଥାବାର୍ତ୍ତା, ବ୍ୟବହାର ଆମକୁ ଭଲ ଲାଗେ । ଏମାନଙ୍କର ମିଠା ସାମାଜିକ ବ୍ୟବହାର କେବଳ ଯେ ଆମକୁ ଆମୋଦିତ କରେ ତା' ନୁହେଁ, ଏମାନଙ୍କର ମିଶୁକ ଓ ସହଜ ବ୍ୟବହାର ଆମ ମନରେ, ଆମର ନିଜ ଜୀବନରେ ଭଲ କାହାକୁ କହନ୍ତି ସୁନ୍ଦର ଓ ଉଚ୍ଚ କାହାକୁ କହନ୍ତି ତା'ର ଛାପ ଦିଏ । ପୁଣି ଏଭଳି କେତେକ ଲୋକଙ୍କ ସହିତ ଆମର ଦେଖା ହୁଏ ଯେ ତାଙ୍କୁ ଦେଖି ଆମର ନିତିଦିନିଆ ଜୀବନର ସରସତା ଚାଲିଯାଏ । ସେମାନଙ୍କ କଥା ଶୁଣି ମନ ଖରାପ ହୁଏ । ମୋଟ ଉପରେ ମିଠା, କୋମଳ ଓ ମଧୁର ସାମାଜିକ ବ୍ୟବହାର ଆମର ବ୍ୟକ୍ତିଗତ ଜୀବନ ଓ ମିଳିମିଶି ଚଳୁଥିବା ଗୋଷ୍ଠୀଗତ ଜୀବନକୁ ସୁଖମୟ କରିଥାଏ ।

ସରସତାପୂର୍ଣ୍ଣ ସାମାଜିକ ବ୍ୟବହାରର ଆରମ୍ଭ ବାଲ୍ୟକାଳରେ ହିଁ ଘଟିଥାଏ । ଶିଶୁର ମାନସିକ ବିକାଶର ମୋଟାମୋଟି ଦୁଇଟି ଧାରା ରହିଛି । ଗୋଟିଏ ହେଉଛି ତାହାର ବୁଦ୍ଧିର ବିକାଶ ଏବଂ ଅନ୍ୟଟି ତା'ର ସାମାଜିକ ବିକାଶ । ବୁଦ୍ଧିଗତ ବିକାଶରେ ଶିଶୁଟି ନିଜର ବୟସ ବଢ଼ିବା ସଙ୍ଗେ ସଙ୍ଗେ ତା'ର ଚାରିପାଖରେ ପାରିପାର୍ଶ୍ୱିକ ଅବସ୍ଥା ସହିତ ଖାପ ଖୁଆଇବାକୁ ଶିଖେ, କେତେଗୁଡ଼ିଏ ସମସ୍ୟା ସମାଧାନ କରେ, ଜ୍ଞାନ ଆହରଣ କରେ ଏବଂ ଚିନ୍ତା କରିବାକୁ ଶିଖେ । ଏ କ୍ଷେତ୍ରରେ ତା'ର ବଂଶଗତ ଗୁଣ ଓ ଶିକ୍ଷା ପାଇବାର ସୁଯୋଗ ଯଥେଷ୍ଟ ପ୍ରଭାବ ପକାଏ । ଅନ୍ୟଟି ହେଉଛି ଶିଶୁର ସାମାଜିକ ଓ ଭାବଗତ ବିକାଶ । ଶିଶୁର ପିଲାଦିନ ଓ କୈଶୋର କାଳର ବହୁ ଘଟଣା ତା'ର ସାମାଜିକ ବ୍ୟବହାର ଉପରେ ପ୍ରଭାବ ପକାଏ । ଏହି ପ୍ରଭାବ ପିଲାଦିନ ଓ କୈଶୋର କାଳ ମଧ୍ୟରେ ସୀମିତ ନ ରହି ସେ ଆହୁରି ବଡ଼ ହେବା ପରେ ତାକୁ ପ୍ରଭାବିତ କରେ ।

ଶିଶୁର ସାମାଜିକ ବିକାଶ ଆରମ୍ଭ ହୁଏ ପରିବେଶ ଓ ବାପା, ମାଆଙ୍କ ପ୍ରତି ହୋଇଥିବା ବିଶ୍ୱାସବୋଧରୁ । ଖୁବ୍ ଛୋଟ ଥିଲାବେଳେ ସେ ପ୍ରଥମେ ଅନୁଭବ କରେ ଯେ ସେ ଅସହାୟ ନୁହେଁ । ଭୋକ କଲାବେଳେ ତା'କୁ ଖାଇବାକୁ ମିଳେ; ମଳ, ମୂତ୍ର ପରିଷ୍କାର କରି ମା' ତାକୁ ଆରାମ ଦିଅନ୍ତି । ଶୀତରେ କଷ୍ଟ

ପାଇବା ମାତ୍ରେ ପୋଷାକ ଦିଆଯାଇ ତା'ର କଷ୍ଟ ଦୂର କରାଯାଏ । ଏହି ଅନୁଭୂତିରୁ ଶିଶୁ ଶିକ୍ଷା କରେ ଯେ ବାହାର ପରିବେଶର ଗୋଟାଏ ପ୍ରକାର ଶୃଙ୍ଖଳା ବା ନୀତି ନିୟମ ରହିଛି । ନିଜର ସୁଖ ପାଇଁ ସେ ପରିବେଷ୍ଟନୀ ଉପରେ ନିର୍ଭର କରିପାରେ । ଏହି ପରିବେଷ୍ଟନୀରେ ତାହାକୁ ଲାଳନପାଳନ କରୁଥିବା ଲୋକମାନେ ହିଁ ଥାଆନ୍ତି ।

-ଏପରି ବିଶ୍ୱାସବୋଧର ବିକାଶ ତିନୋଟି ଉପାୟରେ ଶିଶୁର ଭବିଷ୍ୟତ ବ୍ୟବହାରକୁ ରୂପ ଦିଏ । ପ୍ରଥମଟି ହେଉଛି ଏପରି ପିଲାମାନେ ବଡ଼ ହେଲେ ସେମାନଙ୍କ ସାମାଜିକ ବ୍ୟବହାର ସହଜ ଓ ସ୍ୱାଭାବିକ ହୁଏ । ସେମାନେ ଅଯଥା ସନ୍ଦେହୀ ହୋଇ ଅନ୍ୟମାନେ ତାକୁ ଖରାପ ବ୍ୟବହାର କରିବେ ବୋଲି ଭାବନ୍ତି ନାହିଁ । ସେମାନେ ମନେ କରନ୍ତି ଯେ, ସେମାନେ ନିଜର ବ୍ୟବହାର ଦ୍ୱାରା ଅନ୍ୟମାନଙ୍କୁ ସନ୍ତୁଷ୍ଟ ଓ ଖୁସି କରିପାରିବେ । ଆଉ ଗୋଟିଏ ହେଲା ଏପରି ପିଲାମାନେ କାମରେ ସାହସର ସୂଚନା ଦିଅନ୍ତି । କେତେକ କାମରେ ଲାଭ କ୍ଷତିର ସମ୍ଭାବନା ଥିଲେ ମଧ୍ୟ ସେମାନେ କାମଟିକୁ ହାତକୁ ନିଅନ୍ତି । ଆଉ ଗୋଟିଏ ହେଲା, ନୂଆ ପରିସ୍ଥିତିରେ ଏପରି ପିଲାମାନେ ଛାନିଆ ନ ହୋଇ ତା'ର ମୁକାବିଲା କରିବା ପାଇଁ ଚେଷ୍ଟା କରନ୍ତି । ତା'ର ବିଶ୍ୱାସ ଥାଏ ଯେ ବାହାର ଜଗତରେ କିଛି ପରିମାଣରେ ସ୍ଥିରତା ଅଛି, ଭଲ କଥା ଅଛି ଏବଂ ସେ ଚେଷ୍ଟା କଲେ ପରିସ୍ଥିତିକୁ ସହଜ କରିପାରିବ । କାହାର ଘର ବା କୌଣସି ଦୋକାନକୁ ରାସ୍ତା ଦେଖି ନଥିଲେ ମଧ୍ୟ ସେ ଯିବା ପାଇଁ ଚେଷ୍ଟା କରେ ।

ବର୍ତ୍ତମାନ ପ୍ରଶ୍ନ ହେଉଛି ଶିଶୁମନରେ ସ୍ୱାଭାବିକ ବିଶ୍ୱାସବୋଧର ବିକାଶ ପାଇଁ ବାପା, ମାଆ, ଗୁରୁଜନ ଓ ଅନ୍ୟାନ୍ୟ ଯତ୍ନକାରୀମାନେ କ'ଣ କରିପାରିବେ ? ଲାଳନପାଳନ କରୁଥିବା ଲୋକେ ତିନୋଟି ଉପାୟରେ ଶିଶୁର ବିଶ୍ୱାସବୋଧକୁ ବଢ଼େଇ ପାରନ୍ତି । ପ୍ରଥମଟି ହେଉଛି ଯତ୍ନ ନେଉଥିବା ଲୋକଙ୍କ ସହିତ ପାରସ୍ପରିକ କାମଦାମ, ସହଯୋଗ ଓ ସଂଯୋଗ ରକ୍ଷା । ଯତ୍ନ ନେଉଥିବା ଲୋକମାନଙ୍କ ସହିତ କଥାବାର୍ତ୍ତା, ହସ ଖୁସି ମାଧ୍ୟମରେ ଶିଶୁଟି ବିକାଶ ଦିଗରେ ଗତି କରେ । କେତେକ କ୍ଷେତ୍ରରେ ଯତ୍ନକାରୀ ବହୁଦିନ ଧରି ତା' ପାଖକୁ ନ ଆସିଲେ ଜଟିଳତା ସୃଷ୍ଟି ହୋଇଥାଏ ।

ଦ୍ୱିତୀୟଟି ହେଉଛି ଆଉ ଅନ୍ୟ ଶିଶୁ ଓ ଛୋଟ ପିଲାଙ୍କ ସହିତ ଶିଶୁର କାର୍ଯ୍ୟକଳାପ । ଶିଶୁଟି ଯଦି ଲକ୍ଷ୍ୟ କରେ ଯେ ଅନ୍ୟ କୌଣସି ପିଲାକୁ ତା'ଠାରୁ ବେଶି ଗୁରୁତ୍ୱ ଦିଆଯାଉଛି କି ବେଶି ଆଦର ଦିଆଯାଉଛି ତେବେ ତା'ର ବିଶ୍ୱାସବୋଧ ବାଧାପାଏ । ଫଳରେ ଅନ୍ୟମାନଙ୍କ ଉପରେ ସେ ସହଜରେ ଆସ୍ଥା

ସ୍ଥାପନ କରିପାରେ ନାହିଁ । ଅପର ପକ୍ଷରେ ତା'ଠାରୁ ଛୋଟପିଲାମାନଙ୍କୁ ଦେଖାଶୁଣା କରିବାର ଦାୟିତ୍ୱ ତାକୁ ଦେଲେ ତା'ର ବିଶ୍ୱାସ ବଢ଼େ ଏବଂ ଅନେକ ସମୟରେ ବଡ଼ମାନଙ୍କୁ ଅଯଥା ବିରକ୍ତ ନ କରି ସମାଧାନ କରାଯାଇ ପାରୁଥିବା କାର୍ଯ୍ୟଗୁଡ଼ିକୁ ସେ ହାତକୁ ନିଏ । ଆଉ ଗୋଟିଏ ହେଲା ଯତ୍ନକାରୀଙ୍କ ସହିତ ଅନ୍ୟ ବୟସ୍କ ଲୋକମାନଙ୍କର ସାମାଜିକ ମିଳାମିଶା ପିଲାର ବିଶ୍ୱାସବୋଧର ସୀମା ବଢ଼ାଏ । ଯାତ୍ରା, ଭୋଜି, ପର୍ବପର୍ବାଣି, ମଉଛବ ପ୍ରଭୃତି ଅନୁଷ୍ଠାନରେ ବାହାରେ ଓ ଅନ୍ୟ ସାମାଜିକ ମିଳନ ଯତ୍ନକାରୀକୁ ଅନ୍ୟମାନଙ୍କ ଗହଣରେ ଦେଖି ଶିଶୁଟି ସହଯୋଗିତା ସମ୍ପର୍କରେ ସଚେତନ ହୁଏ । ଜଣଙ୍କର ଦେହ ଖରାପ ସମୟରେ ପାଖଆଖ ଲୋକେ ପ୍ରକାଶ କରୁଥିବା ସହାନୁଭୂତି, ଉଦ୍‌ବେଗ ଓ ସେବାକରିବା ମନୋଭାବ ଶିଶୁଟି ଲକ୍ଷ୍ୟ କରେ ଓ ନିଜର ସାମାଜିକ ବ୍ୟବହାରକୁ ସେହି ଅନୁସାରେ ରୂପ ଦିଏ ।

ଏଇ ସଂକ୍ରାନ୍ତରେ ସାମାଜିକ ବ୍ୟବହାର ଗଠନରେ ଶିଶୁର ଅନୁକରଣ-ପ୍ରିୟତାର ଆବଶ୍ୟକତା ଅଛି । ତା' ଆଗରେ ଗୋଟିଏ ମଡ଼େଲ ବା ଆଦର୍ଶ ନମୁନା ରଖିଲେ କାମରେ ଲାଗେ । ଶିଶୁ ତାହାକୁ ଭଲ ପାଉଥିବା ଲୋକର ସାମାଜିକ ବ୍ୟବହାର ଭଲରୂପେ ଲକ୍ଷ୍ୟ କରେ ଏବଂ ନିଜ ଜାଣତରେ ହେଉ ବା ଅଜାଣତରେ ହେଉ ସେ ସବୁକୁ ଅନୁକରଣ କରେ । ଏହି ଦୃଷ୍ଟିରୁ ସାନ ପିଲାମାନଙ୍କ ଆଗରେ ଯତ୍ନକାରୀ ନିଜର ସାମାଜିକ ବ୍ୟବହାରକୁ ମିଳାମିଶା ପୂର୍ଣ୍ଣ, ହସଖୁସିଆ, ସହଜ ଓ ସୁରୁଚିପୂର୍ଣ୍ଣ କରିବା ଉଚିତ ।

ଶିଶୁର ସାମାଜିକ ଓ ଭାବଗତ ବିକାଶ ପାଇଁ ଅନ୍ୟ କେତୋଟି ଯତ୍ନ ଦରକାର । ଛୋଟ ବୟସରେ ବାପ, ମାଆ ମରିଗଲେ, ବହୁ ଦିନ ଧରି ରୋଗରେ ପଡ଼ିଲେ, କିମ୍ବା କୌଣସି ଦୁର୍ଘଟଣାରେ ପଡ଼ିଲେ ସେ ସବୁ ଘଟଣା ଶିଶୁମନରେ ଛାପ ପକାଏ । ବେଳେବେଳେ ଘଟଣାର ଚାପରେ ଶିଶୁର ଯତ୍ନକାରୀର ଘନଘନ ପରିବର୍ତ୍ତନ ହୋଇଥାଏ । କିଛିଦିନ ମାଉସୀ, ପାଖରେ କିଛିଦିନ ପିଉସୀ ପାଖରେ ଏବଂ ଅନ୍ୟ କିଛି ଦିନ ଦାଦା, ଖୁଡ଼ି, ଅଜା, ଆଈ ପାଖରେ ବାଧବାଧକତା ଭିତରେ ସମୟ କାଟିଲେ ଶିଶୁର ଭାବଗତ ବିକାଶ ବାଧାପାଏ । ଏ ଦିଗରେ ଯତ୍ନକାରୀମାନଙ୍କର ବିରାଟ ଦାୟିତ୍ୱ ରହିଛି । ଶିଶୁର ପରିଚାଳନା ଦାୟିତ୍ୱ ନେଉଥିବା ଲୋକମାନେ ଏପରି ଘଟଣା ଆଉ ଯେମିତି ନ ଘଟେ ସେ ଦିଗରେ ଚେଷ୍ଟା କରିବା ଉଚିତ । ବହୁ କ୍ଷେତ୍ରରେ ଦେଖାଯାଇଛି ଯେ ବନ୍ଧୁବାନ୍ଧବ, ମାଉସୀ ବା ପିଉସୀ ଉଚ୍ଚ ମନର ସହାନୁଭୂତିଶୀଳ ହୋଇଥିଲେ ପିଲାଏ ନିଜର ଦୁଃଖ କଷ୍ଟ ଭୁଲି ନିଜକୁ ତିଆରି କରିବାକୁ ମନୋବଳ ପାଆନ୍ତି । ମାତ୍ର ସେହି

ବନ୍ଧୁବାନ୍ଧବମାନେ କଠୋର କଡ଼ା ମିଜାସର ହୋଇଥିଲେ କିମ୍ବା ନିକୃଷ୍ଟମନା ହୋଇଥିଲେ ଶିଶୁର ସାମାଜିକ ବ୍ୟବହାର ବିକଳାଙ୍ଗ ହୁଏ ।

ପ୍ରାକ୍-ବିଦ୍ୟାଳୟ :

ପ୍ରାକ୍-ପ୍ରାଥମିକ ସ୍କୁଲକୁ ଯିବା ଆରମ୍ଭ କରିବା ମାତ୍ରେ ଶିଶୁର ସାମାଜିକ ଓ ଭାବଗତ ବିକାଶ ନୂଆ ପ୍ରକାରେ ମୋଡ଼ ନିଏ । ଗୋଟିଏ ହେଲା, ଶିଶୁମନରେ ଦେଖାଦିଏ ସ୍ୱାଧୀନ ହେବାର ଇଚ୍ଛା । ପ୍ରଥମ ଥର ପାଇଁ ସେ ବାପା ବୋଉଙ୍କ ସିଧାସଳଖ ଶାସନରୁ ମୁକ୍ତ ହୋଇ ସ୍କୁଲ ପରିବେଶରେ ପହଞ୍ଚେ । ଏ ସମୟରେ ସେ ଧୀରେ ଧୀରେ ନିଜର କାମ ନିଜେ କରିବା ପାଇଁ ଆଗଭର ହୁଏ । ନିଜର ନିୟନ୍ତ୍ରଣ ଜାରି କରିବାକୁ ତତ୍ପର ହୁଏ । ଏ ସ୍ୱାଧୀନ ହେବାର ମନୋବୃତ୍ତି ସହିତ ଏକ ପ୍ରକାର ଖାମଖିଆଲୀ ଭାବ ମଧ୍ୟ ତା' ଭିତରେ ଚାଲିଥାଏ । ଅନେକ ସମୟରେ ଦେଖାଯାଏ ଯେ ଏପରି ବୟସର ପିଲାମାନେ ବଡ଼ବଡ଼ ସୁଟ୍‌କେଶକୁ ଟାଣିଆଣି ନିଜ ଶକ୍ତିର ପରିଚୟ ଦେବାକୁ ଆଗଭର ହୋଇଥାଆନ୍ତି । ଅଥଚ ସେଇ ପିଲାମାନେ ପୁଣି ନିଜ ଜୋତାର ଫିତା ବାନ୍ଧିବାକୁ ବଡ଼ମାନଙ୍କ ସାହାଯ୍ୟ ଲୋଡ଼ୁଛନ୍ତି ।

ଆଉ ଗୋଟିଏ ବିଷୟ ଲକ୍ଷ୍ୟ କରିବାର କଥା ଯେ ଶିଶୁଟି କୌଣସି ବଡ଼ କାମ ହାତକୁ ନେଇ ତାହା କରି ନ ପାରିଲେ ତାକୁ ଲାଜ ମାଡ଼େ । ନିଜର ଦକ୍ଷତା ବିଷୟରେ ତାହାର ଯେଉଁ ଉଚ୍ଚ ଧାରଣା ଥାଏ ଏପରି ଲଜ୍ଜା ସେଥିରେ ବାଧା ସୃଷ୍ଟି କରେ । ବିଭିନ୍ନ କାର୍ଯ୍ୟରେ ବେଳେବେଳେ ବିଫଳ ହେବା କିଛି ଖରାପ ନୁହେଁ, ବରଂ ସେ ବିଫଳ ହୋଇ ନିଜର ସୀମିତ ଶକ୍ତିର ପରିସର ବୁଝିବାକୁ ସକ୍ଷମ ହୁଏ । ଅତି ବେଶୀ ପରିମାଣରେ ବିଫଳତା ତା' ମନରେ ବେଶି ପରିମାଣରେ ଲଜ୍ଜା ସୃଷ୍ଟି କରେ ।

ଏ ବୟସରେ ଶିଶୁମାନଙ୍କର ମାନସିକ ବିକାଶକୁ ଉତ୍ସାହିତ କରିବାକୁ ବାପା, ବୋଉ, ଶିକ୍ଷକଶିକ୍ଷୟିତ୍ରୀ ଏବଂ ଅନ୍ୟାନ୍ୟ ଯତ୍ନକାରୀମାନେ ଅନେକ କିଛି କରିପାରିବେ । ଏ ବୟସରେ ଶିଶୁମାନଙ୍କ ଖେଳଣା, ଏକାଠି ବସିବାର ଓ ଖେଳିବାର ସୁବିଧାସୁଯୋଗ, କଥାବାର୍ତ୍ତା କରିବାର ସୁବିଧାସୁଯୋଗ ଓ ସ୍କୁଲ କାମ ଏପରି ଭାବରେ ଦିଆଯିବା ଉଚିତ ଯେ ସେଗୁଡ଼ିକ ଯେପରି ପିଲାଟିର ସ୍ୱାଧୀନ ମନୋଭାବକୁ ବଢ଼ାଇବ । ସ୍କୁଲର ପଢ଼ାକାର୍ଯ୍ୟକୁ ଏପରି ଭାବରେ ଯୋଜନା କରାଯିବା ଉଚିତ ଯେପରି ଶିଶୁଟି ନିଜର ଦକ୍ଷତା ଦେଖାଇ ପାରିବ ଏବଂ ଅଧିକାଂଶ କ୍ଷେତ୍ରରେ ସଫଳକାମ ହେବ । ଆଉ ଗୋଟିଏ ହେଲା, କଥାବାର୍ତ୍ତା

ମାଧ୍ୟମରେ ପିଲାଟିକୁ ଉତ୍ସାହ ଦେଇ ପିଲାଟି ସ୍ୱାଧୀନ ଭାବରେ ଯେପରି ଛୋଟ ଛୋଟ ସମସ୍ୟା ସମାଧାନ କରିପାରିବ, ତା'ର ସୁଯୋଗ ଦେବା ଉଚିତ । ଅଯଥା ହସ୍ତକ୍ଷେପ ଓ ବାଧା ନଦେଇ ଅଳ୍ପ ଅଳ୍ପ ଉପଦେଶ ଏ କ୍ଷେତ୍ରରେ ବେଶି ଫଳ ଦିଏ । ଆଉ ଗୋଟିଏ ହେଲା ଦଳଗତ ଭାବରେ ପିଲାର ବହୁ ସାମାଜିକ ବ୍ୟବହାର ରୂପ ନିଏ । ନିଜ ବ୍ୟତୀତ ସଂସାରରେ ଯେ ଅନ୍ୟ ପିଲାମାନେ ଅଛନ୍ତି ଏବଂ ସେମାନଙ୍କର ଭିନ୍ନ ଭିନ୍ନ ଭାବଧାରା ଥାଇପାରେ—ଏ ଧାରଣା ଭଲରୂପେ ତା' ଠାରୁ ଜନ୍ମ ନିଏ ଦଳଗତ ହୋଇ କାମ କଲେ । ଦଳ ଦଳ ହୋଇ ଖେଳିବା, ବୁଲିବା, ଓ କାମ କରିବା, ଫଳରେ ଏହା ଧୀରେ ଧୀରେ ବଢ଼େ । ସୁତରାଂ ନାନା ପ୍ରକାର ଖେଳ, ଖେଳନା, ଓ ସ୍କୁଲ କାମ ଦେଇ ସାଙ୍ଗସାଥୀମାନଙ୍କ ଗହଣରେ ଶିଶୁର ସାମାଜିକ ବିକାଶକୁ ବଢ଼ାଯାଇପାରେ । ଅନ୍ୟ ପିଲାମାନେ କିପରି କ'ଣ ସାମର୍ଥ୍ୟ ଦେଖାଉଛନ୍ତି, ତାହା ଆବିଷ୍କାର କରି ଶିଶୁ ନିଜର ସାମର୍ଥ୍ୟକୁ ଠିକ୍ ରୂପେ ବୁଝିବାକୁ ଚେଷ୍ଟା କରେ ।



(ସାମାଜିକତାର ତାଲିମ)

**ବିଦ୍ୟାଳୟ ସ୍ତର :**

ପ୍ରାକ୍-ବିଦ୍ୟାଳୟ ସମୟ ସରିଯିବା ପରେ ଅନ୍ୟାନ୍ୟ ସାମାଜିକ ବ୍ୟବହାର ବିକଶିତ ହୁଏ । ପିଲାର ବୁଦ୍ଧିର ବିକାଶ ସହିତ ସଂଯୋଗ ରକ୍ଷାକରି ଏପରି ଭାବଗତ ବିକାଶ ହୁଏ । ଗୋଟିଏ ହେଲା ପିଲାମନରେ ଜାଣିବାର ଇଚ୍ଛା ଓ କୌତୂହଳ ଦେଖାଦିଏ । ଜିନିଷଗୁଡ଼ିକ କାହିଁକି ଏପରି ହୋଇଛି ଏବଂ କିଏ ସେମାନଙ୍କୁ ସେପରି ଗଢ଼ିଛି ଓ ରୂପ ଦେଇଛି, ତାହା ପଚାରି ବସେ । ଆଉ ଗୋଟିଏ ହେଲା ନିଜ କାମରୁ ପିଲା ଆନନ୍ଦ ପାଇବା ।

ସେ ଯେ କେବଳ ସ୍ୱାଧୀନ ଭାବରେ କାମ କରିବାକୁ ଚାହେଁ, ତା' ନୁହେଁ ସେ କାମଟିକୁ ଭଲ ରୂପେ କରିବା ପାଇଁ ଆଗ୍ରହୀ ହୁଏ । ପ୍ରତି କାମ କେତେ ଭଲ ଓ କେତେ ମନ୍ଦ ସେ ବିଚାର କରିପାରେ । ପ୍ରତି କାମରେ ଯେ ଗୋଟିଏ ମାନଦଣ୍ଡ ରହିଛି, ଏହା ଅନୁଭବ କରେ ଏବଂ ଏ ମାନଦଣ୍ଡ ନିଜ କାମ ପ୍ରତି ଓ ଅନ୍ୟମାନଙ୍କ କାମ ପ୍ରତି ପ୍ରୟୋଗ କରେ । ଶେଷଟି ହେଲା, ଶିକ୍ଷକ ଶିକ୍ଷୟିତ୍ରୀ ଏବଂ ନିଜର ସାଙ୍ଗମାନଙ୍କଠାରୁ ପ୍ରଶଂସା ଓ ସମ୍ମାନ ଲାଭ କରିବାର ଇଚ୍ଛା ତା'ର ଧୀରେ ଧୀରେ ବଢ଼େ ।

ଶିଶୁ ମନର ଏ ଦିଗଟିକୁ ଲକ୍ଷ୍ୟରଖି ପିଲାର ପରିଚାଳନା ଦାୟିତ୍ୱରେ ଥିବା ଲୋକେ ସଚେତନ ହେବା ଭଲ । ପିଲାର କୌତୂହଳକୁ ବାଧା ନ ଦେଇ ଧୈର୍ଯ୍ୟ ଧରି ତା ପ୍ରଶ୍ନର ତା' ବୟସ ଅନୁଯାୟୀ ଉତ୍ତର ଦେବା, କିମ୍ବା କେଉଁଠି ଖୋଜିଲେ ଏ ଉତ୍ତର ମିଳିବ—ବତେଇ ଦେବା ଦରକାର । ପିଲାର ଯତ୍ନ ନେଉଥିବା ଲୋକେ ନିଜ ଜ୍ଞାନର ସୀମା କେତେ କହିଲା ବେଳେ ବିରକ୍ତ ନ ହୋଇ ଶାନ୍ତ ହୋଇ ଧୀରେ ସ୍ପଷ୍ଟ କହିବାର ଭଲ ଫଳ ମିଳେ । ସେହିପରି ଦଳଗତ ଭାବେ ମିଳିମିଶି କାମ କଲାବେଳେ ଗୋଳମାଳ ନକରିବା ଓ ଶୃଙ୍ଖଳା ରଖିବାର କାର୍ଯ୍ୟ ପିଲାମାନେ ଶିଖିପାରନ୍ତି । ଏପରି ଶିକ୍ଷାର ସୁଯୋଗ ଦେଇ ବୟସ୍କମାନେ ପିଲାମାନଙ୍କୁ ସାମାଜିକ ବ୍ୟବହାର ଶିଖାଇ ପାରିବେ ।

ଉଦାହରଣସ୍ୱରୂପ, ଗୋଟିଏ ପିଲା ଲେଖିଥିବା ରଚନାଟିକୁ ଅନ୍ୟମାନଙ୍କ ମେଳରେ ବଡ଼ପାଟିରେ ପଢ଼ି ଶୁଣାଇ ରଚନାଟି କେମିତି ହୋଇଚି ସାଙ୍ଗ-ସାଥୀମାନଙ୍କୁ ପଚାରି ସେମାନଙ୍କ ମତାମତ ଲୋଡ଼ି ପିଲାମାନଙ୍କୁ ନିଜ ନିଜ ଭିତରେ କଥାବାର୍ତ୍ତା କରିବାର ସୁଯୋଗ ଦିଆଯାଇପାରେ । ସାଙ୍ଗମାନଙ୍କର ମତାମତ ପିଲାଟି ପାଇଁ ଭାରି ପ୍ରଭାବଶାଳୀ ସଂକେତ ରୂପେ କାର୍ଯ୍ୟ କରେ । ମୋଟ ଉପରେ ପିଲାର ଜାଣିବା ଇଚ୍ଛା, କୌତୂହଳ ଓ ସାମାଜିକ କାମଦାମକୁ

ଉତ୍ସାହ ଦେବା ମାଧ୍ୟମରେ ଶିଶୁର ସାମାଜିକ ଓ ଭାବଗତ ବିକାଶକୁ ତ୍ୱରାନ୍ୱିତ କରାଯାଇପାରେ ।

ଭଲ ଭାବରେ ଭାବଗତ ଓ ସାମାଜିକ ବୁଦ୍ଧିର ବିକାଶ ଘଟିଲେ ପିଲା ଆଉ ଟିକେ ବଡ଼ ହେଲେ ପିଲା ଭିତରେ ଭଲ କ'ଣ ମନ୍ଦ କ'ଣ ଏହିଭଳି ଧାରଣା ବା ମୂଲ୍ୟବୋଧର ଉନ୍ମେଷ ହୁଏ । କୈଶୋର ଓ ଯୁବକ ଅବସ୍ଥାରେ ଗୋଟିଏ ଗୋଟିଏ ନୀତି ନିୟମ ମୂଳକ ମୂଲ୍ୟବୋଧ ଜୀବନକୁ ସଜାଡ଼େ । ତାହାକୁ ଅସାମାଜିକ କରେ ନାହିଁ । ତାହାର ସାମାଜିକତା ଶୃଙ୍ଖଳିତ ରୂପ ନିଏ । ପିଲାର ପ୍ରତିଦିନର କାମ ଓ ସାମାଜିକ କାମରେ ଶୃଙ୍ଖଳା ଆସେ । ମିଳିମିଶି ସହଯୋଗ କରି ସବୁକଥା କରିବାକୁ ପିଲା ଆଗ୍ରହୀ ହୁଏ । ପରେ ଏହା ଆମର ସାମୂହିକ ଜୀବନକୁ ସରସ ଓ ସୁନ୍ଦର କରେ ।



# ପିଲାମାନଙ୍କୁ ଭଲ ମନ୍ଦ ଶିଖାଇବା ସମ୍ପର୍କରେ

ପିଲାମାନଙ୍କୁ ଭଲ ମନ୍ଦର ବିଚାର ଶିଖାଇବା ଲାଗି ସବୁ ପିତାମାତା ଓ ଅଭିଭାବକ ଆଗ୍ରହୀ । ପିଲାଟି ଅନ୍ୟର ଭଲ କାର୍ଯ୍ୟକୁ ଭଲ ବୋଲି ବିଚାର କରୁ ଏବଂ ଖରାପ ବୋଲି ଚିନ୍ତାକରୁ—ଏହା ବୟସ୍କମାନେ ଆଶା କରିବା ସ୍ୱାଭାବିକ । କିନ୍ତୁ ପିଲାମାନଙ୍କୁ ଏପରି ଶିକ୍ଷା ଦେବା ସହଜ ହୋଇ ନଥାଏ । ବହୁ କ୍ଷେତ୍ରରେ ବୟସ୍କମାନେ ପିଲାମାନଙ୍କର ଓଲଟା ବିଚାର ଦେଖି ରାଗି ଯାଆନ୍ତି । ବୟସ୍କମାନଙ୍କର ଧୈର୍ଯ୍ୟଭଙ୍ଗ ପିଲାର ଉପକାରରେ ନ ଲାଗି ବରଂ ଅନିଷ୍ଟ କରିଥାଏ । କେଉଁ କାରଣରୁ ପିଲାମାନଙ୍କର ଭଲ ମନ୍ଦ ଶିକ୍ଷା କରିବାରେ ଅସୁବିଧା ହୁଏ, ତାହା ଜାଣିଲେ ବଡ଼ମାନଙ୍କର ସଂଯମ ବୃଦ୍ଧି ପାଇବ ଏବଂ ସେମାନେ ଧୈର୍ଯ୍ୟର ସହିତ ପିଲାମାନଙ୍କୁ ଶିକ୍ଷା ଦେଇପାରିବେ ।

ପ୍ରଥମେ ବୁଝିବାକୁ ହେବ ଯେ, ପିଲା ଓ ବଡ଼ ମଧ୍ୟରେ କେବଳ ବୟସର ପାର୍ଥକ୍ୟ ନାହିଁ, ସେମାନଙ୍କ ଚିନ୍ତାଧାରରେ ମଧ୍ୟ ବେଶ୍ ବ୍ୟବଧାନ ରହିଛି । ଜଣେ ବୟସ୍କବ୍ୟକ୍ତି ନୈତିକ ବ୍ୟବହାର କହିଲେ ଯାହା ବୁଝେ, ଜଣେ ପିଲାର ଚିନ୍ତାଧାରାଠାରୁ ତାହା ସଂପୂର୍ଣ୍ଣ ଭିନ୍ନ । ଫଳରେ ଭାବ ଆଦାନ ପ୍ରଦାନରେ ବାଧା ସୃଷ୍ଟିହେବା ସ୍ୱାଭାବିକ ।

ପିଲାମାନଙ୍କର ଭଲ ମନ୍ଦର ବିଚାର ଦୁଇଟି ସ୍ତର ଦେଇ ଗତି କରିଥାଏ । ଏ ଦୁଇଟି ସ୍ତର କ୍ରମାନ୍ୱୟରେ ଆସିଥାଏ । ବିଶ୍ୱର ସବୁ ସମାଜ ଓ ସବୁ ସଂସ୍କୃତିରେ ଏ ଦୁଇଟି ସୋପାନ ପରିଲକ୍ଷିତ ହୁଏ ।

ପ୍ରଥମ ସ୍ତରରେ ପିଲାମାନେ ଭଲ ମନ୍ଦ ସମ୍ପର୍କରେ ଧାରଣା କଲାବେଳେ ବସ୍ତୁଗତ ବା ବାହାରର ଅବସ୍ଥାକୁ ବିଚାରକୁ ନିଅନ୍ତି । ଅନ୍ୟର ବ୍ୟବହାର ନୈତିକ କି ଅନୈତିକ ତାହା ବିଚାର କଲାବେଳେ ବ୍ୟକ୍ତିର ଉଦ୍ଦେଶ୍ୟ ବା ମନୋଭାବକୁ ବିଚାରକୁ ନିଅନ୍ତି ନାହିଁ । ବ୍ୟକ୍ତିଟିର ବ୍ୟବହାର ଫଳରେ ବସ୍ତୁଗତ ଭାବେ କେତେ ପରିମାଣରେ କ୍ଷତି ହୋଇଛି ତାହା ବିଚାରକୁ ନେଇ ତାକୁ ଭଲ ବା ମନ୍ଦ ଆଖ୍ୟା ଦିଅନ୍ତି । ଗଳ୍ପ ଛଳରେ ପ୍ରଶ୍ନ ପଚାରି ପିଲାର ଏହି ମାନସିକ ବିକାଶର ଧାରାକୁ ସ୍ପଷ୍ଟ କରାଯାଇପାରେ ।

ହୁଏତ ଏପରି ଗୋଟିଏ ପ୍ରଶ୍ନ ପିଲାକୁ ପଚରା ଯାଇପାରେ । ଜଣେ ଭଦ୍ର ମହିଳା ଅତିଥି ସତ୍କାର ପାଇଁ ଖାଦ୍ୟପେୟର ଆୟୋଜନ କରୁଥିଲେ । ତାଙ୍କର ଦୁଇଟିଯାକ ପୁଅ ତାଙ୍କୁ ସାହାଯ୍ୟ କରିବାକୁ ଗଲେ । ପ୍ରଥମ ପୁଅଟି ଗ୍ଲାସରେ ପାଣି

ଆଣୁଥିଲାବେଳେ ତାର ଗୋଡ଼ ଖସିଗଲା ଏବଂ ଆଠଟି ଗ୍ଲାସ ଭାଙ୍ଗିଗଲା । ଦ୍ୱିତୀୟ ପୁଅଟି ଏହା ଦେଖି ରାଗିଗଲା ଏବଂ ରାଗରେ ଗୋଟିଏ ଗ୍ଲାସ ପକାଇ ଭାଙ୍ଗିଦେଲା । ଏମାନଙ୍କ ମଧ୍ୟରୁ ବେଶି ଦୁଷ୍ଟ କିଏ ?

ନିଃସନ୍ଦେହରେ କୁହାଯିବ ଯେ, ଦ୍ୱିତୀୟ ପିଲାଟି ଅଧିକ ଦୁଷ୍ଟ । କାରଣ ମନର କ୍ରୋଧ ପ୍ରକାଶ କରିଛି । କିନ୍ତୁ ଅଳ୍ପ ବୟସର ପିଲାମାନେ କହିବେ ଯେ, ପ୍ରଥମ ପିଲାଟି ଅଧିକ ଦୁଷ୍ଟ । କାରଣ ପଚାରିଲେ ସେମାନେ ଉତ୍ତର ଦେବେ— ଦ୍ୱିତୀୟ ପିଲାଟି ମାତ୍ର ଗୋଟିଏ ଗ୍ଲାସ ଭାଙ୍ଗିଛି କିନ୍ତୁ ପ୍ରଥମ ପିଲାଟି ଆଠୋଟି ଗ୍ଲାସ ଭାଙ୍ଗିଛି । ଲକ୍ଷ୍ୟ କରିବାର କଥା ଯେ, ଅଳ୍ପ ବୟସର ପିଲାମାନେ ସମ୍ପୃକ୍ତ ବ୍ୟକ୍ତିମାନଙ୍କର ଅନ୍ତର୍ନିହିତ ମନୋଭାବକୁ ବିଚାରକୁ ନ ନେଇ କ୍ଷତିର ପରିମାଣକୁ ଭିତ୍ତିକରି ଭଲ ମନ୍ଦର ବିଚାର କରନ୍ତି ।

ସେହିପରି ଆଉ ଗୋଟିଏ ପ୍ରଶ୍ନ ଗଳ୍ପଛଳରେ ପଚରା ଯାଇପାରେ । ଗୋଟିଏ ପରିବାରରେ ବାପା ଅଫିସ ଚାଲିଗଲା ପରେ ତାଙ୍କର ଦୁଇଟି ପିଲା ବାପାଙ୍କ ଟେବୁଲ ପାଖରେ ଖେଳିବାକୁ ଲାଗିଲେ । ପ୍ରଥମ ପିଲାଟି ଦେଖିଲା ଯେ ବାପାଙ୍କ କଲମରେ କାଳି ନାହିଁ । ବାପାଙ୍କୁ ସାହାଯ୍ୟ କରିବ ବୋଲି କଲମରେ କାଳି ପୁରାଉ ପୁରାଉ କାଳି ଢାଳି ହୋଇଗଲା ଏବଂ ସାରା ଟେବୁଲ କ୍ଲଥଟିରେ କାଳିର ଦାଗ ହୋଇଗଲା । ଦ୍ୱିତୀୟ ପିଲାଟି ଟେବୁଲ ଉପରେ ଥିବା ଅନ୍ୟାନ୍ୟ ଜିନିଷଗୁଡ଼ିକ ଓଲଟ ପାଲଟ କରି ଖେଳିବାକୁ ଆରମ୍ଭ କଲା ଏବଂ ଚେୟାରର କୁଶନ ଉପରେ ଛୋଟ ଦାଗଟିଏ କଲା । ଏ ଦୁଇଜଣ ପିଲାଙ୍କ ମଧ୍ୟରୁ କିଏ ଅଧିକ ଦୁଷ୍ଟ, ଏଠାରେ ମଧ ଅଳ୍ପ ବୟସର ପିଲାମାନେ ଉତ୍ତର ଦେବେ ଯେ ପ୍ରଥମ ପିଲାଟି ଅଧିକ ଦୁଷ୍ଟ, କାରଣ ସେ ସାରା ଟେବୁଲ କ୍ଲଥଟି ଦାଗ କରିଛି । ମାତ୍ର ଦ୍ୱିତୀୟ ପିଲାଟି କୁଶନରେ ଛୋଟ ଦାଗଟିଏ କରିଛି । ଏଠାରେ ମଧ୍ୟ କ୍ଷତିର ପରିମାଣ ନେଇ ଭଲ ମନ୍ଦ ବିଚାର କରାଯାଇଛି ।

ମିଛ ସତ ସମ୍ପର୍କରେ ପିଲାର ଧାରଣାକୁ ପରୀକ୍ଷା କରାଯାଇପାରେ । ତାକୁ ଯଦି ପଚରାଯାଏ ସେ ସ୍କୁଲରୁ ଫେରି ଗୋଟିଏ ପିଲା କ୍ଲାସ ପରୀକ୍ଷାରେ କମ୍ ନମ୍ବର ରଖିଥିଲେ ମଧ୍ୟ ବେଶି ନମ୍ବର ରଖିଛି ବୋଲି ମା'କୁ କହିଲା । ଅନ୍ୟ ଗୋଟିଏ ପିଲା ସ୍କୁଲରୁ ଫେରୁଥିବା ସମୟରେ କୁକୁରଟିଏ ଦେଖି ବାଟରେ ହାତୀ ଦେଖିଛି ବୋଲି ମା'କୁ କହିଲା । ଏମାନଙ୍କ ମଧ୍ୟରୁ କିଏ ବେଶି ମିଛ କହିଲା ? ଅଳ୍ପ ବୟସର ପିଲାମାନେ ସାଧାରଣତଃ ଉତ୍ତର ଦିଅନ୍ତି ଯେ, ଦ୍ୱିତୀୟ ପିଲାଟି ବେଶି ମିଛ କହିଛି, କାରଣ କୁକୁର ଓ ହାତୀର ଶରୀର ଆକୃତିରେ ବେଶି ଫରକ ଅଛି । ମୂଳତଃ ଆରମ୍ଭରେ ପିଲାମାନଙ୍କର ଭଲମନ୍ଦ, ସତମିଛ, ନୈତିକ

ଅନୈତିକର ଧାରଣା ବସ୍ତୁର ବାହ୍ୟିକ ପ୍ରକୃତି ଓ ପରିମାଣ ଉପରେ ନିର୍ଭର କରିଥାଏ । ଅନ୍ୟର ମନୋଭାବ, ଉଦ୍ଦେଶ୍ୟ, ଅଭିପ୍ରେରଣା ଇତ୍ୟାଦି ବୁଝିଲା ଭଳି ସାମର୍ଥ୍ୟ ଛୋଟ ପିଲାର ନ ଥାଏ । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ଅନ୍ୟର ଅଭିପ୍ରାୟକୁ ବୁଝେ ଏବଂ ନୈତିକ ବିକାଶର ଦ୍ୱିତୀୟ ସ୍ତରରେ ପାଦ ନିଏ ।

ଏ ଦୃଷ୍ଟିରୁ ବିଚାରକଲେ ପିଲାମାନଙ୍କୁ ଭଲ ମନ୍ଦର ଶିକ୍ଷା ଦେଲାବେଳେ ସେମାନଙ୍କ ବୟସ ଦେଖିବାକୁ ହେବ । ସେମାନଙ୍କର ବୟସ ଛୋଟ ଥିଲାବେଳେ ସେମାନଙ୍କୁ ଅନ୍ୟର ଉଦ୍ଦେଶ୍ୟ, ଅଭିପ୍ରାୟ, ମନୋଭାବ ଇତ୍ୟାଦି ବୁଝାଇ ଭଲ ମନ୍ଦର ଧାରଣା ଦେବା ଠିକ୍ ହେବ ନାହିଁ । ପିଲାମାନଙ୍କର ନିଜସ୍ୱ ବିଚାରକୁ ସମ୍ମାନ ଦେବାକୁ ହେବ ଏବଂ ସେମାନଙ୍କର ବୟସ ବୃଦ୍ଧି ହେବାପରେ ଧୀରେ ଧୀରେ ଭଲ ମନ୍ଦର ବିଚାରରେ ଅନ୍ୟର ଉଦ୍ଦେଶ୍ୟର ଭୂମିକା ବୁଝାଇବାକୁ ହେବ । ବିକାଶର ଏହି ସ୍ତର ଦୁଇଟିର ପାର୍ଥକ୍ୟ ନ ବୁଝିଲେ ଅଭିଭାବକମାନଙ୍କର ଚେଷ୍ଟା ସଫଳ ହେବା ସମ୍ଭବ ନୁହେଁ ।

**କେଉଁ ବାଟରେ ଯିବେ ?**

୧. ମନେରଖନ୍ତୁ ଯେ ଅଳ୍ପ ବୟସର ପିଲାମାନେ ଅନ୍ୟର ଅଭିପ୍ରାୟ ଓ ଅନ୍ତର୍ନିହିତ ଭାବ ଠିକ୍‌ରୂପେ ବୁଝି ନଥାନ୍ତି । ସେମାନେ ବାହ୍ୟିକ ସୂଚନା (ଯଥା—କଣ୍ଠସ୍ୱର, ବାହାରର ଲାଭକ୍ଷତି) ଦେଖି ଭଲମନ୍ଦ ବିଚାର କରନ୍ତି । ଏ ଦୃଷ୍ଟିରୁ ପିଲାମାନଙ୍କର ସିଦ୍ଧାନ୍ତ ଆପଣଙ୍କଠାରୁ ଭିନ୍ନ ହେଲେ ଅଯଥା କ୍ରୋଧପ୍ରକାଶ କରନ୍ତୁ ନାହିଁ ।

୨. ବୟସର ବୃଦ୍ଧି ଘଟିବା ପରେ ଅବିମୂର୍ତ୍ତ (Abstract) ଧାରଣା ସବୁ ସହିତ ଶିଶୁକୁ ପରିଚିତ କରାଇପାରନ୍ତି ।



# ପ୍ରତିକୂଳ ପରିବେଶରେ ସୁବିକଶିତ ଶିଶୁମାନଙ୍କ ସମ୍ପର୍କରେ

ବିକାଶ ଓ ପରିବେଶ ଘନିଷ୍ଠ ଭବେ ସମ୍ପୃକ୍ତ । ପ୍ରତିକୂଳ ପରିବେଶ ଯେ ବିକାଶର ଅନ୍ତରାୟ ଏହା ସର୍ବସ୍ୱୀକୃତ । ଶିଶୁପାଳନ ଓ ଶିଶୁବିକାଶ କ୍ଷେତ୍ରରେ ମଧ୍ୟ ଏହା ସତ୍ୟ । ମାତ୍ର ଏ କଥା ସତ୍ୟ ଯେ ବେଶ୍ କିଛି ସଂଖ୍ୟକ ପିଲା ପ୍ରତିକୂଳ ପରିବେଶ ମଧ୍ୟରେ ଜନ୍ମଗ୍ରହଣ କରି ଏବଂ ଲାଳିତପାଳିତ ହୋଇ ଉଚ୍ଚ ପ୍ରତିଭାର ଅଧିକାରୀ ହୁଅନ୍ତି । ଦାରିଦ୍ର୍ୟର କଷାଘାତ, ପାରିବାରିକ ଜୀବନର ଅତ୍ୟାଚାର ଏବଂ ଆବର୍ଜନାମୟ ପରିବେଷ୍ଟନୀ ଏମାନଙ୍କର ବିକାଶକୁ ନଷ୍ଟ କରିନଥାଏ । ପରିବେଶର ପ୍ରତିକୂଳ ଅବସ୍ଥାକୁ ଜୟକରି ଏମାନେ କେବଳ ସାଧାରଣ ପିଲାର ସମକକ୍ଷ ହୁଅନ୍ତି ନାହିଁ । ବେଳେବେଳେ ଅସାଧାରଣ କୃତିତ୍ୱ ପ୍ରଦର୍ଶନ କରନ୍ତି । କୁ-ପରିବେଶର କ୍ଷତିକାରକ ପ୍ରଭାବରେ ପ୍ରଭାବିତ ହେଉନଥିବା ଏପରି ପିଲାମାନଙ୍କ ସଂଖ୍ୟା ୩୦ ପ୍ରତିଶତ ବୋଲି ପାଶ୍ଚାତ୍ୟ ଦେଶମାନଙ୍କରେ ନିର୍ଦ୍ଧାରିତ ହୋଇଛି । ଏ ସମ୍ପର୍କରେ ଆମ ଦେଶରେ ପରିସଂଖ୍ୟାନର ଅଭାବ ଥିଲେ ମଧ ଏମାନଙ୍କର ସଂଖ୍ୟା ନଗଣ୍ୟ ବୋଲି କୁହାଯିବ ନାହିଁ ।

ପ୍ରତିକୂଳ ପରିବେଶ ମଧ୍ୟରେ ସୁବକଶିତ ଶିଶୁମାନଙ୍କ ଉଦାହରଣର ଅର୍ଥ ନୁହେଁ ଯେ ପରିବେଶର ପରିବର୍ତ୍ତନ ପାଇଁ ଉଦ୍ୟମ ନ କରିବା । ମାତ୍ର ପ୍ରତିକୂଳ ପରିବେଶ ମଧରେ ବିକାଶର ସମ୍ଭାବନା ଏକ ଆଶାବାଦର ସୂଚନା । କୁପରିବେଶରେ ସୁବିକାଶ ଦର୍ଶାଉଥିବା ପିଲାମାନଙ୍କୁ ଅଭେଦ୍ୟ ଶିଶୁ (Invulnerable) କୁହାଯାଇପାରେ । ତାତ୍ପର୍ଯ୍ୟପୂର୍ଣ୍ଣ ଦିଗଟି ହେଉଛି ଏପରି ଶିଶୁମାନଙ୍କୁ ଲକ୍ଷ୍ୟକରି ସେମାନେ କେଉଁ କୌଶଳ ଅବଲମ୍ବନ କରୁଛନ୍ତି, ସେଗୁଡ଼ିକର ଅନୁଶୀଳନ କରିପାରିଲେ ପ୍ରତିକୂଳ ପରିବେଶର କୁପ୍ରଭାବ ଏଡ଼ାଇବାର ସଂଗ୍ରାମ ଅଧିକ ସଫଳ ହେବ । ଉଦାହରଣସ୍ୱରୂପ, ସର୍ବେକ୍ଷଣରୁ ଦେଖାଯାଇଛି ଯେ ଖରାପ ପାରିବାରିକ ପରିସ୍ଥିତିରେ ବଢୁଥିବା ଅଭେଦ୍ୟ ଶିଶୁମାନେ ସେମାନଙ୍କର ମାନସିକ ଚାହିଦା ସବୁ ଅନ୍ୟ ମାଧମରେ ପରିପୂରଣ କରନ୍ତି । ପରିବାରର ବାତାବରଣ ଭଲ ହୋଇନଥିଲେ କିମ୍ୱା ପିତାମାତା ଦୁଷ୍ଚରିତ୍ର ସମ୍ପନ୍ନ ହୋଇଥିଲେ ଏପରି ପିଲାମାନେ ସେମାନଙ୍କର କୃତିତ୍ୱ ସବୁ ପ୍ରଥମେ ପିତାମାତାଙ୍କୁ ଜଣାଇନଥାନ୍ତି । ବିଦ୍ୟାଳୟରେ ଭଲକଲେ, ବାହାରେ ପୁରସ୍କାର ପାଇଲେ କିମ୍ୱା ସେହିପରି କିଛି କୃତିତ୍ୱ ଅର୍ଜ୍ଜନ କଲେ ସେମାନେ ନିଜର ପିତାମାତାଙ୍କୁ ନ ଜଣାଇ

ନିଜର ଜଣେ ଅନ୍ତରଙ୍ଗ ବନ୍ଧୁ କିମ୍ବା ସହାନୁଭୂତିଶୀଳ ଶିକ୍ଷକଙ୍କୁ ଜଣାନ୍ତି । ମୋଟ ଉପରେ ଏପରି ଅଭେଦ୍ୟ ପିଲାମାନଙ୍କର ମାନସିକ ଚାହିଦାର ପରିପୂର୍ତ୍ତି ପାଇଁ ପରିବାର ବାହାରେ ଏକ ଯୋଗସୂତ୍ର ରହିଥାଏ ।

ପ୍ରତିକୂଳ ପରିବେଶର କୁପ୍ରଭାବରୁ ନିଜକୁ ମୁକ୍ତ ରଖୁଥିବା ପିଲାମାଙ୍କର ତିନୋଟି ବୈଶିଷ୍ଟ୍ୟ ଲକ୍ଷ୍ୟ କରାଯାଏ । ଏ ତିନୋଟି ବୈଶିଷ୍ଟ୍ୟକୁ "ମୋର ଅଛି", "ମୁଁ ଏପରି " ଏବଂ "ମୁଁ କରିପାରେ" ବୋଲି ବର୍ଣ୍ଣନା କରାଯାଇପାରେ ।

ପ୍ରଥମତଃ, ଏପରି ଶିଶୁମାନଙ୍କର ମନରେ ସବୁବେଳେ ଥାଏ ଯେ ତାହାର କେହି ଜଣେ ସହାନୁଭୂତିଶୀଳ ସ୍ନେହମମତାପୂର୍ଣ୍ଣ ବ୍ୟକ୍ତି ଅଛନ୍ତି । ଏପରି ବ୍ୟକ୍ତି ପରିବାର ମଧ୍ୟରେ ପିତା କିମ୍ବା ମାତା ହୋଇପାରନ୍ତି । ପିତା କିମ୍ବା ମାତା ନ ହୋଇ ଏପରି ବ୍ୟକ୍ତି ଆତ୍ମୀୟସ୍ୱଜନମାନଙ୍କ ମଧ୍ୟରେ କେହି ହୋଇପାରନ୍ତି । ଜୀବନର ଆଦ୍ୟକାଳରୁ ପିତାମାତା ହରାଇଥିବା ଶିଶୁ ପାଇଁ ମାଉସୀ, ପିଉସୀ କିମ୍ବା ମାମୁଁ, ମଉସା ବା ପିଉସା ଏପରି ଶୂନ୍ୟସ୍ଥାନ ପୂରଣ କରିପାରନ୍ତି । ପିତାମାତାଙ୍କୁ ନ ହରାଇ ମଧ୍ୟ ଦୁଶ୍ଚରିତ୍ର ବା ଯନ୍ତ୍ରଣାଦାୟକ ପାରିବାରିକ ପରିସ୍ଥିତିରେ ଏପରି ସହାନୁଭୂତିଶୀଳ ବ୍ୟକ୍ତିର ଉପସ୍ଥିତି ଓ ସଂଯୋଗ ଶିଶୁର ମାନସିକ ଚାହିଦା ପୂରଣ କରିଥାଏ । ପରିବାର ବାହାରେ ପିଲାର ଅନ୍ତରଙ୍ଗ ବନ୍ଧୁ କିମ୍ବା ସମ୍ବେଦନଶୀଳ ଶିକ୍ଷକ କିମ୍ବା ମମତାମୟ ପ୍ରତିବେଶୀ ଏପରି ଭୂମିକା ଗ୍ରହଣ କରିପାରନ୍ତି । ମୋଟ ଉପରେ ଦୁର୍ଦ୍ଦିନ ସମୟରେ ଆଶ୍ରୟ ଓ ସାହାଯ୍ୟ ଦେଇ ଚାହିଦା ପୂରଣ କରିବାର ବ୍ୟକ୍ତି ଯେ ଅଛନ୍ତି, ଏପରି ବିଶ୍ୱାସ ଶିଶୁର ରକ୍ଷାକବଚ ରୂପେ କାର୍ଯ୍ୟକରେ ।

ଦ୍ୱିତୀୟତଃ, ଅଭେଦ୍ୟ ଶିଶୁର ନିଜସ୍ୱ କେତେକ ସମ୍ବଳ ଥାଏ । ନିଜର ସାମର୍ଥ୍ୟ ଉପରେ ଭରସା, ଆତ୍ମବିଶ୍ୱାସ ଓ ଆତ୍ମ-ପ୍ରତ୍ୟୟ କୁପରିବେଶର ପ୍ରଭାବ ଏଡ଼ାଇବାରେ ସହାୟକ ହୁଏ । ଶିଶୁଟି ବିଶ୍ୱାସ ରଖେ ଯେ ତା'ର କେତେକ ନିଜସ୍ୱ ଦକ୍ଷତା ରହିଛି । ସେ ନିଜେ ଦକ୍ଷ । ତା'ର ଅନ୍ୟପ୍ରତି ଶ୍ରଦ୍ଧା ରହିଛି । ନିଜର ଜୀବନ ମୂଲ୍ୟହୀନ ନୁହେଁ । ଏକ ରଚନାତ୍ମକ ଭାବରେ ସେ ନିଜର ସମୟ ଓ ଜୀବନକୁ ଉପଭୋଗ କରିବାରେ ସମର୍ଥ । ଶିଶୁର ନିଜର ଦକ୍ଷତାର ପରିମାଣ ବ୍ୟତୀତ ଏପରି ବିଶ୍ୱାସ ତାକୁ ଅଗ୍ରସର ହେବାରେ ଯଥେଷ୍ଟ ସହାୟକ ହୁଏ ।

ତୃତୀୟତଃ, ଏପରି ଆତ୍ମବିଶ୍ୱାସ ଓ ଆତ୍ମମର୍ଯ୍ୟାଦାବୋଧରୁ କର୍ମପ୍ରବଣତା ସୃଷ୍ଟି ହୁଏ । ସେ କିଛି କରିପାରିବ—ଏପରି ଭାବନା ଆସେ । ଦକ୍ଷତାର ସହିତ ସେ କାର୍ଯ୍ୟଟିକୁ ସମ୍ପାଦନ କରିପାରିବ । ନିଜର ବ୍ୟବହାର ଦ୍ୱାରା ଅନ୍ୟମାନଙ୍କର ପ୍ରୀତିଭାଜନ ହୋଇପାରିବ ଏବଂ ଦୈନନ୍ଦିନ ଜୀବନର ସମସ୍ୟା ସମାଧାନ

କରିପାରିବ—ଏପରି ଭାବନା ଅଭେଦ୍ୟ ଶିଶୁର ଥାଏ । "ମୋର ସ୍ନେହଶୀଳ ବ୍ୟକ୍ତି ଅଛନ୍ତି" ବୋଲି ଭାବନାର ଆରମ୍ଭ ହୋଇଥିବା ବିକାଶ ପରବର୍ତ୍ତୀ ସମୟରେ "ମୁଁ ଦକ୍ଷ" ଭାବନାର ରୂପ ନିଏ । ପରେ ଏପରି ମନୋଭାବ "ମୁଁ କରିପାରେ" ବୋଲି ମାନସିକ ସାମର୍ଥ୍ୟ ସୃଷ୍ଟି କରେ ।

କୁପରିବେଶରୁ ମୁକ୍ତ କରିବା ପାଇଁ ଶିଶୁକୁ କେଉଁ କେଉଁ ଉପାଦାନ ଯୋଗାଇବା ଉଚିତ୍ ହେବ, ତାହା ଉପର ଆଲୋଚନାରୁ ସ୍ପଷ୍ଟ । ଶିଶୁ ପ୍ରଥମେ ଅନୁଭବ କରିବା ଉଚିତ ଯେ, ସେ ନିର୍ଭର କରିପାରିବା ଭଳି ବ୍ୟକ୍ତି ତା' ପରିବେଶରେ ଅଛନ୍ତି । ତାହାର ଯେ ଜଣେ ସମ୍ବେଦନଶୀଳ ନିର୍ଭରଯୋଗ୍ୟ ବ୍ୟକ୍ତି ଅଛି, ଏପରି ଭାବନା ବହୁ କୁପ୍ରଭାବର ଜୀବାଣୁକୁ ନଷ୍ଟ କରିଦେବ । ଶିଶୁଟି ସହିତ ସହାନୁଭୂତିଶୀଳ ସମ୍ପର୍କ ରକ୍ଷାକରିବା, ତା' ମନର କଥା ଶୁଣିବା ଏବଂ ସ୍ନେହଶ୍ରଦ୍ଧା ଦେବା ପ୍ରତିକୂଳ ପରିବେଶର କୁପ୍ରଭାବ ଏଡ଼ାଇବାରେ ସହାୟକ ହେବ । ପରବର୍ତ୍ତୀ ପର୍ଯ୍ୟାୟରେ ଶିଶୁଟିକୁ ଛୋଟ ଛୋଟ କାର୍ଯ୍ୟ ବା ଦାୟିତ୍ୱ ଦେଇ ସେ କ୍ଷେତ୍ରରେ ତା'ର ସଫଳତା ବିଷୟରେ ଶିଶୁକୁ ଅବଗତ କରାଇବାକୁ ହେବ । ଏପରି ସବୁ ଅନୁଭବ ଶିଶୁର ଆତ୍ମସାମର୍ଥ୍ୟବୋଧ ଓ ଆତ୍ମମର୍ଯ୍ୟାଦାବୋଧ ବଢ଼ାଇଥାଏ । ଏପରି ବିଶ୍ୱାସକୁ ପୁଞ୍ଜିକରି ଶିଶୁ ଭାବେ ଯେ, ସେ ଅଧିକା କିଛି କାର୍ଯ୍ୟ କରିପାରିବ ।

ଅଭେଦ୍ୟ ଶିଶୁମାନଙ୍କର ସର୍ବେକ୍ଷଣରୁ ଯେଉଁ ଜ୍ଞାନ ଆହରଣ କରାଯାଇଛି, ତାହାକୁ ପିଲାମାନଙ୍କ ବିକାଶ କ୍ଷେତ୍ରରେ ପ୍ରୟୋଗ କରିବାର ଅନେକ ଗୁଡ଼ିଏ ସୁଫଳ ରହିଛି । ପିତା-ମାତା, ଅଭିଭାବକ, ଶିକ୍ଷକ-ଶିକ୍ଷୟିତ୍ରୀ ଓ ସମାଜ ସଂସ୍କାରକମାନେ ଏସବୁ କୌଶଳ ଅବଲମ୍ବନ କରି ସାଧାରଣ ଶିଶୁପାଳନ ବ୍ୟବସ୍ଥାର ଗୁଣାତ୍ମକ ଅଭିବୃଦ୍ଧି ଆଣିପାରିବେ । ଏପରି କାର୍ଯ୍ୟକ୍ରମକୁ ତିନୋଟି ସ୍ତରରେ ବ୍ୟବହାର କରାଯାଇପାରିବ ।

ପ୍ରଥମଟିକୁ ସମସ୍ୟା-କୈନ୍ଦ୍ରିକ କାର୍ଯ୍ୟକ୍ରମ କୁହାଯାଇପାରେ । ପ୍ରତିକୂଳ ପରିସ୍ଥିତି ବିକାଶର ବିପର୍ଯ୍ୟୟ ସୃଷ୍ଟି କରୁଥିବାରୁ ପୀଡ଼ନକାରୀ ଅବସ୍ଥାର ବିଲୋପ ବା ହ୍ରାସକରଣ ପ୍ରଥମ କର୍ତ୍ତବ୍ୟ । ପିତୃମାତୃହୀନ ହୋଇପଡୁଥିବା ଶିଶୁମାନଙ୍କୁ ଆଶ୍ରୟ ପ୍ରଦାନ କରି, ମାତ୍ରାଧିକ ଦାରିଦ୍ର୍ୟ ପ୍ରପୀଡ଼ିତ ଶିଶୁକୁ ଆର୍ଥିକ ସମ୍ବଳ ଯୋଗାଇ ସମସ୍ୟାର ତୀବ୍ରତା କମାଇ ଦିଆଯାଇପାରିବ । ଦୁର୍ଘଟଣା ବା ଖରାପ ପରିସ୍ଥିତିଟି ଘଟିଯାଇଥିଲେ ଅନ୍ତତଃ ଏହା ସୃଷ୍ଟି କରିଥିବା ମାନସିକ ଚାପ କମାଇବାରେ ପଦକ୍ଷେପ ନିଆଯାଇପାରିବ ।

ଦ୍ୱିତୀୟ କାର୍ଯ୍ୟକ୍ରମଟି ସମ୍ବଳମୁଖୀ କାର୍ଯ୍ୟକ୍ରମ । ଶିଶୁଟି ପାଇଁ ମାନସିକ ସମ୍ବଳ ଯୋଗାଇବାକୁ ପ୍ରାକ୍-ବିଦ୍ୟାଳୟ କେନ୍ଦ୍ରମାନଙ୍କରେ କିମ୍ବା ପ୍ରତିବେଶୀ ଅଞ୍ଚଳରେ କିଛି ବ୍ୟବସ୍ଥା କରାଯାଇପାରିବ । ଶିଶୁଟି ଖେଳିବା, ବୁଲିବା, ଗପଶୁଣିବା ଏବଂ ନିଜର କଥା କହିବାର ସୁଯୋଗ ସମ୍ବଳର ପରିମାଣକୁ ଯଥେଷ୍ଟ ବୃଦ୍ଧି କରିବ ।

ତୃତୀୟ କାର୍ଯ୍ୟକ୍ରମଟି ହେଉଛି କେତେକ ମାନସିକ ପଦ୍ଧତିର ପ୍ରୟୋଗ । ଶିଶୁଟି ଯେ ଅପାରଗ ଓ ଅସହାୟ ନୁହେଁ, ଏପରି ଭାବନା ବଦଳରେ ତା'ମନରେ ଆତ୍ମସାମର୍ଥ୍ୟବୋଧ ଭରିଦେବାର ଯୋଜନା ଏହାର କେନ୍ଦ୍ରବିନ୍ଦୁ । ସୁଚିନ୍ତିତ କାର୍ଯ୍ୟକ୍ରମ ମାଧମରେ ଶିଶୁକୁ କାର୍ଯ୍ୟସବୁରେ ଅଂଶ ଗ୍ରହଣ କରାଇ ଏପରି ଭାବନା ତା' ମଧ୍ୟରେ ପୂରାଇବାକୁ ହେବ ।

ପରିଶେଷରେ କୁହାଯାଇପାରେ ଯେ, କୌଣସି ଶିଶୁ ଅଭେଦ୍ୟ ଶିଶୁ ରୂପେ ଜନ୍ମ ହୋଇନଥାଏ । କେତେକ ଅବସ୍ଥା ଗୋଟିଏ ଶିଶୁ ବିକାଶକୁ ବିପର୍ଯ୍ୟସ୍ତ କରିବା ସ୍ଥଳେ ସେହିପରି ଖରାପ ପରିସ୍ଥିତି ପ୍ରଶଂସନୀୟ ରୂପ ଦିଏ । ଏ ଦୃଷ୍ଟିରୁ ପ୍ରତିକୂଳ ପରିବେଶକୁ ଅନୁକୂଳ ପରିବେଶରେ ରୂପାନ୍ତର କରିବାର ଯୋଜନା ସହିତ ଶିଶୁ ମନରେ କୁପ୍ରଭାବ ପ୍ରତିରୋଧ ଶକ୍ତିସଞ୍ଚାରର ଯୋଜନା ନିତାନ୍ତ ପ୍ରୟୋଜନ । ବିଶେଷତଃ ସମ୍ବଳ ପ୍ରାଚୁର୍ଯ୍ୟହୀନ ଦେଶ ପାଇଁ ଏହା ଏକ ବଳିଷ୍ଠ ସମ୍ଭାବନା ।

## କେଉଁ ବାଟରେ ଯିବେ ?

ପ୍ରତିକୂଳ ପରିବେଶରେ ପ୍ରତିପାଳିତ ହେଉଥିବା ଶିଶୁର କିଛି ଗଭୀର ଓ ନିଜସ୍ୱ ଚାହିଦା ରହିଥାଏ । ଉଦାହରଣସ୍ୱରୂପ, ପିତୃମାତୃହୀନ ପିଲାଟି ସ୍ନେହକାଙ୍ଗାଳ ହେବା ସ୍ୱାଭାବିକ । ଏପରି ଚାହିଦାସବୁ ଚିହ୍ନଟ କରନ୍ତୁ ଏବଂ ସ୍ୱାଭାବିକ ପରିବେଶରେ ଏହାର ପରିପୂର୍ତ୍ତି ସମ୍ଭାବନା ନଥିଲେ ଭିନ୍ନ ଉତ୍ସ ଆବିଷ୍କାର କରନ୍ତୁ । ଦୁର୍ବିପାକ ଯୋଗୁ ପିତାମାତାଙ୍କୁ ହରାଇଥିବା ସନ୍ତାନଟି ପାଇଁ ସମ୍ବେଦନଶୀଳ ପାଳନକର୍ତ୍ତା ସ୍ଥିର କରିବା ଏକ ଉପଯୋଗୀ ବ୍ୟବସ୍ଥା ହେବ ।



# ଶିଶୁର ନିର୍ଭୀକତା ଓ ଦୈନନ୍ଦିନ ଅନ୍ୱେଷଣ

ଜଗତର ଛବି ପ୍ରତିଦିନ ପରିବର୍ତ୍ତିତ ହେଉଛି । ଶିଶୁ ପାଇଁ ମଧ୍ୟ ଏହା ପରିବର୍ତ୍ତନଶୀଳ । ଶିଶୁ ନିଷ୍କ୍ରିୟ ନୁହେଁ । ପାରିପାର୍ଶ୍ୱିକ ଅବସ୍ଥା ସହିତ ସମନ୍ୱୟ ରକ୍ଷା କରିବାର ତୀବ୍ର ଇଚ୍ଛା ଶିଶୁ ଓ ମନୁଷ୍ୟମାନଙ୍କ ମଧ୍ୟରେ ସକ୍ରିୟ । ସୁତରାଂ ଶିଶୁ ତା'ର ପାରିପାର୍ଶ୍ୱିକ ଜଗତକୁ ନିତ୍ୟ ନୂତନ ରୂପରେ ଆବିଷ୍କାର କରିବାର ପ୍ରଚେଷ୍ଟା କରେ । କୌତୂହଳ ପ୍ରକାଶ କରିବା ଏବଂ କୌତୂହଳୀ ମନର ବଶବର୍ତ୍ତୀ ହୋଇ ଜଗତକୁ ପରୀକ୍ଷାନିରୀକ୍ଷା କରିବାର ପ୍ରଚେଷ୍ଟା କେବଳ ବୟସ୍କମାନଙ୍କ ମଧ୍ୟରେ ସୀମିତ ନୁହେଁ । ଶିଶୁ ମଧ୍ୟ ଏପରି ମାନସିକତାର ଅଧିକାରୀ ।



(ଅନ୍ୱେଷଣରୁ ଆରୋହଣ)

ପରିବେଶର ସମ୍ମୁଖୀନ ହେବା ସମୟରେ ଅବଶ୍ୟ ସବୁ ଶିଶୁ ସମାନ ପରିମାଣର କ୍ରିୟାଶୀଳତା ଦର୍ଶାଇ ନ ଥାନ୍ତି । ବଂଶାନୁକ୍ରମିକତା, ସ୍ନାୟୁମଣ୍ଡଳର କାର୍ଯ୍ୟକାରିତା ଏବଂ ପରିବେଶଗତ ପ୍ରୋତ୍ସାହନ ଉପରେ ନିର୍ଭର କରି ତିନୋଟି ଭିନ୍ନ ଭିନ୍ନ ପ୍ରକାରର ଶିଶୁ ଦୃଷ୍ଟିଗୋଚର ହୁଅନ୍ତି ।

ପ୍ରଥମ ଧରଣର ଶିଶୁମାନଙ୍କୁ ଅସହଜ (Difficult) ପ୍ରକାରର କୁହାଯାଇପାରେ । ଏମାନେ ଅଳ୍ପ ପରିମାଣର ଉଦ୍ଦୀପନାରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ କରନ୍ତି । ଉଦାହରଣସ୍ୱରୂପ, କୌଣସି ବ୍ୟକ୍ତି ସାମାନ୍ୟ ସ୍ପର୍ଶାନୁଭୂତି ଦେବା ମାତ୍ରେ ଏପରି ଶିଶୁମାନେ କାନ୍ଦି ପକାନ୍ତି । ଏମାନଙ୍କର ଚଞ୍ଚଳତା ଓ ଅସ୍ଥିରତା ଖୁବ୍ ଅଧିକ । ଅନ୍ୟ ପକ୍ଷରେ ଦ୍ୱିତୀୟ ପ୍ରକାରର ଶିଶୁମାନେ ମାନ୍ଦା ଧରଣର । ଉଦ୍ଦୀପନାର ମାତ୍ରା ଅଧିକ ନହେଲେ ଏମାନେ ପ୍ରତିକ୍ରିୟା ଦର୍ଶାନ୍ତି ନାହିଁ । ଏମାନେ ସ୍ୱଭାବତଃ ଲାଜକୁଳା ଓ ଅନ୍ୟଠାରୁ ଦୂରେଇ ରୁହନ୍ତି । ସାମାଜିକ ସଂସର୍ଗ ଏଡ଼ାଇଯାଆନ୍ତି । ଏକାକୀତ୍ୱ ଏମାନଙ୍କ ହାବଭାବରେ ଫୁଟିଉଠେ । ବେଶୀ ସଂଖ୍ୟକ ଶିଶୁ ତୃତୀୟ ଧରଣର । ଏମାନଙ୍କୁ ସହଜ ପ୍ରକାର ଶିଶୁ କୁହାଯାଇପାରେ । ଏମାନଙ୍କର ମିଜାଜ ସ୍ୱାଭାବିକ ଧରଣର ହୋଇଥାଏ । ପରିମିତ ଉଦ୍ଦୀପନା କ୍ଷେତ୍ରରେ ଆବଶ୍ୟକ ପ୍ରତିକ୍ରିୟା ଦର୍ଶାଇବା ଏମାନଙ୍କ ବ୍ୟବହାରରେ ସ୍ପଷ୍ଟ ଦେଖାଯାଏ ।

ଜନ୍ମର ଏକମାସ ବୟସ ବେଳକୁ ଶିଶୁର ମିଜାଜର ସ୍ୱରୂପ ସମ୍ପର୍କରେ ଆଭାସ ମିଳିଯାଏ । ସହଜ ଧରଣର ଶିଶୁମାନେ ସେମାନଙ୍କ ପରିବେଶରେ ନିଜର କୌତୂହଳ ପ୍ରକାଶ କରନ୍ତି । ବୟସର ବୃଦ୍ଧି ସହିତ କାର୍ଯ୍ୟ ଓ କଥାରେ ସେମାନଙ୍କର କୌତୂହଳ ପ୍ରକାଶ ପାଏ । ସେମାନେ ନୂଆ ନୂଆ ଜିନିଷ ଆବିଷ୍କାର କରିବାର ଉଦ୍ୟମର ସୂଚନା ଦିଅନ୍ତି । ପିତାମାତା ଓ ବୟସ୍କମାନେ ଏପରି କୌତୂହଳ ପ୍ରକାଶକ ପ୍ରୋତ୍ସାହନ ଦେଲେ ଶିଶୁର ଏପରି କାର୍ଯ୍ୟକଳାପ ବୃଦ୍ଧିପାଏ । ଅନ୍ୟପକ୍ଷରେ ଏପରି କାର୍ଯ୍ୟକଳାପ ପାଇଁ ଶିଶୁ ନିନ୍ଦିତ ଓ ଦଣ୍ଡିତ ହେଲେ ତାହାର ସ୍ପୃହା ଧୀରେ ଧୀରେ କମିବାକୁ ଲାଗେ ଏବଂ ନିର୍ମୂଳ ମଧ୍ୟ ହୋଇପାରେ ।

ଅହେତୁକ ଭୟ ଶିଶୁର କୌତୂହଳ ମନୋବୃତ୍ତିକୁ ନଷ୍ଟ କରୁଥିବାରୁ ଶିଶୁର ଭୟ ସମ୍ପର୍କରେ ଆଲୋକପାତ କରିବା ଉଚିତ ହେବ । ଜନ୍ମର ଆଠମାସ ପର୍ଯ୍ୟନ୍ତ ଶିଶୁର ଆତ୍ମସଚେତନତା ସଙ୍କୁଚିତ ଥାଏ । ଏପର୍ଯ୍ୟନ୍ତ ଶିଶୁ ଯେ ତା'ର ମା'ଠାରୁ ଭିନ୍ନ ଓ ପୃଥକ୍, ଏପରି ସ୍ପଷ୍ଟ ଧାରଣା ଆସି ନ ଥାଏ । ପ୍ରାୟ ନ' ଦଶ ମାସ ବୟସ ବେଳକୁ ଶିଶୁ ବୁଝିବାକୁ ସକ୍ଷମ ହୁଏ ଯେ ସେ ତା'ର ମା'ଠାରୁ ଭିନ୍ନ । ସୁତରାଂ ମା'ଠାରୁ ଦୂରେଇ ଯିବାର ଭୟ ତାକୁ ଗ୍ରାସ କରେ । ପ୍ରଥମ ଜନ୍ମବାର୍ଷିକୀ ପୂର୍ବରୁ ଶିଶୁ ଅପରିଚିତ ବ୍ୟକ୍ତିକୁ ଭୟ କରିବାକୁ ଆରମ୍ଭ କରେ । ମା'ଠାରୁ ଅଲଗା କରାଗଲେ ସେ ଭୟପାଏ ।

ଜନ୍ମର ଦୁଇ ତିନିବର୍ଷ ବୟସ ବେଳକୁ ବାହ୍ୟ ଜଗତର ଅନ୍ୟସବୁ ଭୟ ଶିଶୁକୁ କବଳିତ କରେ । ଇଞ୍ଜେକ୍ସନ ଦେଉଥିବା ଡାକ୍ତରଙ୍କୁ ଭୟ କରେ । ଏପରି

ପରିବ୍ୟାପ୍ତ ରୂପ ଦେଉଥିବାରୁ ସମାନ ପ୍ରକାର ପୋଷକ ପିନ୍ଧିଥିବା ଲୋକମାନଙ୍କ ପ୍ରତି ସେ ଭୟଭୀତ ହୁଏ । ଅପ୍ରାକୃତିକ ଶବ୍ଦ, ଜୀବଜନ୍ତୁ ଓ ବିଚିତ୍ର ବସ୍ତୁସବୁ ମଧ୍ୟ ଶିଶୁ ମନରେ ଭୟ ଜନ୍ମାଏ ।

ଶିଶୁର ତିନିଚାରି ବର୍ଷ ବେଳକୁ ଶିଶୁ କେତେକ କାଳ୍ପନିକ ଭୟର ଶୀକାର ହୁଏ । ଏକୁଟିଆ ରହୁଥିବା ସମୟରେ କେତେକ ନିଜସ୍ୱ ଭାବନା ତା' ମନରେ ଭୟ ଜନ୍ମାଏ । ସେ ବସିଥିବା ଚେୟାରଟି ଓଲଟି ଗଲେ କ'ଣ ହେବ, ଏପରି ଦୁର୍ଭାବନା ମୁଣ୍ଡକୁ ଆସିଲେ ସେ ଭୟଭୀତ ହୋଇପଡ଼େ ।

ଅବଶ୍ୟ ଅଳ୍ପ ପରିମାଣର କେତେକ ଭୟ ଶିଶୁକୁ ନୂଆନୂଆ ପରୀକ୍ଷା ନିରୀକ୍ଷା ପାଇଁ ପ୍ରୋତ୍ସାହନ ଯୋଗାଏ । ଭୟକୁ କାଟିବା ପାଇଁ ସେ କେତେକ ପଦକ୍ଷେପ ନିଏ । ମାତ୍ର ଅନେକ ସମୟରେ ଅହେତୁକ ଓ ମାତ୍ରାଧିକ ଭୟ ଶିଶୁର କ୍ଷତି ଘଟାଇଥାଏ । ଶିଶୁଟି ତା'ର ସ୍ୱଭାବସୁଲଭ, ଚଞ୍ଚଳତା ଓ କ୍ରିୟାଶୀଳତା ତ୍ୟାଗ କରିପାରେ । ଅନ୍ୟ କେତେକ କ୍ଷେତ୍ରରେ ପିତାମାତା ଓ ବୟସ୍କବ୍ୟକ୍ତିମାନେ ନିଜର କାମ ପାଇଁ ସାମୟିକ ଭାବରେ ଶିଶୁମନରେ ଭୟ ଲଦି ଦିଅନ୍ତି । ଶିଶୁଟି ଭୟଭୀତ ହୋଇ ଦୁଷ୍ଟାମୀ କରିବ ନାହିଁ ବୋଲି ବିଚାର କରନ୍ତି । କିନ୍ତୁ ଏପରି କାର୍ଯ୍ୟକଳାପ କ୍ଷତିକାରକ ହୁଏ । ଶିଶୁମନରେ ଭୟ ପ୍ରବେଶ କଲେ ଜୀବନକୁ ପରଖିବାର ସ୍ପୃହା ସଂକୁଚିତ ହୁଏ । ପିତାମାତା, ଶିକ୍ଷକଶିକ୍ଷୟିତ୍ରୀ ଓ ବୟସ୍କମାନେ ଶିଶୁକୁ ନିର୍ଭୀକ କରିବା ସଙ୍ଗେସଙ୍ଗେ ଶିଶୁର କୌତୁହଳୀ ମନର ବିକାଶ ପାଇଁ ଉପଯୁକ୍ତ ପ୍ରୋତ୍ସାହନ ପ୍ରଦାନ କରିବା ସମୁଚିତ ହେବ ।





**ଶିଶୁମନର ବିଜ୍ଞାନକୁ ଜାଣିବା ପାଇଁ ସରଳ, ସୁବୋଧ୍ୟ ଓ ମନୋରମ ଶୈଳୀ**

**ସଫଳ ଶିଶୁପାଳନ ପାଇଁ ମାର୍ଗଦର୍ଶନ, କ'ଣ କରିବେ ଏବଂ କ'ଣ କରିବେ ନାହିଁ**

ପୁସ୍ତକଟି ଅତ୍ୟାବଶ୍ୟକ କାହିଁକି ?

- ଶିଶୁ ମନର ବିକାଶର ଧାରାଟିକୁ ଜାଣିବା ପାଇଁ ଏହା ଏକ ମାର୍ଗଦର୍ଶକ
- ମାନସିକ ଅନଗ୍ରସରତା ପରି ସମସ୍ୟାକୁ ଠିକ୍ ସମୟରେ ଚିହ୍ନଟ କରିବା ଓ ପ୍ରତିକାର କରିବାର ସଫଳ ଯୋଜନା
- ସାଧାରଣ ପିଲାଟିକୁ ଅସାଧାରଣ କରିବା ଏବଂ ବୁଦ୍ଧିମାନକୁ ଅଧିକ ବୁଦ୍ଧିଦୀପ୍ତ କରିବାର ରାସ୍ତା
- ସଫଳ ପିତାମାତାର ଭୂମିକା କ୍ଷେତ୍ରରେ ବିଶେଷ ସହାୟକ
- ଶିଶୁ କଲ୍ୟାଣ ପାଇଁ ଚିନ୍ତା କରୁଥିବା ଶିକ୍ଷକଶିକ୍ଷୟତ୍ରୀ ଓ ଚିନ୍ତାଶୀଳ ନାଗରିକମାନଙ୍କ ପାଇଁ ଦିଗ୍‌ଦର୍ଶନ
- ସରଳ ଭାଷା ଓ ମନୋଜ୍ଞ ଶୈଳୀ
- ଅଳ୍ପ ସମୟ ମଧ୍ୟରେ ଆଧୁନିକ ବୈଜ୍ଞାନିକ ଜ୍ଞାନ ସଂଗ୍ରହ କରିବାର ସହଜ ସୂତ୍ର




ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ



**ଶିଶୁମନର ବିଜ୍ଞାନକୁ ଜାଣିବା ପାଇଁ ସରଳ, ସୁବୋଧ୍ୟ ଓ ମନୋରମ ଶୈଳୀ**

**ସଫଳ ଶିଶୁପାଳନ ପାଇଁ ମାର୍ଗଦର୍ଶନ, କ'ଣ କରିବେ ଏବଂ କ'ଣ କରିବେ ନାହିଁ**

ପୁସ୍ତକଟି ଅତ୍ୟାବଶ୍ୟକ କାହିଁକି ?

- ଶିଶୁ ମନର ବିକାଶର ଧାରାଟିକୁ ଜାଣିବା ପାଇଁ ଏହା ଏକ ମାର୍ଗଦର୍ଶକ
- ମାନସିକ ଅନଗ୍ରସରତା ପରି ସମସ୍ୟାକୁ ଠିକ୍ ସମୟରେ ଚିହ୍ନଟ କରିବା ଓ ପ୍ରତିକାର କରିବାର ସଫଳ ଯୋଜନା
- ସାଧାରଣ ପିଲାଟିକୁ ଅସାଧାରଣ କରିବା ଏବଂ ବୁଦ୍ଧିମାନକୁ ଅଧିକ ବୁଦ୍ଧିଦୀପ୍ତ କରିବାର ରାସ୍ତା
- ସଫଳ ପିତାମାତାର ଭୂମିକା କ୍ଷେତ୍ରରେ ବିଶେଷ ସହାୟକ
- ଶିଶୁ କଲ୍ୟାଣ ପାଇଁ ଚିନ୍ତା କରୁଥିବା ଶିକ୍ଷକଶିକ୍ଷୟତ୍ରୀ ଓ ଚିନ୍ତାଶୀଳ ନାଗରିକମାନଙ୍କ ପାଇଁ ଦିଗ୍‌ଦର୍ଶନ
- ସରଳ ଭାଷା ଓ ମନୋଜ୍ଞ ଶୈଳୀ
- ଅଳ୍ପ ସମୟ ମଧ୍ୟରେ ଆଧୁନିକ ବୈଜ୍ଞାନିକ ଜ୍ଞାନ ସଂଗ୍ରହ କରିବାର ସହଜ ସୂତ୍ର



ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ